ଇତିହାସର ପୃଷ୍ଠଭୂମିରେ

# ପାରଳାର ପରିଛା ମଠ

# ଓ

# ଜାତିପ୍ରାଣ ଆପନ୍ନା ପରିଛା

ପୂର୍ଣ୍ଣଚନ୍ଦ୍ର ମହାପାତ୍ର

ଇତିହାସର ପୃଷ୍ଠଭୂମିରେ
ପାରଳାର ପରିଛା ମଠ ଓ ଜାତିପ୍ରାଣ ଆପନ୍ନା ପରିଛା

ରଚନା : ପୂର୍ଣ୍ଣଚନ୍ଦ୍ର ମହାପାତ୍ର
ବସନ୍ତବିହାର, ପାରଳାଖେମୁଣ୍ଡି

ପ୍ରଥମ ପ୍ରକାଶ : ୨୦୦୭

ଅକ୍ଷର ସଜ୍ଜା ଓ ମୁଦ୍ରଣ : ଏ ବି ଇମେଜିଙ୍ଗ୍ ଏଣ୍ଡ୍ ପ୍ରିଣ୍ଟ୍ସ୍ ପ୍ରାଇଭେଟ୍ ଲିମିଟେଡ୍
୬୨-୬୩, ଗଙ୍ଗନଗର, ୟୁନିଟ୍-୬, ଭୁବନେଶ୍ୱର

ପ୍ରକାଶକ : ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ସଂପାଦକ
'ସିଦ୍ଧାନ୍ତ', ପାରଳାଖେମୁଣ୍ଡି
ପିନ୍ - ୭୬୧୨୦୧



ମୂଲ୍ୟ : ଟ.୭୫ (ପଞ୍ଚସ୍ତରୀ ଟଙ୍କା)



ନାଟ୍ୟକାର ଆପନ୍ନା ପରିଛା

# ଉପୋଦ୍‌ଘାତ

ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ଆଦ୍ୟ ଚରଣରେ, ପାରଳାଖେମୁଣ୍ଡିରେ ଯେଉଁମାନେ ବିଶେଷଭାବେ ଚର୍ଚ୍ଚିତ ହେଉଥିଲେ, ସେମାନଙ୍କ ମଧ୍ୟରେ ଆପନ୍ନା ପରିଚ୍ଛା ଅନ୍ୟତମ । ସେ ଥିଲେ ଜଣେ ବହୁମୁଖୀ ପ୍ରତିଭାଧର । ବିଷ୍ଣୁଚରଣ ମହାନ୍ତି "ପାରଳା ପ୍ରତିଭା" ନାମକ ଏକ ପୁସ୍ତକରେ ଏହି ବହୁଳ ଚର୍ଚ୍ଚିତ ବହୁମୁଖୀ ପ୍ରତିଭାଧର ବ୍ୟକ୍ତିଙ୍କ ସଂପର୍କରେ ଏକ ପ୍ରବନ୍ଧକୁ ସ୍ଥାନ ଦେଇଛନ୍ତି । ଖ୍ରୀ ୧୯୯୧ରେ ଉକ୍ତ ପୁସ୍ତକଟିର ପ୍ରକାଶନ ପୂର୍ବରୁ ଆପନ୍ନା ପରିଚ୍ଛାଙ୍କ ସଂପର୍କରେ କାଁ ଭାଁ କେତେଗୋଟି କ୍ଷୁଦ୍ର ପ୍ରବନ୍ଧ ମାତ୍ର ପ୍ରକାଶିତ ହୋଇଥିଲା । ପରେ ପରେ ପାରଳାଖେମୁଣ୍ଡିର କିଛି ଯୁବ ଲେଖକ କେତେକ ଦୈନିକ ଖବର କାଗଜର ସାହିତ୍ୟ ପୃଷ୍ଠାରେ ତାଙ୍କ ସମ୍ପର୍କରେ ଲେଖାଲେଖି ଆରମ୍ଭ କଲେ ।

ପାରଳାଖେମୁଣ୍ଡିର ଜଣେ କୃତୀ ଶିକ୍ଷକ ଗୋପାଳଚନ୍ଦ୍ର ଶତପଥୀ 'ପରିଚ୍ଛା ମଠ' ନାମ ଦେଇ ସର୍ବପ୍ରଥମେ ଏକ କ୍ଷୁଦ୍ର ପୁସ୍ତକ ପ୍ରଣୟନ କରିଥିଲେ । ସେଥିରେ ଆପନ୍ନା ପରିଚ୍ଛାଙ୍କ କୃତିତ୍ୱ ସମ୍ପର୍କରେ ସେ କିଂଚିତ୍ ସୂଚନା ପ୍ରଦାନ କରିଛନ୍ତି । ଏହାପରେ ଅଧ୍ୟାପକ ଡ଼ଃ ଅଜୟ କୁମାର ତ୍ରିପାଠୀଙ୍କ ସମ୍ପାଦନାରେ "ବିମୁଗ୍ଧ ମାଟି : ଅମଳିନ ସ୍ରଷ୍ଟା : ଆପନ୍ନା ପରିଚ୍ଛା ଏକ ଆକଳନ" ଶିରୋନାମାରେ ଏକ ପ୍ରବନ୍ଧ ସଙ୍କଳନ ପ୍ରକାଶ ପାଇଲା । ଏହି ପୁସ୍ତକଟି ମୋ ନାମରେ ଉତ୍ସର୍ଗ କରାଯାଇଥିବା ଦେଖି ମୋର ବିସ୍ମୟ ଓ ଆନନ୍ଦର ସୀମା ରହିଲା ନାହିଁ । ପୁସ୍ତକଟି ପଢ଼ିସାରିବା ପରେ ମୋର ମନେହେଲା ଯେ ସେ ପର୍ଯ୍ୟନ୍ତ ଆପନ୍ନା ପରିଚ୍ଛାଙ୍କ ସମ୍ପର୍କରେ ଯେତେ ଯାହା କୁହାଯାଇଛି ତା'ଠାରୁ ଅଧିକ ଅନୁଦ୍‌ଘାଟିତ ରହିଯାଇଛି । ସେହିଦିନଠାରୁ ଆପନ୍ନା ପରିଚ୍ଛାଙ୍କ ସମ୍ପର୍କରେ ଅଧିକ ଜାଣିବା ପାଇଁ ମୁଁ ଚେଷ୍ଟିତ ଥିଲି । ବହି ଲେଖିବା ଉଦ୍ଦେଶ୍ୟ ମୋର ନଥିଲା ।

ପାରଳାଖେମୁଣ୍ଡି ସହ ମୋର ମାତ୍ର ୧୮ ବର୍ଷର ପ୍ରତ୍ୟକ୍ଷ ସମ୍ପର୍କ । ଏଠାରେ ତହସିଲ୍‌ଦାର ଭାବେ କାର୍ଯ୍ୟରତ ଥିଲାବେଳେ ଆପନ୍ନା ପରିଚ୍ଛାଙ୍କ ପୌତ୍ର ଭୁବନେଶ୍ୱର ପରିଚ୍ଛାଙ୍କ ସହ ଘନିଷ୍ଠ ପରିଚୟ ହୋଇଥିଲା । ତାଙ୍କ ପୁତ୍ର ମୁରଲୀ ପରିଚ୍ଛା ସେତେବେଳେ ମୋ ସହ ପରିଚିତ ନଥିଲେ । ପରବର୍ତ୍ତୀ ସମୟରେ ପାରଳାଖେମୁଣ୍ଡିରେ ବିଶେଷ ଭାବରେ ଚାଲିଆସିଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ ଜୟନ୍ତୀ ସମାରୋହ ଓ ସାହିତ୍ୟ ସଭାମାନଙ୍କରେ ଯୋଗଦେବା ଅବସରରେ ମୁରଲୀଙ୍କ ସହ ମୋର ବନ୍ଧୁତ୍ୱ ସ୍ଥାପନ ହୁଏ । ସେ ମୋତେ ବାରମ୍ବାର ଅନୁରୋଧ କରନ୍ତି, ଆପନ୍ନା ପରିଚ୍ଛା ବା ପରିଚ୍ଛା ମଠ ସମ୍ପର୍କରେ ଏକ ପ୍ରବନ୍ଧ କୌଣସି ଦୈନିକ ଖବରକାଗଜର ସାହିତ୍ୟ ପୃଷ୍ଠାରେ ଲେଖିବା ପାଇଁ । ପ୍ରତିଥର ମୁଁ

ତାଙ୍କ ଅନୁରୋଧକୁ ଏଡ଼ାଇ ଦିଏ । ଶେଷକୁ ମୁରଲୀଙ୍କର ଅନୁରୋଧ ଏଡ଼ି ନପାରି ଦିନେ ତାଙ୍କ ଘରେ ଅଘନକ ପହଞ୍ଚିଗଲି । ଆପନ୍ନା ପରିଚ୍ଛାଙ୍କ ସମ୍ପର୍କରେ ତାଙ୍କ ପାଖରେ କି କି କାଗଜ ଓ ବହିପତ୍ର ଅଛି ଜାଣିବାକୁ ଚାହିଁଲି । ସେ କ'ଣ ଭାବିଲେ କେଜାଣି କେତେ ଗୋଛା ପୁରୁଣା ବନ୍ଧେଇ ଖାତା ମୋ ସାମ୍ନାରେ ଆଣି ଥୋଇ ଦେଲେ । ଦେଖିଲି, ସେଗୁଡ଼ିକ ଆପନ୍ନା ପରିଚ୍ଛାଙ୍କ ୧୮ ବର୍ଷର ଦିନଲିପି । ସେଗୁଡ଼ିକ ଘରକୁ ଆଣି ପାଠ ଆରମ୍ଭ କରିବା ବେଳେ ଆପନ୍ନା ପରିଚ୍ଛା ଓ ପରିଚ୍ଛା ମଠ ପ୍ରତି ମୋର ସ୍ୱତଃ ଆଗ୍ରହ ଜାତ ହେଲା । ସମସ୍ତ ଦିନଲିପି ଅଧ୍ୟୟନ କରି ସେଥିରୁ କିଛି କିଛି ଟିପିରଖି ପରେ ଫେରାଇଦେଲି । କିନ୍ତୁ ମୁରଲୀ ପ୍ରତିଦିନ ମତେ ମନେ ପକାଇବା ସତ୍ତ୍ୱେ ସମୟ ଅଭାବରୁ କିଛି ଲେଖି ନଥାଏ । ଏତିକିବେଳେ ଆପନ୍ନା ପରିଚ୍ଛାଙ୍କ ୨୦୦୬ର ଜୟନ୍ତୀ ନିକଟତର ହେଲା । ଏକ ପ୍ରବନ୍ଧ ସଙ୍କଳନ କରିବା ଯୋଗାଡ଼ରେ ମୁରଲୀ ମୋତେ ସାକ୍ଷାତ କଲେ । କହିଲେ, "ଅଧ୍ୟାପକ କାହ୍ନୁ ଚରଣ ପାଢ଼ୀଙ୍କ ସଂପାଦନାରେ 'ପ୍ରଜ୍ଞାପୁରୁଷ ଆପନ୍ନା ପରିଚ୍ଛା' ଶିରୋନାମାରେ ପ୍ରବନ୍ଧ ସଙ୍କଳନ ଗୋଟେ ପ୍ରକାଶ କରାଯିବ । ଆପଣ ଲେଖାଟିଏ ଦିଅନ୍ତୁ ।" ଏଥର ମନା କରିବାକୁ ମୋର ନୈତିକ ବଳର ଅଭାବ ଘଟିଲା । ମୁଁ ଲେଖା ଦେବାକୁ ସମ୍ମତି ଦେଲି । ଦୀର୍ଘ ପ୍ରବନ୍ଧଟିଏ 'ଉଜ୍ଜ୍ୱଳ ପୁରୁଷ ଆପନ୍ନା ପରିଚ୍ଛା' ଶିରୋନାମାରେ ଲେଖି ପ୍ରକାଶ ନିମନ୍ତେ ଶ୍ରୀଯୁକ୍ତ ପାଢ଼ୀଙ୍କୁ ଦେଇଦେଲି । ଭାବିଲି, ମୁରଲୀ ଆଉ ଅଧିକ ଜଞ୍ଜାଳ କରିବେନି ପୁଣି କିଛି ଲେଖିବାକୁ । ଏହାପରେ ହେଲା ଆପନ୍ନା ପରିଚ୍ଛା ଜୟନ୍ତୀ । ଏ ସଭାକୁ ମୁଁ ଜଣେ ବକ୍ତା ଭାବେ ନିମନ୍ତ୍ରିତ ହୋଇଥିଲି । ମୋର ବକ୍ତୃତା ସର୍ବଦା ସଂକ୍ଷିପ୍ତ । କାରଣ "ମିତଂ ଚ ସାରଂ ଚ ବଚୋହି ବାଗ୍ମିତା" - ନୈଷଧକାର ଶ୍ରୀହର୍ଷଙ୍କ ଏହି ଉପଦେଶକୁ ମୁଁ ମାନେ । ତଥାପି ସେଦିନ କିଛି ନୂତନ କଥା ଆପନ୍ନାଙ୍କ ସମ୍ପର୍କରେ ଜାଣି ସାରିବା ପରେ ମୁରଲୀ ମତେ ବାରମ୍ବାର ଦେଖା କରନ୍ତି । ସବୁଥର ତାଙ୍କର ସେଇ ଗୋଟିଏ ଅନୁରୋଧ "ସାର୍ ଆପନ୍ନାଙ୍କ ସମ୍ପର୍କରେ ଏକ ପୁସ୍ତକ ଲେଖନ୍ତୁ" । ତାଙ୍କୁ ସମ୍ମତି ଦେଲି । ମୁରଲୀଙ୍କର ଅନିବାର୍ଯ୍ୟ ଅନୁରୋଧରୁ ଏ ପୁସ୍ତକର ପ୍ରଯୋଜନା । ସେ ଦେଇଥିବା ତଥ୍ୟ ଏହାର ଉପାଦାନ । ତେଣୁ ଏ ପୁସ୍ତକର ଶ୍ରେୟ, ଯଦି କିଛି ଥାଏ, ତାହା ମୁରଲୀଧର ପରିଚ୍ଛାଙ୍କର । ତେବେ ଏଥିରେ ଲିଖିତ ପାରଳାଖେମୁଣ୍ଡିର ଐତିହାସିକ ପୃଷ୍ଠଭୂମି ଓ ମଠ ପରମ୍ପରା ଇତ୍ୟାଦି ଅଯଥା ବିସ୍ତୃତ ମନେ ହୋଇପାରେ । ପ୍ରିୟ ପାଠକମାନେ ସେଥିପାଇଁ ମତେ କ୍ଷମା ଦେବେ ।

ପରିଚ୍ଛା ମଠ ଓ ପଦ୍ମନାଭ ରଙ୍ଗାଳୟ ସମ୍ପର୍କରେ କେତେକ ନୂତନ ତଥ୍ୟ ଏ ପୁସ୍ତକରେ ସ୍ଥାନ ଦେବାକୁ ଯଥାସାଧ ଉଦ୍ୟମ କରିଛି । ଆପନ୍ନା ପରିଚ୍ଛାଙ୍କର କୃଷ୍ଣଚନ୍ଦ୍ର ଗଜପତିଙ୍କ ସହ ସମ୍ପର୍କ ଓ ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ସମ୍ପର୍କରେ କେତେକ

ଅନାଲୋଚିତ ତଥ୍ୟ ଏ ପୁସ୍ତକରେ ଅନ୍ତର୍ଭୁକ୍ତ ହୋଇଛି । ଏହା ପାଠକଙ୍କର ଆଦର ଲାଭ କଲେ ମୋର ଶ୍ରମ ସାର୍ଥକ ହେବ ।

ପରିଶେଷରେ ଯେଉଁମାନଙ୍କ ସାହାଯ୍ୟ, ସହଯୋଗ ଓ ସାନ୍ନିଧ ମତେ ପ୍ରୋତ୍ସାହିତ କରିଛି, ସେହି ସମସ୍ତଙ୍କୁ ମୋର କୃତଜ୍ଞତା ଜଣାଉଛି । ବିଶେଷକରି ପାରଳାଖେମୁଣ୍ଡି ନୃସିଂହନାଥ ମଠର ମହନ୍ତ ଶ୍ରୀ ନରୋତ୍ତମ ଦାସ ଗୋସ୍ୱାମୀଙ୍କ ସହ ମଠ ସଂସ୍କୃତି ଓ ବୈଷ୍ଣବ ପରମ୍ପରା ସମ୍ପର୍କରେ ବାରମ୍ବାର ଆଲୋଚନା କରିଛି । ସେ ମହୋଦୟଙ୍କ ସାନୁଗ୍ରହ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ମତେ କୃତାର୍ଥ କରିଛି । ଶ୍ରଦ୍ଧେୟ ମୁରଲୀ ଓ ପୂଜ୍ୟ ମହନ୍ତ ମହାରାଜଙ୍କୁ ଏ ଅବସରରେ ମୋର କୃତଜ୍ଞତା ଜଣାଉଛି । ଆସ୍କାର ସ୍ୱନାମଧନ୍ୟ ଶିକ୍ଷାବିଦ୍ ଶ୍ରୀ ଗୌରୀଶଙ୍କର ମିଶ୍ରଙ୍କ ପରାମର୍ଶ ପାଇଁ ମୁଁ ତାଙ୍କଠାରେ ଋଣୀ । ସମୟୋଚିତ ପରାମର୍ଶ ଦେଇଥିବାରୁ ପାରଳାଖେମୁଣ୍ଡିର ଅଧାପକ ଡଃ କାହ୍ନୁଚରଣ ପାଢ଼ୀ ଆମର ଧନ୍ୟବାଦର ପାତ୍ର ।

ମୋର ସାନବୋହୂ ଆୟୁଷ୍ମତୀ ବିଜୟଲକ୍ଷ୍ମୀ ବେଳେ ବେଳେ ଗୃହକର୍ମ ଅବସରରେ ମୋ'ଠାରୁ ଏ ପୁସ୍ତକର କିଛି କିଛି ବିଷୟ ଶୁଣିବାକୁ ଅବସର ଦେଇଥିବାରୁ ତାଙ୍କୁ ଏ ଅବସରରେ ସ୍ମରଣ କରୁଛି । ଏ ପୁସ୍ତକ ଲେଖିବାରେ ସବୁଠାରୁ ବେଶି ସହଯୋଗ ଯଦି କେହି କରିଥାଏ, ସେ ହେଉଛି ମୋର ତିନି ବର୍ଷର ନାତୁଣୀ ଆକାଂକ୍ଷା । ମୁଁ ବେଶ୍ କିଛି ଦିନ ଏହି ପୁସ୍ତକ ଲେଖିବା ପାଇଁ ମୋର ପଠନ ପ୍ରକୋଷ୍ଠରେ ବସିବା ସେ ଦେଖେ । ଯେବେ ପଠନ ପ୍ରକୋଷ୍ଠ ବାହାରେ ମତେ ପାଏ, ମୋ ହାତ ଧରି ଟାଣି ଟାଣି ଆଣି ଯଥା ସ୍ଥାନରେ ବସାଇ ଦିଏ ଏବଂ କହେ "ବାପା ଇଠି ବସ, ପାଠ ପଢ଼ । ହୋମ୍‌ୱାର୍କ କର, ନହେଲେ ତମ ମ୍ୟାଡମ୍ ମାରିବେନି ।" ମୁଁ ବାଧ୍ୟ ହୋଇ ବସେ ପୁଣି ଲେଖେ । ତା'ର ଏ କଉତୁକିଆ ନିର୍ଦ୍ଦେଶ ବିନା ଏ ପୁସ୍ତକଟିର ଲେଖା ସମ୍ପୂର୍ଣ୍ଣ କରିବା ବିଳମ୍ବିତ ହୋଇଥାନ୍ତା । ଆକାଂକ୍ଷାକୁ ଆଶୀର୍ବାଦ କରୁଛି, ତା'ର ମଙ୍ଗଳମୟ ଭବିଷ୍ୟତ ମନାସୁଛି - ଏ ଅବସରରେ ।

ବନ୍ଦେ ଉତ୍କଳ ଜନନୀ ।

ବୁଦ୍ଧ ପୂର୍ଣ୍ଣିମା
ତା.୨.୫.୨୦୦୭

ସାଇକୃପା ଭିକ୍ଷୁ
ପୂର୍ଣ୍ଣଚନ୍ଦ୍ର ମହାପାତ୍ର

# ଉତ୍ସର୍ଗ

ବୋଉ !

ତୁ ସବୁବେଳେ କହୁଥିଲୁନା "ତୋ ନନା ପାରଳାରେ ପଢୁଥିଲେ । ସିଠି ଜଣେ ଭଲ ରଜା ଅଛନ୍ତି, ବେଶି ମଠ ଅଛି । ତୋ ନନା କ'ଣ ସବୁ ଲେଖାଲେଖି କରି ରଜାଙ୍କଠୁ ଅନେକ ପୁରସ୍କାର ପାଇଛନ୍ତି ।" ତୋର ସେଇ କେଇପଦ କଥା ମୋ ଜୀବନର ଗତିପଥକୁ ନିୟନ୍ତ୍ରିତ କରିଛି । ମୋର ୪୦ ବର୍ଷର ନିଷ୍ଠୁର ପ୍ରାଶାସନିକ କାର୍ଯ୍ୟ ଭିତରେ ଲେଖାଲେଖି ପାଇଁ ଆଗ୍ରହ ସୃଷ୍ଟି କରିଛି ମୋ ମନରେ । ତୁ ବଞ୍ଚିଥିବାବେଳେ ପଦେ ବି ଲେଖିପାରି ନଥିଲି । ସେଥିପାଇଁ କ୍ଷମା କରିଦେବୁ ।

ତୁ ଯେଉଁଠି ଥା' ଏ ପୁସ୍ତକଟି ଗ୍ରହଣ କରିବୁ । ତୁ ତ ପଢ଼ି ପାରିବୁନି, ନନାଙ୍କୁ କହିବୁ ପଢ଼ି ଶୁଣେଇ ଦେବେ ।

ତୋର ଆଶୀର୍ବାଦ ଲିପ୍ସୁ

**ପୂର୍ଣ୍ଣ**

# ସୂଚୀପତ୍ର

# ପାରଳାଖେମୁଣ୍ଡିର ଐତିହାସିକ ପୃଷ୍ଠଭୂମି

ଏକ ବୃହତ୍ ପ୍ରାଚୀନ ରାଜ୍ୟର ପାରଳାଖେମୁଣ୍ଡି ଏକ କ୍ଷୁଦ୍ର ଅଂଶ । ପୂର୍ବଘାଟ ପର୍ବତମାଳାର ଅନ୍ତଃପାତୀ ପୁରାଣ ପ୍ରସିଦ୍ଧ ମହେନ୍ଦ୍ର ପର୍ବତ ଏହି ରାଜ୍ୟର ପୂର୍ବୋତ୍ତର ଦିଗରେ ଅବସ୍ଥିତ । ମହେନ୍ଦ୍ର ପର୍ବତର ଅବବାହିକାରେ ଅବସ୍ଥିତ ବାଟଶିରେଇପୁର ଗାଁ । ପୂର୍ବେ ଏହା ବାଟଶ୍ରୀପୁରମ୍ ନାମରେ ପରିଚିତ ଥିଲା । ମାଠର ଶାସନ ବେଳେ ସେମାନଙ୍କର ରାଜଧାନୀ ଏହିଠାରେ ଥିଲା । ପରେ ତାହା ଆନ୍ଧ୍ରର ସିଂହପୁରମ୍‌କୁ ଉଠାଇ ନିଆଯାଇଥିଲା । ଏହା ୪ର୍ଥ-୫ମ ଶତାବ୍ଦୀର କଥା । ମହେନ୍ଦ୍ର ପର୍ବତର ଉଚ୍ଚତମ ଶୃଙ୍ଗରେ ବର୍ତ୍ତମାନ ରହିଥିବା ଭୀମ ମନ୍ଦିର ମାଠରମାନଙ୍କ କୀର୍ତ୍ତି ବୋଲି କଥିତ । ସେଠାରେ ଥିବା ଗୋକର୍ଣ୍ଣେଶ୍ୱର, ଯାହାର ସ୍ଥାନୀୟ ନାମ କୁନ୍ତୀ ମନ୍ଦିର, ତା'ର ସମ୍ମୁଖକୁ ଅନତି ଦୂରରେ ଅବସ୍ଥିତ ଏକ ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ । ଏଠାରେ ପ୍ରାଚୀନ କାଳର ଏକ ନାରାୟଣ ମୂର୍ତ୍ତି ବର୍ତ୍ତମାନ ମଧ୍ୟ ଅକ୍ଷୁଣ୍ଣ ଅଛି । ଏହି ମନ୍ଦିର ଓ ମୂର୍ତ୍ତି ଉଭୟ ମାଠରମାନଙ୍କର କୀର୍ତ୍ତି । ମହେନ୍ଦ୍ର ପର୍ବତରେ ଯୁଧିଷ୍ଠିର ନାମରେ ଅନ୍ୟ ଏକ ମନ୍ଦିର ଅଛି । କୁନ୍ତୀ ମନ୍ଦିର ଓ ଯୁଧିଷ୍ଠିର ମନ୍ଦିର ଗଙ୍ଗମାନଙ୍କ ସମୟର । ଗଙ୍ଗବଂଶୀ ରାଜାମାନଙ୍କର ଇଷ୍ଟଦେବତା ଗୋକର୍ଣ୍ଣେଶ୍ୱର । ଗୋକର୍ଣ୍ଣାକୃତି ଏକ ଲିଙ୍ଗ ଏଠାରେ ପୂଜା ପାଇଆସୁଛନ୍ତି । ଶିବରାତ୍ରି-ପୂର୍ବ ସନ୍ଧ୍ୟାରେ ଏଠାରେ ବିଶେଷ ଲୋକ ଗହଳି ହୁଏ । ପାଦଗୟା ଭାବେ ମହେନ୍ଦ୍ର ପର୍ବତ ଗୃହୀତ । ଏଠାରେ ଜାତିବର୍ଣ୍ଣ ନିର୍ବିଶେଷରେ ଲୋକେ ଶିବରାତ୍ରି-ପୂର୍ବ ସନ୍ଧ୍ୟାରେ ପିଣ୍ଡଦାନ କରିବା

ପରମ୍ପରା ପ୍ରଚଳିତ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବାର ଅବ୍ୟବହିତ କାଳରେ ମହେନ୍ଦ୍ର ପର୍ବତ ଗଞ୍ଜାମ ମାଳର ଅନ୍ତର୍ଭୁକ୍ତ ଥିଲା । ବର୍ତ୍ତମାନ ଏହା ସମ୍ପୂର୍ଣ୍ଣ ଭାବେ ଓଡ଼ିଶାର ଗଜପତି ଜିଲ୍ଲାରେ ଅବସ୍ଥିତ ।

ବଂଶଧାରା ଓ ମହେନ୍ଦ୍ର ତନୟା ନାମିତ ନଦୀଦ୍ୱୟ ସମ୍ପୂର୍ଣ୍ଣ ଭାବେ ପ୍ରାଚୀନ ପାରଳାଖେମୁଣ୍ଡି ରାଜ୍ୟରେ ଥିଲା । ଗଙ୍ଗ ରାଜତ୍ୱ ସମୟରେ କଳାହାଣ୍ଡି ପାରଳା ରାଜ୍ୟରୁ ବିଚ୍ଛିନ୍ନ ହୋଇଗଲା । ତେଣୁ ବଂଶଧାରା ନଦୀ ଆଂଶିକ ଭାବରେ କଳାହାଣ୍ଡିରେ ରହିଯାଇଛି । ପୁଣି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହୋଇ ବିଭିନ୍ନ ଜିଲ୍ଲା ଗଠିତ ହେବାପରେ ଏହା ପୁନର୍ବାର ରାୟଗଡା ଓ ଗଜପତିରେ ବଣ୍ଟା ହୋଇଯାଇଛି । ଏହାର କିୟଦଂଶ ଆନ୍ଧ୍ର ପ୍ରଦେଶରେ ପ୍ରବାହିତ ହେଉଛି । ମହେନ୍ଦ୍ର ତନୟା ହିନ୍ଦୁଧର୍ମ ଧାରଣାରେ ଏକ ପବିତ୍ର ନଦୀ । ଶୁଭାଶୁଭ କାର୍ଯ୍ୟାରମ୍ଭ ବେଳେ ସଙ୍କଳ୍ପ କଲାବେଳେ ମହେନ୍ଦ୍ରତନୟାର ନାମ ନିଆଯାଏ । ଏ ନଦୀର ଦୁଇଟି ଧାରା । ସେ ମଧ୍ୟରୁ ଦକ୍ଷିଣମୁହାଁ ଧାରାଟି ପାରଳା ଅଞ୍ଚଳରେ ମୁଖ୍ୟତଃ ପ୍ରବାହିତ । ପାରଳାଖେମୁଣ୍ଡି ଅଞ୍ଚଳର କୃଷିକ୍ଷେତ୍ର ଉପରୋକ୍ତ ଦୁଇ ନଦୀ ଦ୍ୱାରା ପରିପୁଷ୍ଟ ।

ଅବିଭକ୍ତ ପାରଳାଖେମୁଣ୍ଡି ଜମିଦାରି ଅଞ୍ଚଳରୁ ଯେତେ ତାମ୍ରପତ୍ର ଆବିଷ୍କୃତ ହୋଇଛି ତନ୍ମଧ୍ୟରେ ସର୍ବପ୍ରଥମଟି ହେଉଛି ଗଙ୍ଗବଂଶୀୟ ଇନ୍ଦ୍ରବର୍ମନଙ୍କର । ସେ ୬୬୫ ଖ୍ରୀଷ୍ଟାବ୍ଦ ବେଳକୁ ରାଜତ୍ୱ କରୁଥିଲେ । ଏହି ସମୟଠାରୁ ଇତିହାସ ଅନୁଧାନ କଲେ ନରସିଂହ ଦେବ ବା ରାଜରାଜ ଦେବଙ୍କ ଦୀର୍ଘାସୀ ଲିପିରେ ପ୍ରଥମ କରି 'ଖେମୁଣ୍ଡି' ନାମ ଦେଖିବାକୁ ମିଳେ । ତତ୍‌ପରବର୍ତ୍ତୀ କାଳରେ ବାରମ୍ବାର 'ଖେମୁଣ୍ଡି' ନାମ ବିଭିନ୍ନ ଲିପିମାନଙ୍କରେ ଦୃଷ୍ଟିଗୋଚର ହୁଏ । ଆଧୁନିକ ଆନ୍ଧ୍ର ପ୍ରଦେଶରେ ଥିବା ମୁଖଲିଙ୍ଗମ୍ ଏକଦା କଳିଙ୍ଗର ରାଜଧାନୀ ଥିଲା । ସେତେବେଳେ ଏହାକୁ କଳିଙ୍ଗନଗର କୁହାଯାଉଥିଲା । ପ୍ରାଚୀନ 'ଖେମୁଣ୍ଡି ମଣ୍ଡଳ'କୁ ଗଙ୍ଗମାନେ ନିଜ ରାଜ୍ୟରେ ମିଶ୍ରଣ କରିବା ପରେ ହିଁ ନଗରୀ କଟକ ହେଲା ଏହାର ପରିବର୍ତ୍ତିତ ନାମ । ମୁଖଲିଙ୍ଗମ୍ ଠାରେ ଗଙ୍ଗମାନଙ୍କ ରାଜଧାନୀ ସ୍ଥାପିତ ହେବା ଦିନଠାରୁ ତାହା ଖେମୁଣ୍ଡି ରାଜ୍ୟ ସହ ଏକୀଭୂତ ହୋଇଥିବା ପ୍ରତୀୟମାନ ହୁଏ । ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଆଧୁନିକ ମୁଖଲିଙ୍ଗମ୍‌ର ନାମ କଳିଙ୍ଗନଗର ରହି ଆସିଥିଲା । ସେହି ସମୟରୁ ମୁଖଲିଙ୍ଗମ୍‌ରେ ଦୁଇଗୋଟି ପ୍ରାଚୀନ ମନ୍ଦିର ରହିଛି । ସେଥିରୁ ଗୋଟିଏ ମନ୍ଦିରର ଗାତ୍ରରେ ଗଙ୍ଗମାନଙ୍କ କୀର୍ତ୍ତି ଓଡ଼ିଆ ଭାଷାରେ ଲେଖା ହୋଇଅଛି ।

ଗଙ୍ଗବଂଶାବତଂସ ପ୍ରବଳ ପରାକ୍ରମ ଅନନ୍ତବର୍ମା ଚୋଡଗଙ୍ଗ ଦେବଙ୍କର ଅଭ୍ୟୁଦୟ ଘଟିବା ପରେ, ଦ୍ୱାଦଶ ଶତାବ୍ଦୀର ଆଦ୍ୟ କାଳରେ ସେ ଉତ୍କଳର ସୋମବଂଶୀ ରାଜା କର୍ଣ୍ଣକେଶରୀଙ୍କୁ ପରାସ୍ତ କରିଦେବାରୁ କଳିଙ୍ଗ ସହ ଉତ୍କଳର ମିଶ୍ରଣ ହେଲା । ସେ ରାଜଧାନୀକୁ କଳିଙ୍ଗନଗରରୁ ଉଠାଇ ନେଇ କଟକର ବିଡାନାସୀ ଠାରେ ନୂତନ ରାଜଧାନୀ ସ୍ଥାପନ କଲେ । ଚୋଡଗଙ୍ଗ ଦେବଙ୍କର ଜଣେ ଅନୁଗତ ତଥା ବଳବନ୍ତ ଭାଇ ପେରମେଡି ବା ପରମର୍ଦ୍ଦି ଦେବ ନାମରେ ଥିଲେ । ସେ କଳିଙ୍ଗର ଶାସନ ଭାର ଗ୍ରହଣ କରିଥିବା ଐତିହାସିକମାନେ ଅନୁମାନ କରନ୍ତି । ପରମର୍ଦ୍ଦି ଦେବଙ୍କର ଜନୈକ ପୁତ୍ରଙ୍କ ନାମ ମଧ ଚୋଡଗଙ୍ଗ ଦେବ । କେତେକ ଐତିହାସିକ ଏହି ୨ୟ ଚୋଡଗଙ୍ଗ ଦେବଙ୍କୁ ଭ୍ରମବଶତଃ ୧ମ ଚୂଡଗଙ୍ଗଦେବ ଭାବେ ଗ୍ରହଣ କରି ନେଇଛନ୍ତି । ସୁତରାଂ ପାରଳାଖେମୁଣ୍ଡି ରାଜବଂଶର ଆଦିପୁରୁଷ ଭାବେ ଚୋଡଗଙ୍ଗ ଦେବ (୨ୟ)ଙ୍କୁ ଗ୍ରହଣ କରିବା ହିଁ ଯୁକ୍ତି ସଙ୍ଗତ । ଏହି ଗଙ୍ଗମାନେ ନିଜକୁ ଚନ୍ଦ୍ରବଂଶୀ ବୋଲି ଦାବି କରନ୍ତି । ଏମାନଙ୍କର ଗୋତ୍ର ଆତ୍ରେୟ । ଏମାନେ ବଂଶାନୁକ୍ରମେ ୧ମ ଚୋଡଗଙ୍ଗ ଦେବ ଉତ୍କଳର ଗଜପତି ହେବା ଦିନଠାରୁ କଳିଙ୍ଗ ଅନ୍ତର୍ଭୁକ୍ତ ଖେମୁଣ୍ଡି ଓ ସେଥିର ଅନ୍ତଃପାତୀ ପାରଳାଖେମୁଣ୍ଡିକୁ ଶାସନ କରିଆସୁଛନ୍ତି । ଚୋଡଗଙ୍ଗ ଦେବ ଉତ୍କଳର ଗଜପତି ସିଂହାସନ ଅଳଙ୍କୃତ କରିବା ଦିନଠାରୁ ନିଶଙ୍କ ଭାନୁଦେବଙ୍କ ପର୍ଯ୍ୟନ୍ତ ଗଙ୍ଗବଂଶୀମାନେ ଉତ୍କଳର ଗଜପତି ପଦରେ ଥିଲେ । ନିଶଙ୍କ ଭାନୁ ଅପୁତ୍ରକ ହେବା ଓ ସେ ଶତ୍ରୁ ହସ୍ତରେ ନିହତ ହେବା ଯୋଗୁଁ ଉତ୍କଳରେ ଗଙ୍ଗ ଶାସନର ବିଲୟ ଘଟିଲା । ଜଣେ ସୂର୍ଯ୍ୟବଂଶୀ ସାମନ୍ତ ରାଜାଙ୍କ ପୁତ୍ର କପିଳେଶ୍ୱର ଦେବ ଗଜପତି ସିଂହାସନ ଅଧିକାର କରିନେଲେ । ଏହିଠାରୁ ଉତ୍କଳରୁ ଗଙ୍ଗବଂଶ ଛିନ୍ନ ହୋଇଗଲା । ତେବେ ପରମର୍ଦ୍ଦି ଦେବଙ୍କ ସମୟରୁ କଳିଙ୍ଗ ନଗରରେ ପ୍ରାଚୀନ ଗଙ୍ଗବଂଶର ଯେଉଁ ଶାଖା କଳିଙ୍ଗର ଏହି ଦୁର୍ଗମ ଅଞ୍ଚଳକୁ ଶାସନ କରୁଥିଲେ ତାଙ୍କର କୌଣସି ନା କୌଣସି ଉତ୍ତରାଧିକାରୀ ଖେମୁଣ୍ଡି ମଣ୍ଡଳରେ ରହି ସାର୍ବଭୌମତ୍ୱ ରକ୍ଷା କରିବା ସହ ନିଜର ଶାସନ ଅବିଚ୍ଛିନ୍ନ ଭାବରେ ଚଳାଇ ରଖିଥିଲେ । ବର୍ତ୍ତମାନ ଯେଉଁ ରାଜବଂଶର ଦାୟାଦମାନେ ପାରଳାଖେମୁଣ୍ଡିଠାରେ ଅବସ୍ଥାନ କରୁଅଛନ୍ତି ସେମାନେ ପ୍ରାଚୀନ ଗଙ୍ଗବଂଶର ଦାୟାଦ । ସେମାନେ ଚନ୍ଦ୍ରବଂଶୀ । ସେମାନଙ୍କର ଗୋତ୍ର ଆତ୍ରେୟ । ଏଠାରେ ସ୍ମରଣ କରାଇ ଦେବା ଉଚିତ ଯେ କେତେକ ଆଲୋଚକ ଏପରି କି ଐତିହାସିକ ମଧ ଏକ ଉଦ୍ଭଟ କିମ୍ବଦନ୍ତୀକୁ ଆଣି ପାରଳା ରାଜଗାଦି ଓ ରାଜବଂଶ ସହ ଯୋଡି ଦେଇଛନ୍ତି । ସେମାନେ ପାରଳା ରାଜବଂଶର ଆଦିପୁରୁଷ ସୂର୍ଯ୍ୟବଂଶୀ କ୍ଷତ୍ରିୟ କପିଳେଶ୍ୱର ଦେବଙ୍କ ଅଠର ଜଣ ପୁତ୍ରଙ୍କ ମଧ୍ୟରୁ ଜ୍ୟେଷ୍ଠପୁତ୍ର କଳାହମ୍ବିର ବୋଲି ପ୍ରକାଶ କରିଛନ୍ତି । କିମ୍ବଦନ୍ତୀ ପ୍ରକାରେ ଅନ୍ତର ଭାଇ ପୁରୁଷୋତ୍ତମ ଦେବ ଉତ୍କଳର ଗଜପତି ସିଂହାସନ ଆରୋହଣ

କରିବାରୁ କଳାହମ୍ସିର ବିଦ୍ରୋହ କରି ଉତ୍କଳରୁ ବିତାଡିତ ହୋଇଥିବା ପରିପ୍ରେକ୍ଷୀରେ ଗୁଡାରୀଠାରେ ଖେମୁଣ୍ଡି ରାଜ୍ୟ ପ୍ରତିଷ୍ଠା କରିଥିଲେ ବୋଲି କଥିତ । କଳାହମ୍ସିର ସୂର୍ଯ୍ୟବଂଶଜ । ତାଙ୍କର ଗୋତ୍ର ଗୌତମ । ତେଣୁ ତାଙ୍କର ଚନ୍ଦ୍ରବଂଶୀ ଆତ୍ରେୟ ଗୋତ୍ରୀୟ ଗଙ୍ଗମାନଙ୍କ ସହ କୌଣସି ଆନୁବଂଶିକ ସମ୍ପର୍କ କଦାଚ ରହି ନପାରେ । କୌଣସି ସମୟରେ ସୂର୍ଯ୍ୟବଂଶୀ କପିଳେଶ୍ୱରଙ୍କ ଦାୟାଦମାନଙ୍କ ମଧ୍ୟରୁ କାହାରିକୁ ଖେମୁଣ୍ଡିର ଗଙ୍ଗବଂଶୀ ରାଜାମାନେ ପୋଷ୍ୟପୁତ୍ର ଗ୍ରହଣ କରିଥିବାର ପ୍ରମାଣ ମିଳୁ ନାହିଁ । ସୁତରାଂ 'କଳାହମ୍ସିର' କିମ୍ବଦନ୍ତୀଟି ଯେ ସଂପୂର୍ଣ୍ଣ ଉଦ୍ଭଟ ଓ ଅବିଶ୍ୱାସ୍ୟ ଏଥିରେ ସନ୍ଦେହର ଲେଶମାତ୍ର କାରଣ ନାହିଁ ।

ଅନ୍ୟ କେତେକଙ୍କ ମତରେ ପ୍ରାକୃତିକ ଓଡ଼ିଶାର ପଶ୍ଚିମାଞ୍ଚଳ ରାଣୀପୁର-ଝରିଆଲରୁ ବିତାଡିତ ଗଙ୍ଗବଂଶୀ (ବାମଣ୍ଡା ଶାଖାର) ରାଜପୁତ୍ରମାନେ ଆସି ଖେମୁଣ୍ଡି ରାଜ୍ୟ ସ୍ଥାପନ କରିଥିଲେ ଓ ସେମାନଙ୍କର ଉତ୍ତରାଧିକାରୀମାନେ ହିଁ ଖେମୁଣ୍ଡି ବିଭକ୍ତ ହେବା ପରଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ପାରଳାଖେମୁଣ୍ଡି, ବଡଖେମୁଣ୍ଡି ଓ ସାନଖେମୁଣ୍ଡିରେ ରହି ଆସୁଅଛନ୍ତି । ଏହି ଉକ୍ତିର ମଧ୍ୟ କୌଣସି ଐତିହାସିକ ଭିତ୍ତି ନାହିଁ । ଡଃ ସତ୍ୟନାରାୟଣ ରାଜଗୁରୁ "History of Gangas - Vol.II" ରେ ଏ ଉକ୍ତିକୁ ସମର୍ଥନ କରି କୌଣସି ସୂଚନା ଦେଇ ନାହାନ୍ତି । ସମ୍ବଲପୁର, ବାମଣ୍ଡା, ସୋନପୁର, ବୌଦ୍ଧ, ଘୁମୁସର, ପାଟଣା ପ୍ରଭୃତି ପ୍ରାଚୀନ ରାଜ୍ୟଗୁଡ଼ିକ ସମ୍ପର୍କରେ କୌଣସି ଇତିହାସ ବା ସାହିତ୍ୟ ପୋଥିରେ ମଧ୍ୟ ଶେଷୋକ୍ତ ଉକ୍ତିକୁ ସମର୍ଥନ କରୁଥିବା କୌଣସି ପ୍ରାମାଣିକ ଉଲ୍ଲେଖ ଆମ ଦୃଷ୍ଟିକୁ ଆସିନାହିଁ । ପରନ୍ତୁ, ଡଃ ସତ୍ୟନାରାୟଣ ରାଜଗୁରୁ "History of Gangas - Vol.II" ରେ ସମସ୍ତ ଖେମୁଣ୍ଡି ରାଜା ଚନ୍ଦ୍ରବଂଶୀ ଗାଙ୍ଗେୟ ୨ୟ ଚୂଡ଼ଙ୍ଗ ଦେବଙ୍କ ବଂଶଧର ବୋଲି ଅକାଟ୍ୟଯୁକ୍ତି ଉପସ୍ଥାପନ କରି କଳାହମ୍ସିର ଉପାଖ୍ୟାନକୁ ସମ୍ପୂର୍ଣ୍ଣ ରୂପେ ଅଗ୍ରାହ୍ୟ କରି ଦେଇଛନ୍ତି । ସମୟକ୍ରମେ ଖେମୁଣ୍ଡି ରାଜ୍ୟ ପ୍ରଥମେ ପାରଳାଖେମୁଣ୍ଡି ଓ ଖେମୁଣ୍ଡି ଏପରି ଦୁଇଭାଗରେ ବିଭକ୍ତ ହେଲା । ପରେ ଖେମୁଣ୍ଡି ଦୁଇଭାଗରେ ବିଭକ୍ତ ହୋଇ ବଡଖେମୁଣ୍ଡି ଓ ସାନଖେମୁଣ୍ଡି ନାମରେ ନାମିତ ହୋଇଅଛି ।

ପାରଳାଖେମୁଣ୍ଡିର ରାଜଧାନୀ ପ୍ରଥମେ କଳିଙ୍ଗନଗର ଓରଫ୍ ନଗରୀ କଟକ ଓରଫ ମୁଖଲିଙ୍ଗମ୍‌ରେ ଥିଲା । ପରେ ସେଠାରୁ ପୁରୁଣାପାଟଣାକୁ ସ୍ଥାନାନ୍ତର କରାହୋଇଥିଲା । ତେବେ ଅଷ୍ଟାଦଶ ଶତାବ୍ଦୀର ପ୍ରାୟ ମଧ୍ୟଭାଗରେ ପ୍ରତାପରୁଦ୍ର ଗଜପତି ନାରାୟଣ ଦେବଙ୍କ ସମୟରେ ନିରାପତ୍ତା ଦୃଷ୍ଟିରୁ ରାଜଧାନୀକୁ ପୁରୁଣାପାଟଣାରୁ ପାରଳାଖେମୁଣ୍ଡିକୁ ଉଠାଇ ଅଣାଯାଇଥିଲା । ଆମେ ପୂର୍ବରୁ ଦର୍ଶାଇଛୁ ଯେ ଗଙ୍ଗମାନେ କଳିଙ୍ଗ ଅଧିକାର କରି କଳିଙ୍ଗନଗର (ମୁଖଲିଙ୍ଗମ୍)ରେ ରାଜଧାନୀ ସ୍ଥାପନ କଲାବେଳକୁ

'ଖେମୁଣ୍ଡି ମଣ୍ଡଳ' ଏକ ସ୍ୱାଧୀନ ପାର୍ବତ୍ୟ ରାଜ୍ୟଭାବେ ଥିଲା । ତେଣୁ ସେହି ପାର୍ବତ୍ୟରାଜ୍ୟରେ କୌଣସି ବନବାସୀ ବା ଅନାର୍ଯ୍ୟ ରାଜା ଶାସନ କରିଥିବା ସମ୍ଭବ । ସେହି ପ୍ରାଚୀନ 'ଖେମୁଣ୍ଡିମଣ୍ଡଳ'ରେ ପାରଳାଖେମୁଣ୍ଡି ଏକ ଶାସନକେନ୍ଦ୍ର ଭାବେ ରହିଥିବାର ପ୍ରମାଣ ମିଳୁଛି । କାରଣ ପାରଳାଖେମୁଣ୍ଡିର ପୂର୍ବ ଉତ୍ତର ଦିଗରେ ଯେଉଁ ଭୋଇ ପାହାଡଟି ଅଛି ତା'ର ପୂର୍ବନାମ ଥିଲା ମାଳତିଗିରି । ସେଠାରେ ବିଂଶ ଶତାବ୍ଦୀର ୨ୟ ଦଶକ ପର୍ଯ୍ୟନ୍ତ ତିମି ମାଛର ହାଡରେ ନିର୍ମିତ ଏକ କ୍ଷୁଦ୍ର ଦୁର୍ଗର ଧ୍ୱଂସାବଶେଷ ଥିବା କବି ଶେଖର ଚିନ୍ତାମଣିଙ୍କ 'ପୁଣ୍ୟପାଠ'ରୁ କିଂଚିତ୍ ଆଭାସ ମିଳେ । ଡଃ ସତ୍ୟନାରାୟଣ ରାଜଗୁରୁ ମଧ୍ୟ "History of Gangas - Vol.II" ରେ ଏହି ମତକୁ ପ୍ରକାରାନ୍ତରେ ସମର୍ଥନ କରିଅଛନ୍ତି । ପାରଳାଖେମୁଣ୍ଡିର ଉକ୍ତ ଦୁର୍ଗାଧିପତିଙ୍କ ନାମ ପ୍ରବାଳ ଖେମୁଣ୍ଡ ବୋଲି ଐତିହାସିକ ଦଣ୍ଡପାଣି ବେହେରାଙ୍କ ମତ । ଏବଂ ତାଙ୍କ ମତରେ ପ୍ରବାଳ ଖେମୁଣ୍ଡ ନାମର ଅପଭ୍ରଂଶ ହୋଇ ଆଧୁନିକ ପାରଳାଖେମୁଣ୍ଡି ନାମର ସୃଷ୍ଟି । ପାରଳାଖେମୁଣ୍ଡିର ଗଜପତି ପ୍ରେସରେ ଆନୁମାନିକ ୧୮୯୦ରେ ମୁଦ୍ରିତ ଏକ କ୍ଷୁଦ୍ର ଇଂରାଜୀ ପୁସ୍ତିକା "Paralakhemundi Zamindary"ର ପୃଷ୍ଠା ୨ରେ ପାରଳାଖେମୁଣ୍ଡିର ନାମକରଣ ସମ୍ପର୍କରେ ଏକ ସୁନ୍ଦର ବର୍ଣ୍ଣନା ଦେଖିବାକୁ ମିଳେ । ଉକ୍ତ ବର୍ଣ୍ଣନାଟି ଏହିପରି - In shape, the country resembles the head of a coral and hence the name Paralakhemundi (Pravalo-Khi Mund) । ଅବିଭକ୍ତ ପାରଳାଖେମୁଣ୍ଡିର ଭୌଗୋଳିକ ସୀମାନୁକ୍ରମେ ପ୍ରସ୍ତୁତ ନକ୍ସା ଏଥିସହ ସାମଞ୍ଜସ୍ୟ ରକ୍ଷା କରୁଥିବାରୁ ଏ ଉକ୍ତିକୁ ଅଗ୍ରାହ୍ୟ କରାଯାଇ ନପାରେ । ତେବେ ଯାହାବି ହେଉ 'ପ୍ରବାଳ ଖେମୁଣ୍ଡ' ବା 'ପ୍ରବାଳ ଖିମୁଣ୍ଡ'ର ଅପଭ୍ରଂଶ 'ପାରଳାଖେମୁଣ୍ଡି' ବୋଲି ପ୍ରତୀତ ହେଉଛି ।

ପାରଳାଖେମୁଣ୍ଡି ରାଜ୍ୟ ହୀରାମଣ୍ଡଳମ୍ ଲଗାଏତ ଶ୍ରୀ-କୂର୍ମ ପର୍ଯ୍ୟନ୍ତ ବିସ୍ତୃତ ଥିଲା ପ୍ରାୟ ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ । ଟେକେଲିରେ କାଦମ୍ବ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ ସୁଦ୍ଧା ସେମାନେ ଗଙ୍ଗବଂଶୀ ରାଜାମାନଙ୍କର ସାମନ୍ତ ଭାବେ କାର୍ଯ୍ୟ କରୁଥିଲେ । ପରବର୍ତ୍ତୀ ସମୟରେ ପାରଳାଖେମୁଣ୍ଡି ରାଜବଂଶର ଯେଉଁ ଶାଖା ନନ୍ଦିଗାଁରେ ସାମନ୍ତ ଭାବେ ଥିଲେ ସେମାନଙ୍କ ଅଧୀନକୁ କିଛି ବର୍ଷ ପାଇଁ ଟେକେଲି ଆସିଯାଇଥିଲା । ବ୍ରିଟିଶ୍ ରାଜତ୍ୱ କାଳରେ ଯେଉଁ ଦୁର୍ଗାରାଜ (ଯୁବରାଜ) ଓ ପଦ୍ମନାଭ ଦେବଙ୍କ ନାମ ଟେକେଲି ଜମିଦାର ଭାବେ "ରସଲଙ୍କ ରିପୋର୍ଟ" ଓ "ଗଞ୍ଜାମ ଡିଷ୍ଟ୍ରିକ୍ଟ ମାନୁଆଲ"ରେ ଉଲ୍ଲେଖ କରାଯାଇଛି, ସେମାନେ ପାରଳା ରାଜ ପରିବାରର (ଗଙ୍ଗବଂଶୀ) ଅଟନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଆନ୍ଧ୍ରର ବିଜୟନଗରରେ ଯେଉଁ ଗଜପତିମାନେ ବର୍ତ୍ତମାନ ପର୍ଯ୍ୟନ୍ତ ରହି ଆସି ଅଛନ୍ତି ସେମାନେ ସୂର୍ଯ୍ୟବଂଶୀ କ୍ଷତ୍ରିୟ । ପାରଳା ରାଜପରିବାର ସହ ସେମାନଙ୍କର ଆନୁବଂଶିକ

ସମ୍ପର୍କ ନାହିଁ । ପାରଳାଖେମୁଣ୍ଡିରେ ରାଜପଣ କରିଆସିଥିବା ରାଜାମାନଙ୍କର ଏକ ତାଲିକା ନିମ୍ନରେ ପ୍ରଦର୍ଶାଯାଇଅଛି ।

ସର୍ବଜ୍ଞ ଜଗନ୍ନାଥ ନାରାୟଣ ଦେବ (ଏହାଙ୍କ ଠାରୁ ନାରାୟଣ ଦେବ ସଞ୍ଜ୍ଞା ଆରମ୍ଭ)
|
ନରହରି ନାରାୟଣ ଦେବ
|
(ବୀର) ପଦ୍ମନାଭ ନାରାୟଣ ଦେବ
|
ପ୍ରତାପରୁଦ୍ର ନାରାୟଣ ଦେବ (୧ମ) (୧୭୪୮-୫୧)
|
ଜଗନ୍ନାଥ ନାରାୟଣ ଦେବ (୨ୟ) (୧୭୫୧-୧୭୭୦) ଏହାଙ୍କ ପିତା ଯୋଗୀନ୍ଦ୍ର ଦେବ ପ୍ରତାପରୁଦ୍ରଙ୍କ କକାପୁଅ ଭାଇ । ଜଗନ୍ନାଥ ପ୍ରତାପରୁଦ୍ର ଦେବଙ୍କୁ ଦତ୍ତ ହୋଇ ରାଜସିଂହାସନ ଆରୋହଣ କଲେ ।
|
ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ (୧)
|
ପୁରୁଷୋତ୍ତମ ଗଜପତି ନାରାୟଣ ଦେବ
|
ଜଗନ୍ନାଥ ଗଜପତି ନାରାୟଣ ଦେବ (୩)
|
ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ (୨)
|
ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ (୨)
|
କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ
|
ରାମଚନ୍ଦ୍ର ଦେବ (ଗାଦି ନସୀନ ହୋଇନାହାନ୍ତି)
|
ଗୋପୀନାଥ ଗଜପତି ନାରାୟଣ ଦେବ

ପାରଳାଖେମୁଣ୍ଡିରେ ବର୍ତ୍ତମାନ ଅବସ୍ଥାନ କରୁଥିବା ଗଙ୍ଗବଂଶୀ ରାଜପରିବାରର ପୂର୍ବପୁରୁଷ ଅନନ୍ତବର୍ମା ଚୋଡଗଙ୍ଗ ଦେବ ମୁଖଲିଙ୍ଗମ୍‌ଠାରୁ ନିଜର ସାମ୍ରାଜ୍ୟ ବିସ୍ତାର କରି କଳିଙ୍ଗସହ କୋଙ୍ଗଦ, ଉତ୍ର ବା ଉତ୍କଳର ମିଶ୍ରଣ କରିଥିଲେ ଯଦ୍ୱାରା ବିଶାଳ ଓଡ଼ିଶାର ନିର୍ମାଣ ହୋଇଥିଲା । ସେ ପୁରୀର ବିଶ୍ୱବିଖ୍ୟାତ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କ ଦାୟାଦ ଅନଙ୍ଗଭୀମ ବହୁ ପରିମାଣର ସ୍ଥାବରାସ୍ଥାବର ସମ୍ପତ୍ତି ଉକ୍ତ ମନ୍ଦିରକୁ ଦାନ କରିଅଛନ୍ତି । ଭୁବନେଶ୍ୱର ନିକଟସ୍ଥ କୌଶଲ୍ୟାଗଙ୍ଗ ଓ ଲକ୍ଷ୍ମୀସାଗର ନାମିତ ବିଶାଳ ପୁଷ୍କରିଣୀ ଦୁଇଟି ଏହି ରାଜବଂଶର କୀର୍ତ୍ତି । ପାରଳାଖେମୁଣ୍ଡିରେ ରାଜପଣ କରିଥିବା ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ ରାମସାଗର, ସୀତାସାଗର, ଲକ୍ଷ୍ମଣସାଗର ଓ ଭରତସାଗର ନାମରେ ପ୍ରକାଣ୍ଡ ଜଳାଶୟମାନ ଖୋଳାଇ ପାରଳାଖେମୁଣ୍ଡି ସହରକୁ ଏକ ସରୋବରର ସହରରେ ପରିଣତ କରିଥିଲେ । ଏଥିପାଇଁ ବିଲାତରେ ପାରଳାଖେମୁଣ୍ଡିକୁ "City of Tanks" କୁହାଯାଉଥିଲା । ସେହି ସରୋବରମାନଙ୍କ ମଧ୍ୟରୁ ଲକ୍ଷ୍ମଣସାଗର ବର୍ତ୍ତମାନ ଅବଲୁପ୍ତ । ପଙ୍କିଳ ପାଣିକୁ ନେଇ ତିଷ୍ଠି ରହିଥିବା ପାରଳା ସହରର ଦୋଳବନ୍ଧର ଅପରପାର୍ଶ୍ୱରେ, ଦକ୍ଷିଣଦିଗକୁ ବର୍ତ୍ତମାନ ଯେଉଁ ଶସ୍ୟକେଦାର ଦୃଶ୍ୟମାନ ହୁଏ, ତାହା ହିଁ ଥିଲା ଲକ୍ଷ୍ମଣ ସାଗରର ଅବସ୍ଥିତି ।

୧୮୩୪ ପର୍ଯ୍ୟନ୍ତ ପାରଳାଖେମୁଣ୍ଡି କେବେହେଲେ ନିଜର ସ୍ୱାଧୀନତା ହରାଇ ନଥିଲା । ମଝେ ମଝେ ଏହାର ସ୍ୱାଧୀନତା ଅପହରଣ ପାଇଁ ଉଦ୍ୟମ ହୋଇଛି । କିନ୍ତୁ ମୁସଲମାନ୍, ମୋଗଲ, ଫାରସୀ ଓ ଇଂରେଜ କେହି ବି ପାରଳାଖେମୁଣ୍ଡିରେ ନିରଙ୍କୁଶ ପ୍ରତ୍ୟକ୍ଷ ଶାସନ ଚଳାଇବାକୁ କ୍ଷମ ହୋଇନାହାନ୍ତି ୧୮୩୪ ମସିହା ପର୍ଯ୍ୟନ୍ତ । ମୁସଲମାନମାନେ ନାମକୁମାତ୍ର ଏ ଭୂଖଣ୍ଡରେ ଶାସନ କରିଥିଲେ ସିନା ! କେଉଁ ସେମାନଙ୍କ ପକ୍ଷେ କ୍ଷମତା ଜାହିର କରିବା ସମ୍ଭବ ହୋଇନଥିଲା । ସେହିପରି ଫାରସୀମାନେ ଏ ଅଂଚଳକୁ ଶାସନ କରିବାକୁ ୧୭୫୩ରେ ଆସି ଜଗନ୍ନାଥ ନାରାୟଣ ଦେବଙ୍କ କୂଟନୀତିର ଶରବ୍ୟ ହୋଇ ଫେରି ଯାଇଛନ୍ତି । ୧୭୬୭ରୁ ଇଂରେଜମାନେ ପାରଳାଖେମୁଣ୍ଡିକୁ ଶାସନ କରିବାକୁ ଉଦ୍ୟମ ଆରମ୍ଭ କଲେ । ୧୭୬୭ରୁ ୧୮୩୪ - ଏହି ସୁଦୀର୍ଘ ୬୭ ବର୍ଷ ସେମାନଙ୍କ ସହ ପାରଳାର ତତ୍କାଳୀନ ରାଜା ଜଗନ୍ନାଥ ନାରାୟଣ ଦେବ (୨ୟ), ଗଜପତି ଦେବ, ଜଗନ୍ନାଥ ଦେବଙ୍କ ସମେତ ଦୋରା, ବିଶୋଇ, ପାଇକ, ଶବର ସମସ୍ତେ ସଙ୍ଘର୍ଷ ଜାରି ରଖିଥିଲେ । ପ୍ରତିରୋଧ ସଂଗ୍ରାମ ୧୮୩୨ରୁ ୩୪ ମଧ୍ୟରେ ଅତି ପ୍ରବଳ ହୋଇଥିଲା । ଏଥିରେ ଅନେକ ଇଂରେଜ ଓ ବ୍ରିଟିଶ ଅନୁଗତ ଦେଶୀୟ ସାମରିକ ଅଧିକାରୀ ଓ ସିପାହୀଙ୍କ ଜୀବନ ଯାଇଛି ପାରଳାର ପାଇକମାନଙ୍କ

ବନ୍ଧୁକ ଓ ତୀର ମୁନରେ । ଇଂରେଜମାନଙ୍କ ସେନାଛାଉଣୀମାନ ପାରଳାର ରାଜାଙ୍କ ଆକ୍ରମଣରେ ଧ୍ୱଂସପ୍ରାପ୍ତ ହୋଇଛି । ସେମାନଙ୍କର ଅକଳନୀୟ ସଂପଦ ମଧ ଲୁଟ୍‌ପାଟ ହୋଇଛି । ଏପରିକି ପାରଳାଖେମୁଣ୍ଡିର ପଶ୍ଚିମ ଦକ୍ଷିଣ ଅଂଚଳକୁ ପାରଳାର ପାଇକମାନେ ସ୍ୱାଧୀନ କରିଦେଇଥିଲେ । ଏସବୁର ବିବରଣୀ ଏଠାରେ ଦେବା ସମ୍ଭବ ନୁହେଁ । ତାରି ପର୍ଯ୍ୟାୟରେ ୬୭ ବର୍ଷବ୍ୟାପୀ ହୋଇଥିବା ଯୁଦ୍ଧର ବିବରଣୀ ଦେବାକୁ ଏକ ସ୍ୱତନ୍ତ୍ର ପୁସ୍ତକ ରଚନା କରିବାକୁ ପଡ଼ିବ । ତେବେ, ଏତିକିମାତ୍ର କହିଲେ ଯଥେଷ୍ଟ ହେବ ଯେ ୧୮୩୩-୩୪ରେ ୩ୟ ବା ଶେଷ ପର୍ଯ୍ୟାୟ ଯୁଦ୍ଧରେ ପାରଳା ପାଇକମାନେ ଅନ୍ତର୍ଘାତୀ କାର୍ଯ୍ୟ ହେତୁ ପରାଜୟବରଣ କଲେ । ଏଥିପାଇଁ ଦୋରା, ବିଷୋଇ ଓ ପାଇକମାନଙ୍କ ମଧ୍ୟରୁ ଅନେକଙ୍କୁ ଫାଶିଦଣ୍ଡ ଭୋଗିବାକୁ ପଡିଛି, ଆଜୀବନ କାରାଦଣ୍ଡ ଓ କଳାପାଣି ଭୋଗିବାକୁ ହୋଇଛି ମଧ । ରାୟଗଡାର ବିଶୋଇ ଓ ଲାବନ୍ୟଗଡର ବିଶୋଇ ଫାଶିଖୁଣ୍ଟରେ ଝୁଲିଛନ୍ତି, ଗଣ୍ଡାହାତୀର ଗୋପୀନାଥ ପଟ୍ଟନାୟକ ଓ ଅଲଡାର ଦୋରାଙ୍କୁ ମଧ ଫାଶିଦଣ୍ଡ ମିଳିଛି । ଜୀରାଙ୍ଗର ବିଶୋଇ ଫାଶି ପୂର୍ବରୁ ମୃତ୍ୟୁବରଣ କରିଛନ୍ତି । ଶହ ଶହ ଦେଶଭକ୍ତ ପାଇକ ସର୍ବହରା ପାଲଟିଛନ୍ତି । ବିଦ୍ରୋହ ଦମନ ହେବାର ୨୦ ବର୍ଷ ପରେ ପୁନର୍ବାର ବିଦ୍ରୋହ ମୁଣ୍ଡ ଟେକିଥିଲା ୧୮୫୬-୫୭ରେ । ଏଥିରେ ନେତୃତ୍ୱ ନେଇଥିଲେ ଗାଇବାର ରାଧାକୃଷ୍ଣ ଦଣ୍ଡସେନା । ଏହି ସଙ୍ଘର୍ଷରେ ମଧ ବ୍ରିଟିଶ୍‌ବାହିନୀକୁ କଷ୍ଟସାଧ୍ୟ ବିଜୟ ହିଁ ମିଳିଥିଲା । ରାଧାକୃଷ୍ଣ ଦଣ୍ଡସେନା ଧରା ହୋଇ ଫାଶି ପାଇଥିଲେ । ଏହାଥିଲା ପାରଳା ପାଇକଙ୍କର ଶେଷ ପର୍ଯ୍ୟାୟ ସଂଗ୍ରାମ ଇଂରେଜମାନଙ୍କ ସହ । ଏ ସଂଗ୍ରାମ 'ଗାଇବା ପିଲାମେଳି' ନାମରେ ପରିଚିତ ।

ଓଡ଼ିଶାରେ ପାଇକ ବିଦ୍ରୋହ ୧୮୧୭ରେ ଆରମ୍ଭ ହୋଇ ୧୮୨୭ ବେଳକୁ ସମ୍ପୂର୍ଣ୍ଣ ଭାବେ ପ୍ରଶମିତ ହୋଇଯାଇଥିଲା । ଭାରତ ବର୍ଷରେ ଯେତେ ସଂଗ୍ରାମ ଇଂରେଜ ବିରୁଦ୍ଧରେ ହୋଇଛି କୌଣସି ଠାରେ ପାରଳା ତୁଲ୍ୟ ୭ ଦଶନ୍ଧି ବ୍ୟାପି ଧାରାବାହିକ ସଂଗ୍ରାମ ହୋଇଥିବାର ନଜିର ନାହିଁ । ବିଶେଷକରି ପାରଳାରେ ସଂଘଟିତ ୩ୟ ପର୍ଯ୍ୟାୟ ସଂଗ୍ରାମ (୧୮୩୩-୩୪)ରେ ଦୋରା, ବିଶୋଇ, ଟାଉନ୍ ପିଅନ ଓ ଜଙ୍ଗଲ ପିଅନ (ସହର ଓ ଜଙ୍ଗଲ ଅଞ୍ଚଳର ସୈନ୍ୟ) ଶ୍ରେଣୀର ଯୋଦ୍ଧାମାନେ ଯେଭଳି ଭାବରେ ଇଂରେଜ ବାହିନୀର ଉନ୍ନତ ଆଗ୍ନେୟାସ୍ତ୍ର ଗୁଡ଼ିକର ସାମନା କରି ଅନେକ କ୍ଷେତ୍ରରେ ବିଜୟ ବିମଣ୍ଡିତ ହୋଇଥିଲେ ତା'ର ପଟାନ୍ତର ନାହିଁ । ଇଂରେଜ ବାହିନୀ ପରାଜୟ ପ୍ରାୟ ଅବସ୍ଥାକୁ ଆସିଯାଇଥିବାବେଳେ ରାୟଗଡ ପାର୍ବତ୍ୟ ଦୁର୍ଗର ଜଣେ ଦୁଇଜଣ ପାଇକ ସେନାଙ୍କର ଗୋତ୍ରମାରୁ କାର୍ଯ୍ୟ ଯୋଗୁଁ ପାରଳାବାହିନୀକୁ ପରାଜୟ ବରଣ କରିବାକୁ ପଡିଥିଲା ।

୧୯୪୭ରେ ଭାରତ ସ୍ୱାଧୀନତା ପାଇଛି ସତ କିନ୍ତୁ, ୧୮୩୩-୩୪ରେ ପାରଳାଖେମୁଣ୍ଡିର ଦକ୍ଷିଣ ପଶ୍ଚିମ (ଅର୍ଥାତ୍ ଆଧୁନିକ କାଶୀନଗର) ଅଞ୍ଚଳକୁ ସେଠିକାର "ଦୋରାତାନାମ", ପାଇକ ଓ ବିଶୋଇମାନେ ସଂଗଠିତ ଭାବେ ଇଂରେଜ ଶାସନରୁ ସଂପୂର୍ଣ୍ଣ ମୁକ୍ତ କରିଦେଇଥିଲେ । ସେମାନେ ନିଜେ ଖଜଣା ଆଦାୟ କରିବା ସହ ଶାସନକୁ ବର୍ଷାଧିକକାଳ ନିଜ ନିୟନ୍ତ୍ରଣରେ ରଖିଥିଲେ । ଏ ଶ୍ରେୟର ଅଧିକାରିଣୀ ସେ ସମୟର ଗୁମ୍ମାଦୁର୍ଗର ରକ୍ଷାକର୍ତ୍ତ୍ରୀ ଶ୍ରୀମତୀ ହାରାମଣି ବିଶୋଇ, ଜିରାଙ୍ଗ ଦୁର୍ଗପତି ରଘୁନାଥ ବିଶୋଇ, ରାୟଗଡା ଦୁର୍ଗପତି କମଳଲୋଚନ ବିଶୋଇ, ଅଲଡାର "ଦୋରାତାନାମ" ମୁଖ୍ୟ ରାମରାଜୁ ଓ ତାହାଙ୍କ ଅନୁଜ ଜଗନ୍ନାଥ ରାଜୁ, କାଶୀନଗର ସନ୍ନିକଟ ଗୌରୀଗ୍ରାମର ଜନୈକ 'ମଖସା' ପିଅନ, ଗୁଡ଼ିପତି ଲାଛନା ନାମକ ଜଣେ ସଉରା ପାଇକ ସର୍ଦାର, ପାରଳାଖେମୁଣ୍ଡି ସଉରା ସାହିର ରାକନା ଚନ୍ଦୁଡ୍ର, ନମନାଗଡ ଓ ଅଜୟଗଡର ବିଶୋଇମାନେ । ଏମାନେ ଅସୀମ ସାହସ, ଧୈର୍ଯ୍ୟ ସହ ଜୀବନକୁ ବାଜି ଲଗାଇ ଯେଉଁ ଦେଶପ୍ରୀତିର ନମୁନା ରଖିଯାଇଛନ୍ତି ତା'ର ତୁଳନା ଭାରତର କୁତ୍ରାପି ଦୁର୍ମିଳ, ଏକଥା ଆମେ ଦୃଢ଼ତାର ସହିତ କହିପାରୁ ।

ଭାରତରେ ୧୮୫୭କୁ ୧ମ ସିପାହୀ ବିଦ୍ରୋହଭାବେ ଇତିହାସ ଲିପିବଦ୍ଧ କରିଛି । କିନ୍ତୁ, ତା'ର ଯଥେଷ୍ଟ ପୂର୍ବରୁ ଅର୍ଥାତ୍ ୧୭୮୦ ଅକ୍ଟୋବର ପ୍ରଥମ ଚରଣରେ ବିଶାଖାପାଟଣା ସାମରିକ ଶିବିରରେ ଏକ ବିଦ୍ରୋହ ସଂଘଟିତ ହୋଇଥିଲା । ଏ ବିଦ୍ରୋହର ସ୍ଥପତି ପାରଳାଖେମୁଣ୍ଡିର ରାଜା ଗଜପତି ଦେବ । ଏହି ବିଦ୍ରୋହରେ ପାରଳାଖେମୁଣ୍ଡି ପାର୍ବତ୍ୟ ଦୁର୍ଗମାନଙ୍କରୁ ଶବର ସୈନିକମାନେ ଯାଇ ସହାୟତା କରିଥିଲେ ଓ ସେଠାରୁ ଜଣେ ସାମରିକ ଅଧିକାରୀଙ୍କୁ ଗିରଫ କରି ଘେନି ଆସିଥିଲେ । ବିଶାଖାପାଟଣାରେ ଅବସ୍ଥାପିତ ପ୍ରଥମ ସରକାରୀ ରେଜିମେଣ୍ଟର ସିପାହୀମାନେ ୬ଜଣ ସାମରିକ ଅଧିକାରୀଙ୍କୁ ଗୁଳିକରି ହତ୍ୟା କଲେ । ସେଠିକାର ସାମରିକ ମୁଖ୍ୟଙ୍କୁ ଗରିଫ କରିନେବା ପରେ ପାରଳାଖେମୁଣ୍ଡିକୁ ଫେରିଆସିଥିଲେ । ପାରଳାଖେମୁଣ୍ଡିରେ ବିଦ୍ରୋହ ଚରମ ସୀମା ସ୍ପର୍ଶ କରିଥିଲା । ଏହା ଦମନ କରିବାକୁ ଇଂରେଜ ଶକ୍ତି ଲହୁ ଲୁହାଣ ହୋଇଛି । ପରିଶେଷରେ ସଂବେଦନଶୀଳ ଅଂଚଳମାନଙ୍କରେ ଶକ୍ତିଶାଳୀ ତୋପମାନ ଖଞ୍ଜି ଗୁଳିବର୍ଷଣ କରିବାକୁ ପଡିଛି ସେମାନଙ୍କୁ । ସେହି ତୋପମାନଙ୍କ ମଧ୍ୟରୁ ଜିରାଙ୍ଗ ଓ ରାୟଗଡ଼କୁ ସଂଯୋଗ କରୁଥିବା ସଡକର ଲାଞ୍ଜିପଦରଠାରେ ଗୋଟିଏ ଏବଂ ନାରାୟଣପୁର ରାଜସ୍ୱ ଡାକବଙ୍ଗଳାର ପଶ୍ଚାଦ୍‌ଭାଗରେ ଗୋଟିଏ, ଏ ପର୍ଯ୍ୟନ୍ତ ଦେଖିବାକୁ ମିଳୁଛି ।

# ପାରଳାଖେମୁଣ୍ଡିର ବୈଷ୍ଣବ ଧର୍ମଧାରା

ଭାରତବର୍ଷରେ ଧର୍ମ ଆଧାରରେ ବିଭିନ୍ନ ସଂପ୍ରଦାୟ ସୃଷ୍ଟି ହୋଇଛି । ଯଥା - ଶୈବ, ବୈଷ୍ଣବ, ଗାଣପତ୍ୟ ଓ ଶାକ୍ତ ଇତ୍ୟାଦି । ଲୌକିକ ଭାବରେ ସମସ୍ତ ସଂପ୍ରଦାୟରେ ଜାତି ଓ ବର୍ଣ୍ଣ ପ୍ରଥା ଚଳି ଆସିଥିଲା । କିନ୍ତୁ ବୈଷ୍ଣବ ସଂପ୍ରଦାୟରେ ଶ୍ରୀଚୈତନ୍ୟ ଓ ରାମାନନ୍ଦାଚାର୍ଯ୍ୟଙ୍କ ମତରେ ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ସମାନ ଅଧିକାର ଓ ଅଂଶଗ୍ରହଣର ପ୍ରତିଶ୍ରୁତି ଦିଆଯାଇଥିଲା । ସେଥିପାଇଁ ଲୋକମୁଖରୁ ଏକ ପ୍ରବଚନ ଶୁଣିବାକୁ ମିଳେ – "ବାରଜାତି ତେରଗୋଲା, ବୈଷ୍ଣବ ହେଲେ ସବୁ ଗଲା ।" କାରଣ ଶ୍ରୀଚୈତନ୍ୟ କହିଯାଇଛନ୍ତି – "ଚଣ୍ଡାଲ୍ ନହେ ଯଦି କୃଷ୍ଣ ବଲେ, ବିପ୍ର ନହେ ବିପ୍ର ଯଦି ଅସତ୍ ପଥେ ଚଲେ" । କିନ୍ତୁ ରାମାନନ୍ଦ ଓ ଚୈତନ୍ୟଙ୍କ ଆବିର୍ଭାବର ବହୁ ପୂର୍ବରୁ ବୈଷ୍ଣବ ସଂପ୍ରଦାୟରେ ମଧ୍ୟ ନାନା ପ୍ରକାର ଶାଖା ସୃଷ୍ଟି ହୋଇଥିଲା । ମୂଳ ସିଦ୍ଧାନ୍ତ ବିଚାରରେ ବୈଷ୍ଣବ ଆଦର୍ଶ ଚାରି ଗୋଟି ସଂପ୍ରଦାୟରେ ବିଭକ୍ତ । ଯଥା - ଶ୍ରୀ ସଂପ୍ରଦାୟ, ବ୍ରହ୍ମା ସଂପ୍ରଦାୟ, ରୁଦ୍ର ସଂପ୍ରଦାୟ ଓ ସନକ ସଂପ୍ରଦାୟ । ଶ୍ରୀ ସଂପ୍ରଦାୟର ଆଚାର୍ଯ୍ୟ ରାମାନୁଜ । ବ୍ରହ୍ମା ସଂପ୍ରଦାୟର ଆଚାର୍ଯ୍ୟ ମାଧ୍ୱାଚାର୍ଯ୍ୟ । ରୁଦ୍ର ସଂପ୍ରଦାୟର ଆଚାର୍ଯ୍ୟ ବିଷ୍ଣୁସ୍ୱାମୀ । ସନକ ସଂପ୍ରଦାୟର ଆଚାର୍ଯ୍ୟ ନିମ୍ବାର୍କାଚାର୍ଯ୍ୟ । ଅତିବଡି ସଂପ୍ରଦାୟ କହିଲେ ଓଡ଼ିଆ ବୈଷ୍ଣବଙ୍କୁ ବୁଝାଏ । ଏମାନେ ଲୌକିକ ଭାବରେ ଏକ ସଂପ୍ରଦାୟ ଭାବରେ ଗଣ୍ୟ । ଏମାନଙ୍କର

ଆଚାର୍ଯ୍ୟ ଅତିବଡି ଜଗନ୍ନାଥ ଦାସ । ଚୈତନ୍ୟ ବ୍ରହ୍ମା ସଂପ୍ରଦାୟର ଅନ୍ତର୍ଭୁକ୍ତ ଓ ରାମାନନ୍ଦ ଶ୍ରୀ ସଂପ୍ରଦାୟର ଅନ୍ତର୍ଭୁକ୍ତ ।

ବୈଷ୍ଣବ ଅନୁରୂପ, ମହାତ୍ମା କବିର ମଧ୍ୟ ଜାତିବର୍ଣ୍ଣରହିତ ଏକ ଧର୍ମଧାରା ପ୍ରଚଳନ କରିଥିଲେ । ସେ ରାମାନନ୍ଦାଚାର୍ଯ୍ୟଙ୍କ ଦ୍ୱାଦଶ ପ୍ରମୁଖ ଶିଷ୍ୟମାନଙ୍କ ମଧ୍ୟରେ ଅନ୍ୟତମ । ରାମାନନ୍ଦ, ଚୈତନ୍ୟ ଓ କବିର ସମସ୍ତେ ହିନ୍ଦୁ, ବୌଦ୍ଧ ଓ ମୁସଲମାନ ସମସ୍ତଙ୍କୁ ନିଜର ଶିଷ୍ୟ ରୂପେ ଗ୍ରହଣ କରୁଥିଲେ । ସେମାନଙ୍କୁ ନିଜର ସାଂପ୍ରଦାୟିକ ଅନୁଷ୍ଠାନରେ ଉପଯୁକ୍ତ ସ୍ଥାନ ଦେଉଥିଲେ । ଚୈତନ୍ୟ ଅନେକ ମୁସଲମାନଙ୍କୁ ବୈଷ୍ଣବ ଧର୍ମରେ ଗ୍ରହଣ କରିଥିବା ଜଣାଯାଏ । (ସିଂହ ଜଗବନ୍ଧୁ ପ୍ରା.ଉ. - ପୃ. ୨୪୦)

ଶ୍ରୀଚୈତନ୍ୟ ୧୪୮୭ ଖ୍ରୀଷ୍ଟାବ୍ଦରେ ଫେବୃଆରୀ ୧୮ ତାରିଖ ଫାଲ୍‌ଗୁନ୍ ପୂର୍ଣ୍ଣମା ତିଥିରେ ଏ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ । (ପଣ୍ଡା ଦଣ୍ଡପାଣି - ଓଡ଼ିଶାର କୃତୀ ସନ୍ତାନମାନଙ୍କର ଜାତକ ଓ ଜୀବନୀ - ପୃ.୧) ସେ ତାଙ୍କ ମାନବ ଲୀଳା ସାଙ୍ଗ କରିବା ପୂର୍ବରୁ ଶେଷ ଅଠର ବର୍ଷ ଶ୍ରୀକ୍ଷେତ୍ର ପୁରୀରେ ଅତିବାହିତ କରିଥିବା ନେଇ ଇତିହାସକାର, ସାହିତ୍ୟିକ ଓ ଧାର୍ମିକ ପ୍ରବକ୍ତା ସମସ୍ତେ ଏକମତ । ତାହାଙ୍କ ଜୀବଦଶାରେ ସେ ଦାକ୍ଷିଣାତ୍ୟ ଭ୍ରମଣରେ ଯାଇଥିଲେ । ଚୈତନ୍ୟଙ୍କ ଦାକ୍ଷିଣାତ୍ୟ ଭ୍ରମଣ ବେଳେ ପାରଳାଖେମୁଣ୍ଡି ରାଜ୍ୟ ମଧ୍ୟରେ ଶ୍ରୀ-କୂର୍ମମ୍ ଅନ୍ତର୍ଭୁକ୍ତ ଥିଲା । ଏହାର ସୀମା ସମୁଦ୍ର ପର୍ଯ୍ୟନ୍ତ ଲମ୍ବିଥିଲା । ପାରଳାଖେମୁଣ୍ଡିକୁ ଶ୍ରୀଚୈତନ୍ୟ ଆସିଥିବାର ଯେଉଁ ଜନଶ୍ରୁତି ଅଛି ତାହା ଅମୂଳକ ନୁହେଁ । କାରଣ ଶ୍ରୀଚୈତନ୍ୟ ଉତ୍ତରରୁ ଆସି ଦାକ୍ଷିଣାତ୍ୟକୁ ଯାତ୍ରା କରିଥିଲେ । ସେତେବେଳେ ଯେଉଁ ଉପକୂଳ ପଥ ଥିଲା, ଉତ୍ତରରୁ ଦକ୍ଷିଣକୁ ତାହା ଆଂଶିକ ତତ୍‌କାଳୀନ ପାରଳାଖେମୁଣ୍ଡି ରାଜ୍ୟକୁ ସ୍ପର୍ଶ କରୁଥିଲା । ଶ୍ରୀଚୈତନ୍ୟ ସେହି ବାଟ ଦେଇ ଯାଇଥିବାରୁ ପାରଳା ରାଜ୍ୟ ଚୈତନ୍ୟଙ୍କ ପାଦସ୍ପର୍ଶ ପାଇଛି । ଶ୍ରୀଚୈତନ୍ୟଙ୍କ ପାଦସ୍ପର୍ଶ ଦ୍ୱାରା ତାହା ଧନ୍ୟ ହୋଇଛି, ପବିତ୍ର ହୋଇଛି । ତତ୍‌ପୂର୍ବରୁ ରାମାନୁଜାଚାର୍ଯ୍ୟ କିଛିଦିନ ଶ୍ରୀ-କୂର୍ମ କ୍ଷେତ୍ରରେ ଅବସ୍ଥାନ କରିଥିଲେ । ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ ରାମାନୁଜଙ୍କ ଆଦର୍ଶରେ ଅନୁପ୍ରାଣୀତ ହୋଇ ଶୈବରୁ ବୈଷ୍ଣବ ହୋଇଥିବା ବିଶିଷ୍ଟ ଆଲୋଚକମାନଙ୍କ ମତ । ତେଣୁ ପୁରୁଷୋତ୍ତମ ପୁରୀରେ ପ୍ରବେଶ କଲାବେଳକୁ ଚୋଡ଼ଗଙ୍ଗ ବୈଷ୍ଣବ ହୋଇସାରିଥିବା ସ୍ପଷ୍ଟ ଅନୁମିତ ହୁଏ । ରାମାନୁଜାଚାର୍ଯ୍ୟ ଓ ଚୈତନ୍ୟ ମହାପ୍ରଭୁଙ୍କ ପରି ଦୁଇ ମହାପୁରୁଷଙ୍କ ପାଦସ୍ପର୍ଶ ପାଇ ପାରଳାଖେମୁଣ୍ଡିର ଲୋକେ ପରମ ସୌଭାଗ୍ୟବାନ ହେବା ସ୍ୱାଭାବିକ । ଚୈତନ୍ୟଙ୍କ ଆବିର୍ଭାବ ବେଳକୁ ହିନ୍ଦୁ ପଣ୍ଡିତମାନଙ୍କ ଜାତି ବିଦ୍ୱେଷ ଭାବର ପ୍ରଭାବରେ କେବଳ ଓଡ଼ିଶା କାହିଁକି ସମଗ୍ର ଭାରତ ବର୍ଷରେ ଧର୍ମର ଅବକ୍ଷୟ ଚରମସୀମାକୁ ସ୍ପର୍ଶ କରିଥିଲା ।

ଚୈତନ୍ୟ ଦୀର୍ଘ ୧୮ ବର୍ଷ ଓଡ଼ିଶା - ପୁରୀରେ ଅବସ୍ଥାନ କରିଥିଲେ । ତାଙ୍କର ଉଦାରତା ଓ ଚନ୍ଦନ-ଶୀତଳ ବାଣୀ ଚଣ୍ଡାଳଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ସମସ୍ତଙ୍କୁ ଆକୃଷ୍ଟ କରିଥିଲା । ସେହି ସମୟରେ ଓଡ଼ିଆ ଭାଷା ପ୍ରତି ସଂସ୍କୃତ ପଣ୍ଡିତମାନଙ୍କର ବିଦ୍ୱେଷ ବିଶେଷ ଭାବେ ଅନୁଭୂତ ହେଉଥିଲା ଯେଉଁଥିପାଇଁ ଶ୍ରୀଜଗନ୍ନାଥ ଦାସ କହିଲେ – "ପାମର ମୁହିଁ ତୁଚ୍ଛ ଭାଷା, କୃଷ୍ଣରେ କେବଳ ଭରସା" । ବୈଷ୍ଣବ - ଓଡ଼ିଆ ଚେତନାରେ ଏହି ଉଦାରଭାବ ଲୋକ ସାଧାରଣଙ୍କୁ ସହଜରେ ଆପଣାଇ ନେଇଥିଲା । ତା'ଛଡା ପୁରୀରେ ସମସ୍ତ ବୈଷ୍ଣବ ସଂପ୍ରଦାୟର ପୀଠ ରହିବା କାରଣରୁ ତା'ର ପ୍ରଭାବ ସମଗ୍ର ପ୍ରାକୃତିକ ଓଡ଼ିଶାକୁ ସଂପ୍ରସାରିତ ହୋଇଥିଲା । ଚେତନଶୀଳ ଲୌକିକ ବ୍ରାହ୍ମଣଙ୍କଠାରୁ ଶୂଦ୍ର ପର୍ଯ୍ୟନ୍ତ ସମସ୍ତେ ସେତେବେଳେ ଧର୍ମରେ ସଂସ୍କାର ଚାହୁଁଥିଲେ କାରଣ ପୂର୍ବରୁ ମହାତ୍ମା ବୁଦ୍ଧ ବୌଦ୍ଧ ଧର୍ମ ପ୍ରଚାର ଦ୍ୱାରା ଜାତିଭିତ୍ତିକ ସାମାଜିକ ଗଠନକୁ ଭୂଲୁଣ୍ଠିତ କରିବାରେ ଅନେକ ବାଟ ଅଗ୍ରସର ହୋଇଥିଲେ ସୁଦ୍ଧା ତାହା ସଫଳ ହୋଇପାରିନଥିଲା । କବିରଙ୍କ ଜାତିଗତ ଉଦାରତା ସତ୍ତ୍ୱେ ତାଙ୍କ ମତର ସଂପ୍ରସାରଣ ଉତ୍କଳ ଭୂମିରେ ସେତେ ପ୍ରଭାବଶାଳୀ ନଥିଲା । ତେଣୁ ପାଖରେ ଚୈତନ୍ୟଙ୍କ ପରି ମହାପ୍ରଭୁଙ୍କୁ ପାଇ ତତ୍‌କାଳୀନ ଓଡ଼ିଶାରେ ସାଧାରଣ ଲୋକେ ତାଙ୍କଠାରେ ଭଗବାନଙ୍କ ସ୍ୱରୂପର ଆରୋପଣ କରିବା ସହ ତାଙ୍କ ପ୍ରଚାରିତ କୃଷ୍ଣପ୍ରେମକୁ ସର୍ବାନ୍ତଃକରଣରେ ଗ୍ରହଣ କରିନେଲେ । ଏହା ସହିତ ରାମାନୁଜପନ୍ଥୀ ବୈଷ୍ଣବମାନଙ୍କ ଭାବଧାରା ମଧ୍ୟ ଉତ୍କଳର ସ୍ଥାନେ ସ୍ଥାନେ ଅନୁଭୂତ ହେବାକୁ ଲାଗିଲା ।

ପାରଳାଖେମୁଣ୍ଡି ପୁରୀ–ଶ୍ରୀକ୍ଷେତ୍ରର ଏକ କ୍ଷୁଦ୍ରରୂପ । ପୁରୀରେ ଗଙ୍ଗବଂଶ ରାଜତ୍ୱର ଅବସାନ ହେବାପରେ ସୂର୍ଯ୍ୟବଂଶୀମାନେ ଉତ୍କଳର ଗଜପତି ହେଲେ । (ଏ 'ଗଜପତି' ଉପାଧିର ପୃଷ୍ଠଭୂମି ଓ ଏହାର ପ୍ରଥମ ଅଧିକାରୀ କିଏ ? ଏ ବିଷୟରେ ସ୍ୱତନ୍ତ୍ର ଆଲୋଚନା ଆବଶ୍ୟକ । ଏ ପୁସ୍ତକରେ ସେଥିର ବିଶଦ ଆଲୋଚନା କରିବା ସମ୍ଭବ ନୁହେଁ । ତଥାପି ଗଜପତି ଉପାଧି ସମ୍ପର୍କରେ ଏଥିରେ କିଂଚିତ୍ ଆଲୋଚନା ପର୍ଯ୍ୟାୟକ୍ରମେ କରାଯାଇଛି ।) ପ୍ରତାପରୁଦ୍ର ଦେବଙ୍କ ସମୟରେ ଚୈତନ୍ୟଙ୍କ ପୁରୀ ଆଗମନ ହୋଇଥିଲା । ସେ ଚୈତନ୍ୟଙ୍କ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ଏହା ଷୋଡଶ ଖ୍ରୀଷ୍ଟାବ୍ଦର କଥା । ଅଷ୍ଟାଦଶ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିର ଗଙ୍ଗବଂଶୀୟ ରାଜା ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ (ସିଓଲଙ୍କ ମତାନୁସାରେ ୧୭୪୮-୬୬) ଯାଏଁ ରାଜତ୍ୱ କରୁଥିଲେ । ସେ ଥିଲେ ଜଣେ ପ୍ରବୀଣ ସଂସ୍କୃତ ପଣ୍ଡିତ । ରାଜପଣ ପ୍ରତି ତାଙ୍କର ନିଘା ନଥିଲା । ସେ ଥିଲେ ମାନବିକତାର ଏକ ମୂର୍ତ୍ତିମନ୍ତ ପ୍ରତୀକ । ରାମାନୁଜଙ୍କ ତ୍ରୟୋଦଶ ଅଧସ୍ତନ ରାମାନନ୍ଦଙ୍କ ଅନୁଗାମୀ

ଭାବରେ ସେ ବୈଷ୍ଣବ ଧର୍ମ ଗ୍ରହଣ କରି ଶ୍ରୀରାମସ୍ୱାମୀଙ୍କୁ ତାଙ୍କର ଇଷ୍ଟଭାବେ ଗ୍ରହଣ କରି ନିଜ ନଅର ପରିସରରେ ତାଙ୍କ ମନ୍ଦିର ନିର୍ମାଣ କରି ନିଜକୁ ସଂପୂର୍ଣ୍ଣ ଭାବେ ତାଙ୍କଠାରେ ସମର୍ପଣ କରିଦେଇଥିଲେ । ଏପରିକି ପାରଳା ରାଜ୍ୟର ସମସ୍ତ ସମ୍ପତ୍ତି ଶ୍ରୀରାମସ୍ୱାମୀଙ୍କୁ ସମର୍ପି ଦେଇ ତାଙ୍କ ନାମରେ ହିଁ ସେ ରାଜପଣ କରୁଥିଲେ ଯେପରି ପୁରୀର ଗଜପତି ନିଜର ସକଳ ସମ୍ପତ୍ତିର ମାଲିକ ଜଗନ୍ନାଥଙ୍କୁ କରିଦେଇ ନିଜେ ତାଙ୍କ ନାମରେ ରାଜପଣ କରୁଥିଲେ । ପୂର୍ବରୁ ଶ୍ରୀରାମାନୁଜାଚାର୍ଯ୍ୟଙ୍କ ଶ୍ରୀ-କୂର୍ମରେ ଅବସ୍ଥାନ ଓ ପରେ ଶ୍ରୀଚୈତନ୍ୟଙ୍କ ଦାକ୍ଷିଣାତ୍ୟ ପରିବ୍ରାଜନ ଯୋଗୁ ପାରଳାଖେମୁଣ୍ଡି ଅଞ୍ଚଳରେ ବୈଷ୍ଣବ ପ୍ରଭାବର ଯେଉଁ ବିଶିଷ୍ଟା ଦ୍ୱୈତ ଓ ଦ୍ୱୈତ ଦର୍ଶନର ଅଯମାରମ୍ଭ ହୋଇଥିଲା, ତାହା ଏକ ନିର୍ଦ୍ଦିଷ୍ଟ ରୂପ ନେବାକୁ ଲାଗିଲା – ପ୍ରତାପରୁଦ୍ର ନାରାୟଣଙ୍କ ସମୟରେ ।

ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ ଶ୍ରୀ ସଂପ୍ରଦାୟ ଅଧୀନ ରାମାନନ୍ଦପନ୍ଥୀ ବୈଷ୍ଣବ । ନିଜ ଗୁରୁ ପୀଠ ସଦାରାମ ମଠ ନିର୍ମାଣ କରିବା ସହ ସେ 'ମହେନ୍ଦ୍ର ତନୟା'ର ଅପରପାର୍ଶ୍ୱରେ ଆନ୍ଧ୍ର ଅନ୍ତର୍ଗତ ଋଙ୍ଗୁଡି ଶାସନରେ ବାଲାଜୀ ମନ୍ଦିର ନିର୍ମାଣ କରିଥିଲେ । ବର୍ତ୍ତମାନ ପାରଳାଖେମୁଣ୍ଡିସ୍ଥ ସଦାରାମ ମଠରେ ଯେଉଁ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିରଟି ଅଛି ତାହାର ନିର୍ମାଣ ବହୁ ବିଳମ୍ବରେ ହୋଇ ସେଥିର ପ୍ରତିଷ୍ଠା-ହୋମାଦି କାର୍ଯ୍ୟ ତା.୪.୩.୧୯୨୮ରିଖରେ ଅନୁଷ୍ଠିତ ହୋଇଥିବା ଆପନ୍ନା ପରିଚ୍ଛାଙ୍କ ଦିନଲିପିରେ ଲେଖାଅଛି । ସମ୍ଭବତଃ ପାରଳା ରାଜ୍ୟରେ ଉପର୍ଯ୍ୟୁକ୍ତ ଦୁଇଟି ମଠ ପ୍ରଥମ ବୈଷ୍ଣବୀୟ ପୀଠ । କାରଣ ପରମ୍ପରା ଅନୁସାରେ ଖେମୁଣ୍ଡିର ଗଙ୍ଗବଂଶୀ ରାଜାମାନେ ସେମାନଙ୍କ ଇଷ୍ଟଦେବତା ଭାବେ ମାଣିକେଶ୍ୱରୀଙ୍କୁ ପୂଜା କରୁଥିଲେ । ଏପରି କି ପାରଳାଖେମୁଣ୍ଡିରେ ଜଗନ୍ନାଥ ନାରାୟଣ ଦେବ (୨ୟ)ଙ୍କ ଶାସନ ଆରମ୍ଭ ହେବା ପୂର୍ବରୁ ସେଠାରେ ଜଗନ୍ନାଥ ମନ୍ଦିର ମଧ୍ୟ ନଥିଲା । ପାରଳା ରାଜାଙ୍କ ପୂର୍ବପୁରୁଷ ଶୈବ ଉପାସକ; କିନ୍ତୁ ଶିବଙ୍କୁ କେନ୍ଦ୍ର କରି ପାରଳାଖେମୁଣ୍ଡି ରାଜ୍ୟରେ କୁତ୍ରାପି ମଠ ପ୍ରତିଷ୍ଠିତ ହୋଇଥିବାର ପ୍ରମାଣ ନାହିଁ । ତେବେ, ଅନେକ ଶୈବ ମନ୍ଦିର ସେମାନଙ୍କ ସମୟରେ ନିର୍ମିତ ହୋଇଥିଲା । ଯେହେତୁ ତତ୍କାଳୀନ ସାମାଜିକ ଓ ରାଜନୀତିକ ବ୍ୟବସ୍ଥାରେ ରାଜାନୁଗତ ଧର୍ମ ଥିଲା, ତେଣୁ ରାଜା ବୈଷ୍ଣବ ନହେବା ଯାଏ ତାଙ୍କ ରାଜ୍ୟରେ ବୈଷ୍ଣବ ମଠ ପ୍ରତିଷ୍ଠା ହେବା ସମ୍ଭବ ନଥିଲା । ସଦାରାମ ମଠ ପାରଳାଖେମୁଣ୍ଡିର ପ୍ରଥମ ମଠ । ଏହାର ସମକାଳୀନ ଅନ୍ୟ ମଠଗୁଡ଼ିକ ହେଲା ଋଙ୍ଗୁଡ଼ିର ବାଲାଜୀ ମଠ ଓ ପାରଳାଖେମୁଣ୍ଡିର ଦେବୀ ମଠ ।

ପ୍ରତାପରୁଦ୍ରଙ୍କ ପରେ ତାହାଙ୍କ ଭ୍ରାତୁଷ୍ପୁତ୍ର ଜଗନ୍ନାଥ ନାରାୟଣ ଦେବ ପୋଷ୍ୟପୁତ୍ର ଭାବେ ପାରଳାଖେମୁଣ୍ଡି ରାଜସିଂହାସନ ଆରୋହଣ କଲେ ୧୭୫୧ ଖ୍ରୀଷ୍ଟାବ୍ଦରେ (ଅବଶ୍ୟ

ଏହାଙ୍କ ଗାଦି ଆରୋହଣ କାଳ ସମ୍ପର୍କରେ କେତେକଙ୍କର ଭିନ୍ନମତ ରହିଅଛି) । ସେ ମଧ୍ୟ ବୈଷ୍ଣବ ଧର୍ମର ଅନୁଗାମୀ ଥିଲେ । କିନ୍ତୁ ତାଙ୍କ ପୋଷକ ପିତାଙ୍କ ପରି ସେ ରାମାନୁଜ-ରାମାନନ୍ଦ ପନ୍ଥା ପରିବର୍ତ୍ତେ ବ୍ରହ୍ମା ସଂପ୍ରଦାୟ ଅନ୍ତର୍ଭୁକ୍ତ ଚୈତନ୍ୟ ମତରେ ନିଜକୁ ଦୀକ୍ଷିତ କରିବା ଦ୍ୱାରା ପାରଳାଖେମୁଣ୍ଡିରେ ଗୌଡୀୟ ବୈଷ୍ଣବ ଧର୍ମର ପ୍ରଚଳନ ହେବାସହ ଦ୍ରୁତ ଗତିରେ ତାହା ପ୍ରସାରଲାଭ କଲା । ଜଗନ୍ନାଥ ନାରାୟଣ ଦେବଙ୍କର ଜଗନ୍ନାଥ ସଂସ୍କୃତି ପ୍ରତି ମଧ୍ୟ ବିଶେଷ ଆକର୍ଷଣ ରହିଥିଲା । କାରଣ ସେ ତାହାଙ୍କ ପୂର୍ବପୁରୁଷର କୀର୍ତ୍ତି ପୁରୀର ଶ୍ରୀଜଗନ୍ନାଥ ମନ୍ଦିର କଥା ସ୍ମରଣ କରି ମରହଟ୍ଟାମାନଙ୍କ ନିୟନ୍ତ୍ରଣରୁ ସେହି ମନ୍ଦିରକୁ ମୁକ୍ତ କରିବା ଲକ୍ଷରେ ତତ୍‌କାଳୀନ ଗଜପତି ବୀରକିଶୋର ଦେବଙ୍କ ସହ ମନ୍ତ୍ରଣା କରିଥିଲେ । ସେଥିରେ ବିଫଳ ହୋଇ ସେ ଖୋର୍ଦ୍ଧା ଆକ୍ରମଣ କଲେ । ସେଥିରେ ଜୟଯୁକ୍ତ ହୋଇ ଜଗନ୍ନାଥ ମନ୍ଦିରକୁ କିଛି ଦିନ ପାଇଁ ନିଜ ନିୟନ୍ତ୍ରଣକୁ ଘେନି ଆସିଥିଲେ । ତେବେ, ବୀରକିଶୋର ଦେବ ମରହଟ୍ଟାମାନଙ୍କ ସାହାଯ୍ୟରେ ଜଗନ୍ନାଥ ଦେବଙ୍କୁ ହଟାଇବାକୁ ଯୁଦ୍ଧ କଲେ । ଜଗନ୍ନାଥ ନାରାୟଣ ଦେବ ଏହି ଅବସ୍ଥାରେ ଥିବାବେଳେ ଏଣେ ପାରଳାଖେମୁଣ୍ଡି ଆକ୍ରମଣ କରିବାକୁ ବିଜୟନଗର ରାଜାଙ୍କ ପକ୍ଷରୁ ଯୁଦ୍ଧ ପ୍ରସ୍ତୁତି ଚାଲିଥିବା ଶୁଣି ସେ ପୁରୀ ପରିତ୍ୟାଗ କରି ପାରଳାଖେମୁଣ୍ଡିକୁ ପ୍ରତ୍ୟାବର୍ତ୍ତନ କଲେ । ସେଥିର ସଦ୍ୟତମ ପ୍ରତିକ୍ରିୟା ସ୍ୱରୂପ ସେ ପାରଳାଖେମୁଣ୍ଡିରେ ମଠ ଡ଼ାଞ୍ଚାରେ ଏକ ମନ୍ଦିର ନିର୍ମାଣ କରି ସେଥିରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କୁ ପ୍ରତିଷ୍ଠା କରିଥିଲେ । ତେଣୁ ଜଗନ୍ନାଥ ନାରାୟଣ ଦେବ (୨ୟ)ଙ୍କ ଶାସନ ବେଳେ ପାରଳାଖେମୁଣ୍ଡିରେ ଜଗନ୍ନାଥ ସଂସ୍କୃତିର ଆଦ୍ୟ ପ୍ରଚଳନ ହୋଇଥିଲା ବୋଲି ନିରାପଦରେ କୁହାଯାଇପାରେ । ତେବେ ପାରଳାଖେମୁଣ୍ଡିରେ ଜଗନ୍ନାଥ ମନ୍ଦିର ଭାବେ ବର୍ତ୍ତମାନ ଅଭିହିତ ହେଉଥିବା ନିର୍ମାଣପୁଞ୍ଜକୁ ଆମେ ମନ୍ଦିର ନକହି ଏହା ଏକ ମଠ ବୋଲି କହିବାକୁ ସମୀଚୀନ ମନେକରୁ । ଏହାର କାରଣ ହେଲା –

(୧) ବର୍ତ୍ତମାନ ଯାହାକୁ ଜଗନ୍ନାଥ ମନ୍ଦିର କୁହାଯାଉଛି ତା'ର ନିର୍ମାଣରେ କୌଣସି ମନ୍ଦିରଶୈଳୀ ଅନୁସୃତ ହୋଇନାହିଁ ।

(୨) ଏହାର ଗଠନ ଶୈଳୀ ବସ୍ତୁତଃ ଏକ ବୈଷ୍ଣବୀୟ ମଠର ଆକୃତି ସହ ସମାନ ।

(୩) ଓଡ଼ିଶାର ଜଣେ ଲବ୍ଧ-ପ୍ରତିଷ୍ଠ କବି କବିବର ଚିନ୍ତାମଣି ମହାନ୍ତି କବିଶେଖର ତାଙ୍କର ପାରଳାଖେମୁଣ୍ଡି ଭ୍ରମଣ ବୃତ୍ତାନ୍ତ 'ପୁଣ୍ୟପୀଠ', ଯାହାର ପ୍ରକାଶନ ଫେବୃଆରୀ ୧୯୨୦ରେ ହୋଇଥିଲା, ସେଥିରେ ଉକ୍ତ ଦେବସ୍ଥାନକୁ ଏକ ମଠ ବୋଲି ଉଲ୍ଲେଖ କରି ଯାଇଛନ୍ତି ।

(୪) ପାରଳା ରାଜପରିବାର, ଯେକି ଏହାର ପ୍ରତିଷ୍ଠାତା, ବୈଷ୍ଣବ ଦୀକ୍ଷା ଗ୍ରହଣ କରିଥିବାରୁ ସେମାନଙ୍କର ଏହା ପାରିବାରିକ ଗୃହସ୍ଥ-ବୈଷ୍ଣବ ମଠ – ତେଣୁ ମହନ୍ତ ବା ବିରକ୍ତ ବୈଷ୍ଣବ ଏଥିରେ ନାହାନ୍ତି । କେବଳ ପ୍ରଭେଦ ଏତିକି ଯେ ଏଠାରେ ସୀତା, ରାମ, ଲକ୍ଷ୍ମଣ, ରାଧା, କୃଷ୍ଣ, ଲଳିତା କେହି ବିରାଜମାନ କରିବା ପରିବର୍ତ୍ତେ ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧାମୂର୍ତ୍ତି ବିରାଜମାନ କରୁଛନ୍ତି ।

ଏ ସମସ୍ତ କାରଣ ସତ୍ତ୍ୱେ ଉପରୋକ୍ତ ଦେବସ୍ଥାନଟି ଲୋକରେ ଜଗନ୍ନାଥ ମନ୍ଦିର ଭାବରେ ଗୃହୀତ ହୋଇଆସୁଅଛି ।

ଜଗନ୍ନାଥ ନାରାୟଣ ଦେବ (୨ୟ) ତୀର୍ଥାଟନରେ ବୃନ୍ଦାବନ ଯାଇଥିଲେ । ସେଠାରେ ମାଧ୍ୱଗୌରେଶ୍ୱର ମତରେ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ପୁରୀର ବଡ ରାଧାକାନ୍ତ ମଠର ମହନ୍ତ ରାମକୃଷ୍ଣ ଦାସ ଗୋସ୍ୱାମୀ ତାଙ୍କର ଦୀକ୍ଷା ଗୁରୁ ।

ବୃନ୍ଦାବନରୁ ଫେରିବା ପରେ ରାମସ୍ୱାମୀ ମନ୍ଦିରରେ ସେ ରଚନା କଲେ ଭକ୍ତି କାବ୍ୟ "ବୃନ୍ଦାବନ ଚନ୍ଦ୍ର ବିହାର" ଯାହାକି ୧୭୬୭ ଅକ୍ଟୋବର ୨୭ ତାରିଖରେ ସମ୍ପୂର୍ଣ୍ଣ ହୋଇଥିଲା ।

ଜଗନ୍ନାଥ ନାରାୟଣ ଦେବ (୨ୟ)ଙ୍କ ପୁତ୍ର ଗଜପତି ନାରାୟଣ ଦେବ ୧୭୯୧ ଖ୍ରୀଷ୍ଟାବ୍ଦରେ ପୁରୁଣା ପାଟଣା ସନ୍ନିକଟ ମହେନ୍ଦ୍ରତନୟା ନଦୀ କୂଳରେ ବହୁ ପୂର୍ବରୁ ପ୍ରତିଷ୍ଠିତ ଶୈବପୀଠ ନୀଳକଣ୍ଠେଶ୍ୱରଙ୍କ ମୁଖଶାଳା ନିର୍ମାଣ କରିଥିବା ଗଙ୍ଗ ଇତିହାସରୁ ସୂଚନା ମିଳେ । ପାରଳାଖେମୁଣ୍ଡିର ଗଙ୍ଗବଂଶୀ ଶାସକମାନେ ବୈଷ୍ଣବ ଧର୍ମ ଗ୍ରହଣ କରିବା ସତ୍ତ୍ୱେ ଶୈବ ସଂସ୍କୃତିର ମଧ୍ୟ ପୃଷ୍ଠପୋଷକତା କରୁଥିବାର ଏହା ଏକ ଉଦାହରଣ । ପାରଳାଖେମୁଣ୍ଡି ରାଜପରିବାର ନିଜ ରାଜ୍ୟରେ ବୈଷ୍ଣବ ସଂସ୍କୃତି ସହ ଶୈବ ସଂସ୍କୃତିର ସମନ୍ୱୟ ରକ୍ଷା କରି ଆସିଛନ୍ତି । ତେଣୁ ପାରଳାଖେମୁଣ୍ଡି ସହର ଓ ସହର ବାହାରେ ବହୁ ସଂଖ୍ୟାରେ ଶୈବପୀଠ ଦେଖିବାକୁ ମିଳେ ।

ରାଜ ପ୍ରୋତ୍ସାହନ ହେତୁ ପାରଳାଖେମୁଣ୍ଡି ରାଜ୍ୟର ରାଜଧାନୀ ଓ ରାଜଧାନୀ ବାହାରେ ଅନେକ ମଠ ଓ ମନ୍ଦିର ପ୍ରତିଷ୍ଠିତ ହୋଇଛି । ଏହି ମଠ, ମନ୍ଦିର ଗୁଡ଼ିକରେ ଅଧିଷ୍ଠିତ ଦେବତା ହେଉଛନ୍ତି ରାମସ୍ୱାମୀ, ଗୋପୀନାଥ, ରାଧାକାନ୍ତ, ରାଧାକୃଷ୍ଣ, ଶ୍ରୀଚୈତନ୍ୟ ମହାପ୍ରଭୁ ଓ ଅନ୍ୟାନ୍ୟ ବୈଷ୍ଣବୀୟ ଦେବଦେବୀ । ପାରଳାଖେମୁଣ୍ଡିରେ ମଠ ମନ୍ଦିର ପ୍ରତିଷ୍ଠା କ୍ରମରୁ ଜାଣିହୁଏ ଯେ ଏଠାରେ ପ୍ରଥମେ ଶ୍ରୀ ସଂପ୍ରଦାୟ ଅଧୀନ ରାମାନୁଜାଚାର୍ଯ୍ୟଙ୍କ

ବିଶିଷ୍ଟା ଦ୍ୱୈତ ସିଦ୍ଧାନ୍ତକୁ ସମର୍ଥନ କରିଥିବା ରାମାନନ୍ଦୀ ପନ୍ଥାର ପ୍ରସାର ଲାଭ ଘଟିଥିଲା । ଏହାପରେ ଆସିଛି ବ୍ରହ୍ମ ସଂପ୍ରଦାୟ ଅଧୀନ ମାଧ୍ୱଗୌରେଶ୍ୱର ସଂପ୍ରଦାୟ ଅର୍ଥାତ୍ ଚୈତନ୍ୟ ଗୌଡ଼ୀୟ ମତବାଦ । ଏ ବିଷୟରେ ଅଧିକ ଆଲୋଚନା "ପାରଳାର ମଠ ସଂସ୍କୃତି" ପର୍ଯ୍ୟାୟରେ କରାଯିବ । ତେବେ ଏଠାରେ ଏତିକି କହିବା ଯଥେଷ୍ଟ ହେବ ଯେ ପାରଳାଖେମୁଣ୍ଡିରେ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ବୈଷ୍ଣବ ଧର୍ମର ବିଶେଷ ପ୍ରଭାବ ଥିଲା । ଏବଂ ରାଜ ପ୍ରୋତ୍ସାହନ ହେତୁ ବୈଷ୍ଣବ ମଠ ମନ୍ଦିର ଗୁଡିକ ବହୁ ଭୂସମ୍ପତ୍ତିର ମାଲିକ ହୋଇପାରିଥିଲେ ।

ରାଜ ପ୍ରତିଷ୍ଠିତ ମଠ ବ୍ୟତୀତ କେତେକ ପ୍ରାଚୀନ ଘରୋଇ ମଠ ମଧ୍ୟ ପାରଳାଖେମୁଣ୍ଡି ସହର ଓ ସହର ବାହାରେ ଦେଖାଯାଏ । ସେଗୁଡିକ ମଧ୍ୟରେ କେତେକ ସ୍ୱତନ୍ତ୍ର ଓଡ଼ିଶା ଗଠିତ ହେବା ପରେ ପ୍ରଥମେ ମାନ୍ଦ୍ରାସ ଅଧିନୀକୁ ଓ ପରେ ଆନ୍ଧ୍ରକୁ ଚାଲିଯାଇଛି ।

# ପାରଳାଖେମୁଣ୍ଡିର ମଠ ସଂସ୍କୃତି

କ୍ଷେତ୍ର ପ୍ରଧାନତା ଦୃଷ୍ଟିରୁ ବିଚାର କଲେ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ଶ୍ରୀକ୍ଷେତ୍ରର ଆଧ୍ୟାତ୍ମିକ ପରମ୍ପରା ଦ୍ୱାରା ପ୍ରାକୃତିକ ଓଡ଼ିଶାର ସମଗ୍ର ଅଞ୍ଚଳ ପ୍ରଭାବିତ । ସୁତରାଂ ପାରଳାଖେମୁଣ୍ଡି ପରି ଦକ୍ଷିଣାଞ୍ଚଳ ଏଥିରୁ ବାଦ ଯାଇଥାନ୍ତା କିପରି ? ପୁରୀ ହେଉଛି ସର୍ବଧର୍ମ ଓ ସଂପ୍ରଦାୟର ସମନ୍ୱିତ ଦେବତା ଜଗତର ନାଥ ଜଗନ୍ନାଥଙ୍କ କ୍ଷେତ୍ର । ତେଣୁ ଭାରତର ସକଳ ଧର୍ମ, ମତ ଓ ପନ୍ଥର ସନ୍ନ୍ୟାସୀ ଓ ଧର୍ମାଚାର୍ଯ୍ୟମାନେ ସେଠାରେ ନିଜ ନିଜର ଆସ୍ଥାନ ଜମାଇବା ସ୍ୱାଭାବିକ । ଏହି ପୃଷ୍ଠଭୂମିରେ ପୁରୀରେ ଗଢ଼ିଉଠିଥିଲା ଅନେକ ମଠ । "ମଠସ୍ତୁ ଛାତ୍ର ନିଳୟଃ" ଅର୍ଥାତ୍ ମଠ ହେଉଛି ଏକ ଛାତ୍ରାବାସ । ଶିଷ୍ୟମାନେ ଯେଉଁଠାରେ ରହି ଧର୍ମଶିକ୍ଷା ଓ ଧର୍ମଶାସ୍ତ୍ର ଆଲୋଚନା କରନ୍ତି ତାକୁ ମଠ କୁହାଯାଏ । ପୁରୀସ୍ଥିତ ମଠମାନଙ୍କ ମଧ୍ୟରେ ଶଙ୍କର ମଠ ସର୍ବାପେକ୍ଷା ପ୍ରାଚୀନ । ଶଙ୍କରାଚାର୍ଯ୍ୟ ଏହାର ସଂସ୍ଥାପକ । ଗୋବର୍ଦ୍ଧନ ମଠ ନାମରେ ଏହା ଜଗତ ବିଖ୍ୟାତ । ମଠ ମୂଳରେ ନିହିତ ନିର୍ଦ୍ଦେଶଟି ହେଲା ସେଥିରେ ଧର୍ମାଚାର୍ଯ୍ୟ ରହିବେ । ସେ ନିଜେ ଓ ଶିଷ୍ୟମାନଙ୍କ ଦ୍ୱାରା ଲୋକଙ୍କୁ ଧର୍ମ-ମାର୍ଗ ଦର୍ଶନ କରାଇବେ । ଏହି ପବିତ୍ର କାର୍ଯ୍ୟ ସଂପାଦନ କରାଇବା ପାଇଁ କ୍ରମେ କ୍ରମେ ରାଜା, ଜମିଦାର ଓ ସମାଜର ଧନାଢ଼୍ୟ ବ୍ୟକ୍ତିମାନେ ଆକର୍ଷିତ ହେଲେ । ଏ ଧାରା ଲାଗି ରହିବାରୁ ଏହା ମଠ ଗୁଡ଼ିକୁ ପର୍ଯ୍ୟାପ୍ତ ଭୂସମ୍ପତ୍ତିର ମାଲିକ ହେବାରେ ସାହାଯ୍ୟ କଲା । ମଠ ଗୁଡ଼ିକ ସଂପ୍ରଦାୟ ଭିତ୍ତିକ ଯଥା - (୧) ଶ୍ରୀ ସଂପ୍ରଦାୟ,

(୨) ବ୍ରହ୍ମା ସଂପ୍ରଦାୟ, (୩) ରୁଦ୍ର ସଂପ୍ରଦାୟ ଓ (୪) ସନକ ସଂପ୍ରଦାୟ । ଏହି ଚାରି ସଂପ୍ରଦାୟର ଆଚାର୍ଯ୍ୟମାନଙ୍କ ସମ୍ପର୍କରେ ସର୍ବଭାରତ ରାଜସଭା, ଜୟପୁରର ଦିଗ୍‌ଗଜ ଅଗ୍ରପୂଜ୍ୟ ଉପାଧିପ୍ରାପ୍ତ ବଳଦେବ ବିଦ୍ୟାଭୂଷଣକୃତ ପ୍ରମେୟ ରତ୍ନାବଳୀରେ ନିମ୍ନଲିଖିତ ଶ୍ଳୋକଟି ସନ୍ନିବେଶିତ ହୋଇଛି —

"ଶ୍ରୀ ବ୍ରହ୍ମ ରୁଦ୍ର ସନକାଃ ଚତ୍ୱାରାକ୍ଷିତିପାବନାଃ
ରାମାନୁଜଂ ଶ୍ରୀ ସ୍ୱଚକ୍ରେ ମାଧ୍ୱାଚାର୍ଯ୍ୟଂ ଚତୁର୍ମୁଖଃ
ଶ୍ରୀ ବିଷ୍ଣୁ ସ୍ୱାମିନ ରୁଦ୍ରଃ ନିମାଦିତ୍ୟଂ ଚତୁସନଃ ।

**ଶ୍ରୀ ସଂପ୍ରଦାୟ** – ଏହାର ଆଚାର୍ଯ୍ୟ ହେଉଛନ୍ତି ରାମାନୁଜ । ରାମାନୁଜ ବିଶିଷ୍ଟା ଦ୍ୱୈତ ମତର ପ୍ରବର୍ତ୍ତକ । ଏହାଙ୍କର ତ୍ରୟୋଦଶ ଅଧସ୍ତନ ରାମାନନ୍ଦ । ରାମାନୁଜ ଓ ରାମାନନ୍ଦ ଉଭୟ ଏକ ସଂପ୍ରଦାୟର ହୋଇଥିଲେ ସୁଦ୍ଧା ଉଭୟଙ୍କ ମଧ୍ୟରେ ମତ ପାର୍ଥକ୍ୟ ପରିଲକ୍ଷିତ ହୁଏ । ରାମାନନ୍ଦଙ୍କ ଅନୁଗାମୀମାନେ ତାଙ୍କୁ ରାମଚନ୍ଦ୍ରଙ୍କ ଅବତାର ମାନନ୍ତି ଓ ତଦୀୟ ମତକୁ ଏକ ଅଲଗା ପନ୍ଥ ଭାବେ ଗ୍ରହଣ କରନ୍ତି । "ରାମାନନ୍ଦଃ ସ୍ୱୟଂ ରାମଃ ପ୍ରାଦୁର୍ଭୂତୋ ମହୀତଳେ ।" ଏମାନେ ଶ୍ରୀବୈଷ୍ଣବ । ଏମାନଙ୍କର ପଞ୍ଚ ସଂସ୍କାର ବିଧି ହେଲା – (୧) ବାହୁ ମୂଳରେ ଶଙ୍ଖ-ଚକ୍ର ଚିହ୍ନ, (୨) ମସ୍ତକ ସମେତ ଦ୍ୱାଦଶାଙ୍ଗରେ ଉର୍ଦ୍ଧ୍ୱ ପୁଣ୍ଡ୍ର ତିଳକ, (୩) ପୈତୃକ ନାମ ତ୍ୟାଗପୂର୍ବକ ଗୁରୁପ୍ରଦତ୍ତ ନାମ ସହ ଦାସ ସଂଜ୍ଞାଧାରଣ, (୪) ରାମତାରକ ମନ୍ତ୍ର ଗ୍ରହଣ ଓ (୫) ଗଳାରେ ତୁଳସୀମାଳା ଧାରଣ । ଏହା ସହ କୌପୀନ ଧାରଣ କରିବା ମଧ୍ୟ ଆବଶ୍ୟକ ।

"ତାପଂ ପୁଣ୍ଡ୍ରଂ ତଥା ନାମ ମାଳା ମନ୍ତ୍ରଶ୍ଚ ପଞ୍ଚମଃ ।
ଅମୀ ପରମସଂସ୍କାରାଃ ପରମୈକାନ୍ତ ହେତବଃ ॥"

ରାମାନନ୍ଦୀମାନଙ୍କ ସଂଖ୍ୟା ଉତ୍ତର ଭାରତରେ ଅଧିକ । ରାମାନନ୍ଦାଚାର୍ଯ୍ୟଙ୍କ ଶିଷ୍ୟମାନଙ୍କ ମଧ୍ୟରେ ବିଭିନ୍ନ ଜାତିର ଶିଷ୍ୟ ଥିଲେ । ସେମାନଙ୍କ ମଧ୍ୟରେ କବୀର, ଅନନ୍ତାନନ୍ଦ ସେନ, ଥନ୍ନା, ପୀପା, ରୈଦାସ, ସୁଖାନନ୍ଦ, ସୁରସୁରାନନ୍ଦ, ନରହରି, ଭାବାନନ୍ଦ, ଗାଲବାନନ୍ଦ ଓ ଯୋଗାନନ୍ଦ ଆଦି ଦ୍ୱାଦଶ ଶିଷ୍ୟ ହିଁ ପ୍ରଧାନ ।

ରାମାନୁଜଙ୍କ ଅନୁଗାମୀଙ୍କ ସଂଖ୍ୟା ଦକ୍ଷିଣ ଭାରତରେ ଅଧିକ । ପାରଳାଖେମୁଣ୍ଡିରେ ବୈଷ୍ଣବ ଧର୍ମଧାରା ରାମାନନ୍ଦ ପନ୍ଥୀ – ଭକ୍ତରାମ ଦାସ, ମନସା ରାମଦାସ ଓ ସଦାରାମ ଦାସ ହିଁ ଖ୍ରୀ. ୧୭୪୮ରୁ ୧୭୫୧ ମଧ୍ୟରେ ପ୍ରଚଳନ କରିଥିଲେ । ସଦାରାମ ମଠ, ଦେବୀ ମଠ, ରଙ୍ଗୁଡ଼ିର ବାଲାଜୀ ମଠ ସେମାନଙ୍କର ପ୍ରଧାନ ପୀଠଗୁଡ଼ିକ ମଧ୍ୟରେ ଉଲ୍ଲେଖନୀୟ ।

**ବ୍ରହ୍ମା ସଂପ୍ରଦାୟ** – ମାଧ୍ୱାଚାର୍ଯ୍ୟ ଏହି ସଂପ୍ରଦାୟର ଆଚାର୍ଯ୍ୟ । ଏହାଙ୍କର ଅନୁଗାମୀମାନଙ୍କୁ ଚୈତନ୍ୟଙ୍କ ଆବିର୍ଭାବଠାରୁ ମାଧ୍ୱଗୌରେଶ୍ୱର ପନ୍ଥୀ କୁହାଯାଉଛି । ଷଡ଼୍‌ଗୋସ୍ୱାମୀ ପରିଷଦ ଦ୍ୱାରା ଏହି ସଂପ୍ରଦାୟର ମାର୍ଗଦର୍ଶନ କରାଯାଏ । ପ୍ରତାପରୁଦ୍ର ଗଜପତି ନାରାୟଣ ଦେବଙ୍କ ଅନ୍ତେ ତାଙ୍କ ପୋଷ୍ୟପୁତ୍ର ଜଗନ୍ନାଥ ନାରାୟଣ ଦେବ ପାରଳା ରାଜସିଂହାସନ ଆରୋହଣ କରିଥିଲେ । ସେ ଥିଲେ ଯୁଦ୍ଧବୀର ତଥା ଧର୍ମବୀର । ପାରସୀ ଅନୁଗତ ବିଜୟନଗର ରାଜାଙ୍କୁ ଗୁଲମୁରଠାରେ ୧୭୫୭ ରେ ଯୁଦ୍ଧ କରି ପରାସ୍ତ କରିବା ପରେ ସେ ବୃନ୍ଦାବନ ଯାତ୍ରା କରିଥିଲେ । ସେଠାରୁ ପ୍ରତ୍ୟାବର୍ତ୍ତନ କାଳରେ ସେ ତାଙ୍କ ପାରିବାରିକ ସାଂପ୍ରଦାୟିକ ମତ ପରିବର୍ତ୍ତନ ପୂର୍ବକ ବ୍ରହ୍ମା ସଂପ୍ରଦାୟ ଅଧୀନ ଗୌଡ଼ୀୟ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ସେ ତାଙ୍କ ଦୀକ୍ଷାଗୁରୁ ପୁରୀ ରାଧାକାନ୍ତ ମଠର ମହନ୍ତ ଗୋସ୍ୱାମୀଙ୍କ ପାଇଁ ପାରଳାଖେମୁଣ୍ଡିଠାରେ ଏକ ମଠ ସ୍ଥାପନ କରି ବହୁ ପରିମାଣର ନିଷ୍କର ଜମି ଖଞ୍ଜି ଦେଇଥିଲେ । ପାରଳାଖେମୁଣ୍ଡିର ଏହି ମଠଟି ବର୍ତ୍ତମାନ ବଡ଼ ରାଧାକାନ୍ତ ମଠ ଭାବରେ ଖ୍ୟାତ । ଏହିଠାରୁ ପାରଳାଖେମୁଣ୍ଡି ରାଜ୍ୟରେ ଶ୍ରୀ ସଂପ୍ରଦାୟ ପରିବର୍ତ୍ତେ ବ୍ରହ୍ମା ସଂପ୍ରଦାୟର ପ୍ରଚଳନ ହେଲା ଓ କ୍ରମେ ବହୁ ସଂଖ୍ୟକ ମାଧ୍ୱ-ଗୌଡ଼ୀୟ ବୈଷ୍ଣବ ମଠ ଗଢ଼ି ଉଠିଲା । ସେହି ପ୍ରାଚୀନ ଗୌଡ଼ୀୟ ମଠଗୁଡ଼ିକ ମଧ୍ୟରେ ପାରଳାର ବଡ଼ ଓ ସାନ ରାଧାକାନ୍ତ ମଠ, କରଣ ସାହି ଓ ରାଜଗୁରୁ ସାହିର ରସିକରାଜ ମଠ ଓ ବାଘଶାଳା ମଠ ଆଦି ପ୍ରଧାନ ।

**ରୁଦ୍ର ସଂପ୍ରଦାୟ** – ଏହି ସଂପ୍ରଦାୟର ଆଚାର୍ଯ୍ୟ ବିଷ୍ଣୁସ୍ୱାମୀ । ପାରଳାଖେମୁଣ୍ଡିରେ ଏହି ସଂପ୍ରଦାୟର ମଠ ଆଦୌ ନାହିଁ ।

**ସନକ ସଂପ୍ରଦାୟ** – ନିମ୍ବାର୍କାଚାର୍ଯ୍ୟ ଏହି ସଂପ୍ରଦାୟର ଆଚାର୍ଯ୍ୟ । ଏ ସଂପ୍ରଦାୟର ମଧ୍ୟ ପାରଳାଖେମୁଣ୍ଡିରେ କୌଣସି ମଠ ନାହିଁ । ଏହାର ଅନୁଗାମୀ ମଧ୍ୟ ଏଠାରେ ଦୃଷ୍ଟିଗୋଚର ହୁଅନ୍ତି ନାହିଁ ।

ବୈଷ୍ଣବୀୟ ସାଂପ୍ରଦାୟିକତାକୁ ନେଇ ଆଲୋଚକମାନଙ୍କ ମଧ୍ୟରେ ଅନେକ ସମୟରେ ସଂଶୟ ଜାତ ହୁଏ । କେହି କେହି ଆଲୋଚକ ଏକ ସଂପ୍ରଦାୟଭୁକ୍ତ ବିଭିନ୍ନ ପରିବାର ବା ଗୋଷ୍ଠୀର ବୈଷ୍ଣବମାନଙ୍କୁ ଏକ ଭିନ୍ନ ସଂପ୍ରଦାୟର ଆଖ୍ୟା ଦେଇଥାନ୍ତି । ଯାହା ପୂର୍ବରୁ ଆଲୋଚିତ ହୋଇଛି, ମୂଳତଃ ବୈଷ୍ଣବ ସଂପ୍ରଦାୟ ଚାରିଗୋଟି । କିନ୍ତୁ କେହି କେହି ବୈଖାନସ, ରାଧାବଲ୍ଲଭ, ଗୋକୁଳେଶ, ବୃନ୍ଦାବନୀ, ପଞ୍ଚରାତ୍ର, ବୀରବୈଷ୍ଣବ ରାମାନନ୍ଦୀ, ହରିବ୍ୟାସୀ, ନିମ୍ବାର୍କ, ଭାଗବତ ଏହିପରି ଦଶଗୋଟି 'ଜମାତ'କୁ ସଂପ୍ରଦାୟ ଭାବେ ମାନନ୍ତି । କିନ୍ତୁ ଏ ସମସ୍ତ ଜମାତ ବା ଗୋଷ୍ଠୀ ଚାରିମୂଳ ସଂପ୍ରଦାୟର ହିଁ ଅନ୍ତର୍ଭୁକ୍ତ । ଉଦାହରଣ ସ୍ୱରୂପ ଅଦ୍ୱୈତ ମତରେ ବିଶ୍ୱାସୀ ଗିରି, ପୁରୀ, ଭାରତୀ, ସରସ୍ୱତୀ, ତୀର୍ଥ, ବନ, ଅରଣ୍ୟ, ସାଗର, ଆଶ୍ରମ ଓ ପର୍ବତ ଆଦି ଦଶନାମୀ ସଂପ୍ରଦାୟ ଅଛନ୍ତି । କିନ୍ତୁ ଏ ସମସ୍ତେ ଶଙ୍କରପନ୍ଥୀ ଓ ଏକମାତ୍ର ସଂପ୍ରଦାୟର ଅଧୀନ ।

# ପାରଳାଖେମୁଣ୍ଡିରେ ଶ୍ରୀକ୍ଷେତ୍ର ମଠ ସଂସ୍କୃତିର ପ୍ରଭାବ

ପୁରୀରେ ଯେଉଁ ବୈଷ୍ଣବ ସଂପ୍ରଦାୟର ମଠଗୁଡ଼ିକ ଅଛି ସେସବୁ ପୂର୍ବୋକ୍ତ ଗରି ସଂପ୍ରଦାୟ ମଧ୍ୟରୁ କୌଣସି ନା କୌଣସି ମୂଳ ସଂପ୍ରଦାୟର ଅନ୍ତର୍ଭୁକ୍ତ । ପ୍ରାଚୀନ କାଳରୁ ପୁରୀରେ ଯେଉଁ ମଠଗୁଡ଼ିକ ରହିଆସିଅଛି ବା ଥିଲା, ସେଗୁଡ଼ିକୁ ତଳଲିଖିତମତେ ବିଭାଗୀକରଣ କରାଯାଏ ।

| | | |
|---|---|---|
| ଆନ୍ଧ୍ର | – | ୧୨ ମଠ |
| ମହାରାଷ୍ଟ୍ର | – | ୮ ମଠ |
| ଦ୍ରାବିଡ | – | ୮ ମଠ |
| କନୌଜ | – | ୫ ମଠ |
| ହେଙ୍ଗୁଳ | – | ୩ ମଠ |
| ଓଡ଼ିଆ | – | ୧୪ ମଠ |
| ଗୌଡୀୟ | – | ୫ ମଠ |
| ଏକାଦଶୀ | – | ୩ ମଠ |
| ମନୋଦଣ୍ଡୀ | – | ୧୫ ମଠ |
| ତ୍ରିଦଣ୍ଡୀ | – | ୭ ମଠ |

(ମର୍ତ୍ତ୍ୟ ବୈକୁଣ୍ଠ - ବଂଶୀଧର ମହାନ୍ତି / ପ୍ରାଚୀନ ଉତ୍କଳ - ଜଗବନ୍ଧୁ ସିଂହ)

ମଠ ପ୍ରତିଷ୍ଠା କାଳରେ ପ୍ରତିଷ୍ଠାତାମାନେ ଆଶା କରିଥିଲେ ଯେ ଧର୍ମାଚାର୍ଯ୍ୟମାନେ ଯେଉଁ ନ୍ୟାସ ସମ୍ପତ୍ତିର ଦାୟିତ୍ୱରେ ରହିବେ ସେମାନେ ମଠର ଆୟ ଆମଦାନୀ ଲୋକହିତରେ ବ୍ୟୟ କରିବେ । ମଠ ସମ୍ପତ୍ତି ଭୋଗ ବିଳାସରେ ବ୍ୟୟିତ ହେବ ନାହିଁ । ଏ ବିଶ୍ୱାସ ଦାତାମାନଙ୍କର ନ୍ୟାସୀମାନଙ୍କଠାରେ ଥିଲା । ପ୍ରତ୍ୟେକ ମଠରେ ଉତ୍ତରାଧିକାରୀ ନିଯୁକ୍ତି ବ୍ୟବସ୍ଥା ଭିନ୍ନ ଭିନ୍ନ ନୀତି ନିୟମ ଦ୍ୱାରା ପରିଚାଳିତ ହେଉଥିଲା । ତେବେ ଅଧିକାଂଶ ମଠରେ ଗୁରୁଶିଷ୍ୟ ପରମ୍ପରାରେ ମହନ୍ତ ନିଯୁକ୍ତ କରାଯାଏ । କେତେକ କ୍ଷେତ୍ରରେ ମହନ୍ତ ନିଯୁକ୍ତି ଏକ ପରିଷଦ ଦ୍ୱାରା ନିୟନ୍ତ୍ରିତ ହୁଏ । ନିଯୁକ୍ତି ବେଳେ ମହନ୍ତ ମନୋନୟନ ପାଇଁ ପ୍ରାର୍ଥୀଙ୍କ ଯୋଗ୍ୟତା ବିଚାରକୁ ନିଆଯାଏ । କିନ୍ତୁ ସମୟ କ୍ରମେ ଏହି ଅନୁସୃତ ନୀତି ବଦଳି ବଦଳି ଗଲା । ମହନ୍ତମାନେ ନିଜ ଜ୍ଞାତି, ଗୋତ୍ର, ଆତ୍ମୀୟସ୍ୱଜନଙ୍କ ମଧ୍ୟରୁ ଶିଷ୍ୟ ଗ୍ରହଣ କରି ସେମାନଙ୍କୁ ନିଜର ଉତ୍ତରାଧିକାରୀ ଭାବେ ଚୟନ କଲେ । ସଂପୃକ୍ତ ଗୁରୁମାନେ ସମାଧି ଲାଭ କଲାପରେ ସେମାନଙ୍କ ଆତ୍ମୀୟ ସ୍ୱଜନ ହିଁ ପରବର୍ତ୍ତୀ ମହନ୍ତ ଭାବେ ଗୃହୀତ ହେଲେ । ଏହା ଏକ ସାଧୁ ପରମ୍ପରା ନହେଲେ ମଧ୍ୟ ସାଧୁମାନେ ଏ ଅସାଧୁ କାର୍ଯ୍ୟ କରି ଆସୁଛନ୍ତି କହିଲେ କିଛି ଭୁଲ ହେବ ନାହିଁ । ଏପରି ଭାବରେ (ମହାନ୍ତ) ମହନ୍ତ ନିଯୁକ୍ତି କ୍ଷେତ୍ରରେ ଯୋଗ୍ୟତାକୁ ଆଦୌ ବିଚାରକୁ ନିଆଗଲା ନାହିଁ । ଗୁରୁ ଯାହା ପାଇଁ ଇଚ୍ଛାପତ୍ର ଲେଖିଦେଇ କଣ୍ଠି କୌପୀନ ବାନ୍ଧିଦେଲେ, ସେ ହେଲେ ମହନ୍ତ ବା ମଠାଧୀଶ । ପ୍ରାଚୀନ କାଳରୁ ସ୍ଥାପିତ ଧର୍ମାନୁଷ୍ଠାନଗୁଡ଼ିକରେ ଏହି କାରଣରୁ ଆର୍ଥିକ ବିଶୃଙ୍ଖଳା ସହ ଅଧୋଗତି ଦେଖାଦେଲା । ତେଣୁ, ଯେଉଁ ଉଦ୍ଦେଶ୍ୟ ନେଇ ମଠମାନ ସ୍ଥାପିତ ହୋଇଥିଲା, କ୍ରମେ କ୍ରମେ ସେହି ଉଦ୍ଦେଶ୍ୟ ମଠଠାରୁ ଦୂରେଇଗଲା । ତଥାପି ନୀତି, ନିୟମ, ନିଷ୍ଠା, ପରମ୍ପରା, ଧର୍ମ ଓ ସଂସ୍କୃତିକୁ ରକ୍ଷା କରିବା ପାଇଁ କେତେକ ମଠ ଏପର୍ଯ୍ୟନ୍ତ ତିଷ୍ଠି ରହି ନିଷ୍ଠାରସହ ସେମାନଙ୍କ କାର୍ଯ୍ୟ କରିଆସୁଛନ୍ତି । ମଠ ସମେତ ଅନ୍ୟାନ୍ୟ ଧର୍ମାନୁଷ୍ଠାନ ଉପରେ ଇଂରେଜ ଶାସନ ବେଳେ କୌଣସି ହସ୍ତକ୍ଷେପ ହେଉନଥିଲା । ତେଣୁ ଅଙ୍କୁଶହୀନ ଭାବରେ କାର୍ଯ୍ୟ କରିବା ଅବସରରେ ମଠାଧୀଶମାନେ ନିଜକୁ ମହିପତି ମନେକଲେ । ମଠମାନଙ୍କର ଅବକ୍ଷୟ ଆରମ୍ଭ ହୋଇ ଚରମ ସୀମାରେ ପହଞ୍ଚିଲା । ତେଣୁ ୧୮୧୦ ମସିହାରେ ପ୍ରଥମ କରି ଓ ତା'ପରେ ୧୮୬୩ରେ ମଠଗୁଡ଼ିକରେ ସରକାରୀ ଅନୁଶାସନ ଆରମ୍ଭ କରିବା ଉଦ୍ଦେଶ୍ୟରେ ତଦନ୍ତ ପାଇଁ ଆଦେଶ ଜାରି କରାଯାଇଥିଲା । କେଦାରନାଥ ଦତ୍ତ ନାମକ ଜଣେ ସମାଲୋଚକ ଏ ସମ୍ପର୍କରେ ଦୀର୍ଘ ଆଲୋଚନା କରିଥିଲେ । ଅତଃପର ଏକ କମିଟି ଗଠନ କରାଯାଇ ମଠଗୁଡ଼ିକରେ ଲାଗି ରହିଥିବା ବିଶୃଙ୍ଖଳାର ତଦନ୍ତ ହେଲା । ତଦନ୍ତରୁ ଜଣାଗଲା ଯେ ମଠ ଗୁଡ଼ିକ ଦରିଦ୍ର, ନିରାଶ୍ରୟ ଲୋକମାନଙ୍କ ହିତ ପାଇଁ ଗଠିତ ହୋଇଛି, ମଠ ସମ୍ପତ୍ତିର ଲଗାମଛଡା

ଉପଯୋଗ ପାଇଁ ନୁହେଁ । ଆହୁରି ମଧ୍ୟ ଜଣାଗଲା ଯେ ମଠ ଗୁଡ଼ିକର ମହନ୍ତମାନେ ବୈରାଗୀ ଭାବେ ନିରାଡମ୍ବର ଜୀବନଯାପନ କରି ଦେବତା ଓ ମନୁଷ୍ୟ ସେବାରେ କାଳାତିପାତ କରିବେ । ଚିର ସନ୍ନ୍ୟାସୀ ହୋଇ କେବଳ ମଠ ସଂପତ୍ତିର ମାର୍ଫତଦାର ହେବେ । କିନ୍ତୁ ସେମାନଙ୍କର ସ୍ୱତ୍ୱାଧିକାର ରହିବ ନାହିଁ । କେବଳ ମୁଠାଏ ଖାଇବେ, ଖଣ୍ଡେ ପିନ୍ଧିବେ । ଏ କଥା ସବୁ ଦର୍ଶାଇ ୧୮୬୯, ମାର୍ଚ୍ଚ ୨୫ ତାରିଖରେ ଉକ୍ତ କମିଟି ତାଙ୍କ ରିପୋର୍ଟ ସରକାରଙ୍କୁ ଦେଲେ । ସେଥିରେ ମଠ ଗୁଡ଼ିକ ଉକ୍ତ ଆଦର୍ଶରୁ ଦୂରେଇ ଯାଇଥିବା ଦର୍ଶାଇ ଦିଆଯାଇଥିଲା । କେତେକ କ୍ଷେତ୍ରରେ ମଠ ସମ୍ପତ୍ତି ହସ୍ତାନ୍ତର କରି ଦିଆଯାଇଥିବା ଘଟଣାମାନ ମଧ୍ୟ କମିଟି ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଥିବା ଜଗବନ୍ଧୁ ସିଂହଙ୍କ ପ୍ରା.ଉ.ରେ ଉଲ୍ଲେଖ ଅଛି ।

ଏଠି ସ୍ମରଣୀୟ ଯେ ୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶା ହେଲା ବେଳକୁ ପାରଳାଖେମୁଣ୍ଡି ସମେତ ଆଧୁନିକ ଓଡ଼ିଶାର ଦକ୍ଷିଣାଞ୍ଚଳ ଓଡ଼ିଶାରେ ନଥିଲା । ତେଣୁ ଉପରୋକ୍ତ ରିପୋର୍ଟରେ ଓଡ଼ିଶାର ମଠ ସମ୍ପର୍କରେ ଯାହା ଦର୍ଶାଯାଇଛି ସେଥିସହ ପାରଳାଖେମୁଣ୍ଡିରେ ଥିବା ମଠଗୁଡ଼ିକ ଜଡ଼ିତ ନଥିଲେ । ତତ୍‌କାଳୀନ ଅବସ୍ଥାରେ ପାରଳାଖେମୁଣ୍ଡି ଓ ତା' ବାହାରେ ଥିବା ମଠଗୁଡ଼ିକରେ କୌଣସି ପ୍ରକାର ଅବକ୍ଷୟ ଘଟି ନଥିଲା । ତେତେବେଳେ କୌଣସି ପ୍ରକାର ଆଦର୍ଶଗତ ବିଶୃଙ୍ଖଳା ଘଟିଥିବାର ସାମାନ୍ୟତମ ଘଟଣା ମଧ୍ୟ ଏଯାବତ୍ ଆବିଷ୍କୃତ ହୋଇନାହିଁ । ଏପରିକି ମହନ୍ତ ନଥିବା ଗୃହସ୍ଥ ବୈଷ୍ଣବ ମଠଗୁଡ଼ିକ ମଧ୍ୟ ଅତିଥି ଅଭ୍ୟାଗତ, ବିଦ୍ୟାର୍ଥୀଙ୍କ ପାଇଁ ବାସଗ୍ରାସ ଯୋଗାଇ ଦେଉଥିଲେ । କାରଣ ସ୍ୱରୂପ ଏତିକି କୁହାଯାଇପାରେ ଯେ ପାରଳାଖେମୁଣ୍ଡିର ଖୋଦ ରାଜାମାନେ ପ୍ରତାପରୁଦ୍ର ଗଜପତି ନାରାୟଣ ଦେବଙ୍କ ଅମଳରୁ ବୈଷ୍ଣବ ଧର୍ମ ଗ୍ରହଣ କେବଳ କରିନଥିଲେ, ବରଂ ସନ୍ଥତୁଲ୍ୟ ନିରାଡମ୍ବର ଜୀବନଯାପନ କରୁଥିଲେ । ଏହି ଚରିତ୍ରବତ୍ତାର ଓ ଜୀବନ ଜୀଇଁବାର ଶୈଳୀ ରାଜ୍ୟବାସୀ ଓ ମଠ ମହନ୍ତ ସମସ୍ତଙ୍କୁ ପ୍ରଭାବିତ କରିଥିବ ।

ପାରଳାଖେମୁଣ୍ଡିରେ ଚନ୍ଦ୍ରବଂଶୀ ଗଙ୍ଗମାନେ ରାଜତ୍ୱ କରି ଆସୁଥିବା କଥା ପୂର୍ବରୁ ଆଲୋଚିତ ହୋଇସାରିଛି । ସେମାନଙ୍କ ପୂର୍ବପୁରୁଷ ପୁରୀରେ ଜଗନ୍ନାଥ ମନ୍ଦିର ନିର୍ମାଣ କରି ସେଥିର ନୀତିକାନ୍ତି ଓ ପୂଜାପାର୍ବଣର ସୁ-ନିୟନ୍ତ୍ରଣ କରିଥିବାରୁ ଏଠିକାର ରାଜାମାନେ ତଦ୍ୱାରା ପ୍ରଭାବିତ ହୋଇଥିବା ନିଶ୍ଚିତ । ପାରଳାଖେମୁଣ୍ଡି ରାଜ ପରମ୍ପରାରେ ବୈଷ୍ଣବ ଧର୍ମ ଗ୍ରହଣ କରିବାରେ ପ୍ରଥମ ବ୍ୟକ୍ତି ହେଉଛନ୍ତି ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ । ସେ ଥିଲେ ଶ୍ରୀ ସଂପ୍ରଦାୟଭୁକ୍ତ ରାମାନନ୍ଦଙ୍କ ଅନୁଗାମୀ । ସେ ତାଙ୍କର ଗୁରୁ ଭାବେ ସଦାରାମ ମଠର ମହନ୍ତ ସଦାରାମ ଦାସଙ୍କଠାରୁ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସଦାରାମ

ମଠ ନିର୍ମାଣ କରାଇବା ସହ ବର୍ତ୍ତମାନ ଆନ୍ଧ୍ର ପ୍ରଦେଶ ଅନ୍ତର୍ଗତ ଚାଙ୍ଗୁଡିଠାରେ ଥିବା ବାଲାଜୀ ମନ୍ଦିର ମଧ୍ୟ ସେ ନିର୍ମାଣ କରିଥିଲେ । ସେତେବେଳେ ଚାଙ୍ଗୁଡି ମଠର ମହନ୍ତ ଥିଲେ ମନସାରାମ ଦାସ । ଉଭୟ ମଠକୁ ସେ ପର୍ଯ୍ୟାପ୍ତ ପରିମାଣର ଭୂମି ମଧ୍ୟ ଦାନ କରିଥିଲେ । ଯେହେତୁ ପ୍ରତାପରୁଦ୍ରଙ୍କ ସମୟର ଏ ମଠ, ଏହାର ସ୍ଥାପନା ସମୟ ୧୭୪୮ରୁ ୧୭୫୧ ମଧ୍ୟରେ ହୋଇଥିବା ସମ୍ଭବ । ଚାଙ୍ଗୁଡି ଗ୍ରାମରେ ମଠ ପ୍ରତିଷ୍ଠା ଲାଭ କଲାବେଳେ ତାହା ପାରଳାଖେମୁଣ୍ଡି ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ତେଣୁ ପାରଳାଖେମୁଣ୍ଡିର ଉକ୍ତ ମଠ ଦୁଇଟି ପ୍ରଥମ କରି ରାଜ ପ୍ରୋତ୍ସାହାନରେ ଗଢ଼ି ଉଠିଥିଲା । ପାରଳାଖେମୁଣ୍ଡିରେ ଅବସ୍ଥିତ ଦେବୀ ମଠ ଉକ୍ତ ଦୁଇ ମଠର ସମସାମୟିକ ଓ ଏହାର ପ୍ରତିଷ୍ଠାତା ଭକ୍ତ ରାମ ଦାସ । ଉପର୍ଯ୍ୟୁକ୍ତ ଶ୍ରୀ ସଂପ୍ରଦାୟର ତିନିଗୋଟି ମଠ ସମେତ ସେହି ଏକା ସଂପ୍ରଦାୟର ଅନ୍ୟ ଯେଉଁ ମଠ ଗୁଡ଼ିକୁ ନେଇ ପାରଳାଖେମୁଣ୍ଡି ରାଜ୍ୟରେ ପ୍ରଥମେ ମଠ ସଂସ୍କୃତିର ଅଯମାରମ୍ଭ ହୋଇଥିଲା, ସେଗୁଡ଼ିକ ହେଲା ବିଷ୍ଣୁଦାସ ବାବାଜୀ (ହାତୀବାଲା)ଙ୍କ ଦ୍ୱାରା ପ୍ରତିଷ୍ଠିତ –

୧. ରାମସ୍ୱାମୀ ମଠ, ବଡ଼ ବ୍ରାହ୍ମଣସାହି, ପାରଳାଖେମୁଣ୍ଡି
୨. ପାତ୍ର ମଠ, କାଶୀନଗର
୩. ଗୋପିଲୀ ପାତ୍ର ମଠ (ଆ.ପ୍ର.)

ଏହା ବାଦ୍ ଆନ୍ଧ୍ରପ୍ରଦେଶାନ୍ତର୍ଗତ ହୀରାମଣ୍ଡଳ ସନ୍ନିକଟ ତୁମ୍ପାତାମ୍ପରା ମଠ ଓ ପାରଳାଖେମୁଣ୍ଡିସ୍ଥିତ ପଥରବାବାଜୀ ମଠ ମଧ୍ୟ ମୂଳତଃ ଶ୍ରୀ ସଂପ୍ରଦାୟର ଅନ୍ତର୍ଭୁକ୍ତ ରାମାନନ୍ଦୀ ମତରେ ପ୍ରତିଷ୍ଠିତ । କିନ୍ତୁ ପରିସ୍ଥିତି ପରିବେଶ ଓ ଅଜ୍ଞତାବଶରୁ ଏହି ମଠଗୁଡ଼ିକ ସମ୍ପୂର୍ଣ୍ଣ ବା ଆଂଶିକ ଭାବରେ ଗୌଡ଼ୀୟ ବୈଷ୍ଣବ ପରମ୍ପରାକୁ ଆବୋରି ନେଲେଣି । ପାରଳାରେ ଶ୍ରୀ ସଂପ୍ରଦାୟର ମଠରେ ଶ୍ରୀ-ଯନ୍ତ୍ର ଓ ରାମ, ଲକ୍ଷ୍ମଣ, ସୀତା ଓ ହନୁମାନଙ୍କ ସହ ରାଧା, କୃଷ୍ଣ, ଲଳିତା ଓ ମଦନମୋହନ ବିରାଜମାନ କରୁଛନ୍ତି । ଶ୍ରୀ ବୈଷ୍ଣବମାନଙ୍କର ମୁଖ୍ୟ ଉପାସ୍ୟ ଶ୍ରୀଦେବୀ ।

ଶ୍ରୀ ସଂପ୍ରଦାୟ ଅଧୀନ ରାମାନନ୍ଦଙ୍କ ଅନୁଗାମୀ ମଠଗୁଡ଼ିକ ହିଁ ପାରଳାଖେମୁଣ୍ଡିର ମଠ ପରମ୍ପରାର ଆଦ୍ୟ ସନ୍ତକ ଭାବେ ପ୍ରତାପରୁଦ୍ର ଗଜପତି ନାରାୟଣ ଦେବଙ୍କ ସମୟରୁ ରହି ଆସିଛି । ତତ୍‌ପରବର୍ତ୍ତୀ କାଳରେ ପାରଳା ରାଜ୍ୟରେ ଜଗନ୍ନାଥ ନାରାୟଣ ଦେବ (୨ୟ)ଙ୍କ ସମୟରେ ବ୍ରହ୍ମ ସଂପ୍ରଦାୟ ଅଧୀନ ଚୈତନ୍ୟ ମତାବଲମ୍ବୀ ମଠଗୁଡ଼ିକ ପ୍ରତିଷ୍ଠାଲାଭ କରିଥିଲା । ଏବଂ ଧୀରେ ଧୀରେ ଗୌଡ଼ୀୟ ବୈଷ୍ଣବ ପରମ୍ପରା ସମଗ୍ର ପାରଳା ଅଞ୍ଚଳକୁ କବଳିତ କରିଦେଇଥିଲା । ଏହି ଦୁଇ ସଂପ୍ରଦାୟ ବ୍ୟତୀତ ଅନ୍ୟ କୌଣସି ସାଂପ୍ରଦାୟିକ ମଠ ପାରଳାଖେମୁଣ୍ଡି ଅଞ୍ଚଳରେ ନଥିଲା ଏବଂ ବର୍ତ୍ତମାନ ମଧ୍ୟ ନାହିଁ ।

ପାରଳା କରଣ ସାହିରେ ନୃସିଂହ ନାଥ ମଠ ଅବସ୍ଥିତ । ଏ ମଠର ଅନ୍ୟ ନାମ ସାନ ରାଧାକାନ୍ତ ମଠ । ଏ ମଠ କେବେ ସ୍ଥାପନ କରାଯାଇଥିଲା ଠିକ୍ ଭାବେ ଜାଣି ହେଉନାହିଁ । ତେବେ ଏକ ପୁରାତନ ନଥିରୁ ଏ ଲେଖକ ଆବିଷ୍କାର କରିଥିବା ତଥ୍ୟରୁ ଜଣାପଡୁଛି ଯେ ଏହି ମଠର ପୁରାତନ ନାମ ବୃନ୍ଦାବନ ଦାସ ମଠ । ଏହି ନାମରେ ଗୌରଚନ୍ଦ୍ର ଗଜପତି ଦେବ ( ୧ ) କେତେକ ଜମି ପଟା ଦେଇଥିଲେ । ମଠ ପରିସରରେ ସ୍ଥାପନ କରାଯାଇଥିବା ଏକ ମାର୍ବଲ ଫଳକରୁ ମଧ ବୃନ୍ଦାବନ ଦାସ ଏହି ମଠର ଆଦ୍ୟ ମହନ୍ତ ଥିବା ଜଣାଯାଏ । ପାରଳାଖେମୁଣ୍ଡିକୁ ରାଜଧାନୀ ସ୍ଥାନାନ୍ତର ହେବା ପୂର୍ବରୁ ଏଠାରେ ଥିବା ଆଧୁନିକ କରଣ ସାହି ବଣ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ବର୍ତ୍ତମାନ ନୃସିଂହନାଥଙ୍କ ବିଜେସ୍ଥଳୀଟି ଥିଲା ଏକ ପୋଖରୀର ହୁଡା । ବୃନ୍ଦାବନ ଦାସ ନାମକ ବୈଷ୍ଣବ-ସାଧୁ ଏକ ଶାଳଗ୍ରାମ ସେଠାରେ ସ୍ଥାପନ କରି ସେବାପୂଜା କରି ଆସୁଥିଲେ । ଏହି ଶାଳଗ୍ରାମ ନୃସିଂହନାଥ ନାମରେ ପୂଜିତ ହେଉଥିଲେ । ପରବର୍ତ୍ତୀ ସମୟରେ ୧ମ ଗୌରଚନ୍ଦ୍ର ଗଜପତି ଦେବଙ୍କ ରାଜତ୍ୱ ବେଳେ ଏହା ରାଧାକାନ୍ତ ମଠ ରୂପେ ନାମିତ ହୋଇଥିବା ଅନୁମିତ ହୁଏ । ପୁରୀର ରାଧାକାନ୍ତ ମଠର ଏକ ଶାଖା ପାରଳାଖେମୁଣ୍ଡିରେ ରାଜା ୨ୟ ଜଗନ୍ନାଥ ନାରାୟଣ ଦେବଙ୍କ ଗୁରୁ ମଠ ଭାବେ ପ୍ରତିଷ୍ଠିତ । ସେହି ମଠକୁ ଲୋକରେ ବଡ ରାଧାକାନ୍ତ ମଠ କୁହାଯିବାରୁ ନୃସିଂହନାଥ ଓରଫ ରାଧାକାନ୍ତ ମଠକୁ ସାନ ରାଧାକାନ୍ତ ମଠ କୁହାଯାଉଅଛି ।

ବଡ ରାଧାକାନ୍ତ ମଠ ମଧ ପାରଳାଖେମୁଣ୍ଡିର ଏକ ପୁରାତନ ମଠ । ଏହାକୁ ପ୍ରତିଷ୍ଠା କରିଥିଲେ ଦ୍ୱିତୀୟ ଜଗନ୍ନାଥ ନାରାୟଣ ଦେବ । ପାରଳା ରାଜନବର ସମୀପବର୍ତ୍ତୀ ଜଗନ୍ନାଥ ମନ୍ଦିରକୁ ଲାଗି ଉକ୍ତ ମଠଟି ଅବସ୍ଥିତ । ପ୍ରତାପରୁଦ୍ର ଗଜପତି ନାରାୟଣ ଦେବଙ୍କ ପରେ ତାଙ୍କ ପୋଷ୍ୟପୁତ୍ର ଜଗନ୍ନାଥ ନାରାୟଣ ଦେବଙ୍କ ପ୍ରୋତ୍ସାହନରେ ଏହି ମଠ ତାଙ୍କ ବୃନ୍ଦାବନ ବାହୁଡ଼ା ପରବର୍ତ୍ତୀ କାଳ ୧୭୬୮ ରୁ ୧୭୭୧ ମଧରେ ପ୍ରତିଷ୍ଠିତ ହୋଇଥିବା ସମ୍ଭବ । କାରଣ ସେ ବ୍ରହ୍ମା ସଂପ୍ରଦାୟ ଭୁକ୍ତ ମାଧ୍ୱଗୌରେଶ୍ୱର ମତରେ ପୁରୀ ରାଧାକାନ୍ତ ମଠର ମହନ୍ତ ରାମକୃଷ୍ଣ ଦାସ ଗୋସ୍ୱାମୀଙ୍କଠାରୁ ବୃନ୍ଦାବନ ତୀର୍ଥାଟନ ବେଳେ ଦୀକ୍ଷା ଗ୍ରହଣ କରିଥିଲେ । ଗୁରୁଶିଷ୍ୟ ପରମ୍ପରାରେ ଏହି ବୈଷ୍ଣବ ମଠଟି ପୁରୀ ରାଧାକାନ୍ତ ମଠର ଏକ ଶାଖା ଭାବରେ ପରିଚାଳିତ ହେଉଛି । ବିଂଶ ଶତାବ୍ଦୀର ଶେଷ ପାଦରେ ଏ ମଠର ପରିଚାଳନା ଦେବୋତ୍ତର ବିଭାଗ ନେଇ ପୁଣି ୨୦୦୭ରେ ସମ୍ପୃକ୍ତ ମହନ୍ତ ଧ୍ୟାନଚନ୍ଦ୍ର ଦାସ ଗୋସ୍ୱାମୀଙ୍କୁ ପ୍ରତ୍ୟର୍ପଣ କରି ଦେଇଛନ୍ତି ।

ପୁରୀ ରାଧାକାନ୍ତ ମଠର ଓଡ଼ିଶା ଓ ଓଡ଼ିଶା ବାହାରେ ୩୨ଗୋଟି ପୀଠ ରହିଅଛି । ତନ୍ମଧ୍ୟରୁ କେତେକ ବୃନ୍ଦାବନ, ନବଦ୍ୱୀପ ଓ ଆନ୍ଧ୍ର ପ୍ରଦେଶରେ ଥିବା ଜଣାଯାଏ ।

ବୈଷ୍ଣବମାନେ ମୋଟାମୋଟି ଭାବରେ ଦୁଇ ଭାଗରେ ବିଭକ୍ତ । ଗୋଟିଏ ଗୋଷ୍ଠୀ ବିରକ୍ତ ବୈଷ୍ଣବ । ଅନ୍ୟ ଗୋଷ୍ଠୀ ଗୃହସ୍ଥ ବୈଷ୍ଣବ । ବିରକ୍ତ ବୈଷ୍ଣବମାନେ ସନ୍ନ୍ୟାସୀ । ଏମାନଙ୍କର ଭେକ କଣ୍ଠି କୌପୀନ, ବହିର୍ବାସ ଓ ଉତ୍ତରୀୟ । ଗୃହସ୍ଥ ବୈଷ୍ଣବମାନେ ଗୃହ ସଂସାର କରନ୍ତି, କଣ୍ଠି ଓ ତିଳକ ଧାରଣ କରି ସାତ୍ତ୍ୱିକ ଆହାର ଓ ସାତ୍ତ୍ୱିକ ବିହାର କରିବା ସହ ନିଜର ଗୃହ ଜଞ୍ଜାଳ କରନ୍ତି । ଏମାନଙ୍କର ଉପାସ୍ୟ ଦେବତା ବୈଷ୍ଣବୀୟ । ତେବେ ଦେବତାଙ୍କ ନାମରେ ବିଭିନ୍ନତା ଅଛି । ନିଜର ଉପାସ୍ୟ ଦେବତାଙ୍କ ଆସ୍ଥାନ ଏମାନଙ୍କ ଗୃହ ମଧ୍ୟରେ କିମ୍ୱା ଗୃହ ନିକଟରେ ନିର୍ମିତ ସ୍ୱତନ୍ତ୍ର ମନ୍ଦିରରେ ଥାଏ । କୌଣସି ସନ୍ନ୍ୟାସୀ ଏହାର ମହନ୍ତ ନଥିଲେ ସୁଦ୍ଧା ଏଗୁଡିକ ଲୌକିକ ଭାବେ ମଠରୂପେ ଗଣ୍ୟ । ଗୃହସ୍ଥ ବୈଷ୍ଣବ ଏକ ସ୍ୱତନ୍ତ୍ର ପରମ୍ପରାର ବଶବର୍ତ୍ତୀ । ଏମାନେ ଅନୁସରଣ କରୁଥିବା ଶୁଦ୍ଧ ଶ୍ରାଦ୍ଧାଦି ଶୁଭାଶୁଭ କାର୍ଯ୍ୟ ସାଧାରଣ ଗୃହସ୍ଥ ପରିବାରଠାରୁ ଭିନ୍ନ । ପ୍ରତି ଗୃହସ୍ଥ ବୈଷ୍ଣବ ପରିବାରରେ ଗୃହ ବା ଗୃହ ବାହାରେ ମନ୍ଦିର ରହିବ - ଏପରି କିଛି ବାଧ୍ୟବାଧକତା ନାହିଁ ।

ପାରଳାଖେମୁଣ୍ଡିର ରାଜା ୧ମ ଗୌରଚନ୍ଦ୍ର ଗଜପତି ଦେବଙ୍କ ସମୟରେ ମଠଗୁଡିକୁ ତାଙ୍କ ପୂର୍ବବର୍ତ୍ତୀ ପ୍ରତାପରୁଦ୍ର ଓ ଜଗନ୍ନାଥ ଦେବଙ୍କ ପଦାଙ୍କ ଅନୁସରଣ ପୂର୍ବକ ପର୍ଯ୍ୟାପ୍ତ ପରିମାଣର ଭୂମି ଯୋଗାଇ ଦିଆଯାଇଥିଲା ଓ ତା' ସହ ଅନେକ ଗୃହସ୍ଥ ବୈଷ୍ଣବ ମଠ ମଧ୍ୟ ନିଷ୍କର ଭୂସମ୍ପତ୍ତି ପାଇଥିଲେ । ପରେ ଏ ସମସ୍ତ ଭୂମିର ଇନାମ ବନ୍ଦୋବସ୍ତ କରାଯାଇ ମଧ୍ୟ - ସ୍ୱତ୍ୱାଧିକାରୀ ଭାବେ ମଠଗୁଡ଼ିକର ନାମ ରେକଡଭୁକ୍ତ କରାଯାଇଥିଲା ।

# ପାରଳାଖେମୁଣ୍ଡିର ଶତାୟୁ ମଠ

ପୂର୍ବ ପରିଚ୍ଛେଦରେ ବର୍ଣ୍ଣିତ ମଠଗୁଡ଼ିକ ବ୍ୟତୀତ ତଳଲିଖିତ ୨୩ଗୋଟି ମଠ ପାରଳାଖେମୁଣ୍ଡି ରାଜ୍ୟର ପୁରାତନ ମଠ –

୧. ମଦନମୋହନ ମଠ ।

୨. ବୃନ୍ଦାବନ ଦାସ ମଠ (ଏହାର ବର୍ତ୍ତମାନର ନାମ ସାନ ରାଧାକାନ୍ତ ମଠ ବା ନୃସିଂହନାଥ ମଠ) ।

୩. ରସିକ ରାଈ ମଠ (ଏହାର ବର୍ତ୍ତମାନର ନାମ ରସିକରାଜ ମଠ, ଏହାର ଅବସ୍ଥିତି କରଣ ସାହି) ।

୪. ଦାମ ଅଧିକାରୀ ମଠ (ଗୋପିନୀ ସାହିସ୍ଥ ଲକ୍ଷ୍ମୀନାରାୟଣ ମନ୍ଦିର) ।

୫. ଖଞ୍ଜା ବୋଗୀ ଘର ସମ୍ବନ୍ଧ (ସମ୍ମୁଖ) ଶ୍ୟାମସୁନ୍ଦର ମଠ କରଣ ସାହିର ପଶ୍ଚିମ ମୁଣ୍ଡକୁ ଏହା ଅବସ୍ଥିତ । ବର୍ତ୍ତମାନ ଭୂଷଣ ପାଣିଗ୍ରାହୀ ପରିଚାଳନା କରୁଅଛନ୍ତି । ପାଣିଗ୍ରାହୀ ପରିବାର ସମ୍ପର୍କୀୟ, ଯାହାର ଯେବେ ପାରଳା ଆଗମନ ହୁଏ, ସେମାନଙ୍କ ପାଇଁ ଏଠାରୁ ଭୋଗ ଖଞ୍ଜା ହେଉଥିବାରୁ ଏହି ମଠକୁ ଖଞ୍ଜା ବୋଗୀ ସମ୍ବନ୍ଧ ମଠ ବୋଲି କୁହାଯାଉଥିଲା ।

୬. କାଳିଆ ପରିଚ୍ଛା ସମ୍ବନ୍ଧ ରସିକ ରାଇ ମଠ (ଏହାର ବର୍ତ୍ତମାନର ନାମ ରସିକରାଜ ବା ପରିଚ୍ଛା ମଠ, ରାଜଗୁରୁ ସାହି) ।

୭. ଥାଟରାଜାଘର ସମ୍ବନ୍ଧ ରସିକ କିଶୋର ମଠ - ଏ ମଠ ସହ ଗୁମ୍ମା ବିଶୋଇ ପରିବାରର ସମ୍ବନ୍ଧ ଥିଲା ଓ ଏହାର ଅବସ୍ଥିତି ବକ୍ସିସାହି । (ଗୁମ୍ମା ବିଶୋଇ କୃଷ୍ଣଚନ୍ଦ୍ରଙ୍କର କକା 'ଥାଟରାଜା' ବୋଲାଉଥିବା ରସଲଙ୍କ ରିପୋର୍ଟରୁ ଜଣାଯାଏ ।)

୮. ଭଜନି ମଠ (ବର୍ତ୍ତମାନ କୁହାଯାଉଥିବା ଗୁଣ୍ଡିଚାବାଡି ମଠର ପୂର୍ବନାମ)

୯. ମନୋହର ଦାସ ସମ୍ବନ୍ଧ ଚୈତନ୍ୟ ମଠ (ବର୍ତ୍ତମାନ ହେଣ୍ଡିସାହି ଛକରେ ଥିବା ଚୈତନ୍ୟ ମଠ) ।

୧୦. ମଧୁ ପାଣିଗ୍ରାହୀ ମଠ (ଏହାର ଅବସ୍ଥିତି ନିର୍ଣ୍ଣୟ କରିବା ସମ୍ଭବ ହେଲା ନାହିଁ) ।

୧୧. ନରହରି ପାତ୍ର ମଠ (ବଡ ବ୍ରାହ୍ମଣ ସାହିରେ ଥିବା ରାମ ସ୍ୱାମୀ ମଠ ବା ବିଷ୍ଣୁ ଦାସ ମଠ । ବର୍ତ୍ତମାନ ପାତ୍ର ମଠ ଭାବେ ଜଣାଶୁଣା ।)

୧୨. ଗୋବିନ୍ଦ ଦାସଙ୍କ ମଠ ।

୧୩. ଅଲସନା ପୁଅ ବାସୁ ଦାସ ମଠ - ଏ ମଠର ବର୍ତ୍ତମାନ ଚିହ୍ନବର୍ଣ୍ଣ ନାହିଁ ।

୧୪. ଦେଉଳ ମଠ - ପାରଳାଖେମୁଣ୍ଡି ସଂସ୍କୃତ ମହାବିଦ୍ୟାଳୟ ସମ୍ମୁଖରେ ଅବସ୍ଥିତ ।

୧୫. ନିମିଗାଁ ଠାକୁର ମଠ - ବର୍ତ୍ତମାନ ଆନ୍ଧ୍ର ପ୍ରଦେଶରେ । ଏହା ପୁରୀ ରାଧାକାନ୍ତ ମଠର ଅଧୀନ ଥିଲା ।

୧୬. ଅଣରାଶି ଠାକୁର ମଠ - ଏହାର ଆଧୁନିକ ନାମ କାଶୀନଗର ମଠ ।

୧୭. ଲିହୁରି ଗୋପୀନାଥ ମଠ - ବର୍ତ୍ତମାନ ଆନ୍ଧ୍ର ପ୍ରଦେଶରେ ଅବସ୍ଥିତ । ପାରଳାଖେମୁଣ୍ଡି କବିଚନ୍ଦ୍ର ସାହିର ରଘୁନାଥ ପରିଚ୍ଛାଙ୍କ ପରିବାର ଏହାର ତତ୍ତ୍ୱାବଧାରକ ଥିଲେ ।

୧୮. ଗୁଲ୍‌ମୁର୍ ଠାକୁର ମଠ (ଆନ୍ଧ୍ର ପ୍ରଦେଶ ହୀରାମଣ୍ଡଳ ସନ୍ନିକଟ) ।

୧୯. ଗାରବନ୍ଧା ଠାକୁର ମଠ ।

୨୦. ଦୃଗପଲ୍ଲୀ ଠାକୁର ମଠ - ବର୍ତ୍ତମାନ ଆନ୍ଧ୍ର ପ୍ରଦେଶରେ ।

୨୧. ଅଙ୍ଗାରସିଙ୍ଗି ଠାକୁର ମଠ - ବର୍ତ୍ତମାନ ଆନ୍ଧ୍ର ପ୍ରଦେଶରେ ।

୨୨. ରାଟେଣୀ ଠାକୁର ମଠ - ବର୍ତ୍ତମାନ ଆନ୍ଧ୍ର ପ୍ରଦେଶରେ ।

୨୩. ବାଘଶାଳା ମଠ - ଏହା ଏକ ଗୌଡୀୟ ମଠ । ପାରଳାଖେମୁଣ୍ଡିଠାରୁ ପ୍ରାୟ ୧୬ କିଲୋମିଟର ଦୂରରେ ଅବସ୍ଥିତ ।

ଏହି ୨୩ ଗୋଟି ମଠ ମଧ୍ୟରୁ ପ୍ରଥମ ୧୪ଟି ପାରଳାଖେମୁଣ୍ଡି ସହରରେ ଅବସ୍ଥିତ । ପାରଳାଖେମୁଣ୍ଡି ସହର ବାହାରେ ରହିଛି ଅବଶିଷ୍ଟ ୯ ଗୋଟି । ସେଗୁଡିକ ମଧ୍ୟରୁ ନିମିଗାଁ, ଲିହୁରି, ଗୁଲମୁର, ଦୃଗପଲ୍ଲୀ ଓ ରାଟେଣୀ ପ୍ରଭୃତି ୧୯୩୬ ଏପ୍ରିଲଠାରୁ ଆନ୍ଧ୍ର ପ୍ରଦେଶ ଅଧୀନକୁ ଚାଲିଯାଇଛି । ସମୟ କ୍ରମେ ମଠ ଗୁଡ଼ିକର ନାମ ମଧ୍ୟ ବଦଳି ଯାଇଥିବା ଦେଖାଯାଏ । କେତେକ ମଠର ସତ୍ତା ମଧ୍ୟ ଲୋପ ହୋଇଗଲାଣି ।

କେତେକ ମଠ ୧ମ ଗୌରଚନ୍ଦ୍ର ଗଜପତି ଦେବଙ୍କ ସମୟରେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓ ଆଉ କେତେକ ତତ୍‌ପୂର୍ବରୁ ପ୍ରତିଷ୍ଠିତ ହୋଇଥିବା ଅନୁମେୟ । କାରଣ ଜଗନ୍ନାଥ ନାରାୟଣ ଦେବଙ୍କ ପୁତ୍ର ଗଜପତି ଦେବ ଉକ୍ତ ମଠଗୁଡ଼ିକୁ ପର୍ଯ୍ୟାପ୍ତ ପରିମାଣର ନିଷ୍କର ଭୂସମ୍ପତ୍ତି ଯୋଗାଇ ଦେଇଥିବାର ପ୍ରମାଣ ମିଳୁଥିବାରୁ ଏପରି ଅନୁମାନ କରାଯାଉଛି । ପ୍ରତାପରୁଦ୍ର ଗଜପତି ନାରାୟଣ ଦେବଙ୍କ ସମୟରେ ସର୍ବମୋଟ ୩ ଗୋଟି ମଠ ହିଁ ଥିଲା । ସେଗୁଡ଼ିକ ହେଲା – (୧) ସଦାରାମ ମଠ, (୨) ଦେବୀ ମଠ ଓ (୩) ବାଲାଜୀ ମଠ (ବର୍ତ୍ତମାନ ଆନ୍ଧ୍ର ପ୍ରଦେଶାନ୍ତର୍ଗତ ଟାଙ୍ଗୁଡି ନାମକ ବ୍ରାହ୍ମଣ ଶାସନରେ ଅବସ୍ଥିତ) । ଏହି ଲେଖକ ନ୍ୟାସୀଥିବା କୋକିଳା ମଝିଘରିଆଣୀ ମଠ ମଧ୍ୟ ଏକ ପୁରାତନ ଘରୋଇ ମଠ । ପଣ୍ଡା ସଞ୍ଚକ ଏକ ପରିବାର ଏହାର ପ୍ରତିଷ୍ଠାତା । କିନ୍ତୁ କୋକିଳା ନାମକ ଜଣେ ଦାସୀ ତା' ଜୀବଦ୍ଦଶାର ସମସ୍ତ ସଞ୍ଚିତ ଧନ ଏହି ମଠକୁ ଦାନ କରିଦେବାରୁ ସେହି ମହୀୟସୀଙ୍କର ନାମ ମଠସହ ଯୋଡି ହୋଇଯାଇଛି । ବନ୍ଦୋବସ୍ତ କାଗଜରେ ମଠର ଦେବତାଙ୍କ ନାମ ରାଧାକାନ୍ତ ସ୍ୱାମୀ ଉଲ୍ଲେଖ ଥାଇ କୋକିଳା ମଝିଘରିଆଣୀ ମଠ ବୋଲି ଲେଖା ଯାଇଅଛି । ତେବେ ପାରଳାର ସମସ୍ତ ମଠ ଗୌଡୀୟ କିମ୍ବା ରାମାନନ୍ଦ ମତାବଲମ୍ବୀ ଅଟନ୍ତି ।

ସଂପ୍ରଦାୟ ନିର୍ବିଶେଷରେ ଏଠିକାର ପ୍ରତ୍ୟେକ ବିରକ୍ତ ବୈଷ୍ଣବ ତଥା ଗୃହସ୍ଥ ବୈଷ୍ଣବ ମଠରେ ରାଧାକୃଷ୍ଣ ଓ ଲଳିତାଙ୍କ ପ୍ରତିମା ବିରାଜମାନ କରୁଅଛନ୍ତି । ପାରମ୍ପରିକ ଭାବେ ରାମ, କୃଷ୍ଣ ଓ ରାଧାଙ୍କ ଉପାସକ ଭାବେ ଏଠାରେ ଓଡ଼ିଆ ଲୌକିକ ବ୍ରାହ୍ମଣ ତଥା ସେମାନଙ୍କ ଅନୁଗାମୀମାନେ ନିରାମିଷାସୀ । ଏମାନେ ସାଧାରଣତଃ ସାଧାସିଧା, ନିଷ୍କପଟ ତଥା ଉତ୍ତମ ଚିରିତ୍ରବାନ ମନେ ହୁଅନ୍ତି । ଯଦିଓ ସମୟ ଏମାନଙ୍କର ଅନେକ ସୁଗୁଣ ଆତ୍ମସାତ୍ କରି ସାରିଲାଣି, ତଥାପି ଯାହା ଅଛି, ଓଡ଼ିଶାର ଅନ୍ୟତ୍ର ତାହା ଦୁର୍ଲଭ । ପାରଳାଖେମୁଣ୍ଡିର ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳରେ ବୈଷ୍ଣବ ମନ୍ଦିରର ପ୍ରାଦୁର୍ଭାବ ପରିଲକ୍ଷିତ ହୁଏ । ଏଠାରେ ବହୁ ସଂଖ୍ୟକ ଶୈବ ମନ୍ଦିର ଅଛି । କିନ୍ତୁ ଗୋଟିଏ ସୁଦ୍ଧା ଶୈବ ମଠ ନାହିଁ ।

ପ୍ରତ୍ୟେକ ବିରକ୍ତ ବୈଷ୍ଣବ ମଠ ନିଜ ନିଜର ଗୁରୁଙ୍କର ମହାସମାଧି ଦିବସକୁ ଏକ ମହୋତ୍ସବ ଭାବେ ପାଳନ କରନ୍ତି । ସହସ୍ର ବ୍ୟକ୍ତିଙ୍କ ସମାଗମରେ ପ୍ରସାଦ ସେବନ, କୀର୍ତ୍ତନସହ ରାସ ଆଦି ସାଂସ୍କୃତିକ କାର୍ଯ୍ୟକ୍ରମ ହୁଏ । ବେଳେ ବେଳେ ଚଉଷଠୀ ମହନ୍ତ ସମ୍ମେଳନ ମଠ ପରିବେଶକୁ ଉତ୍ସବ ମୁଖର କରେ । "ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ, ହରେ ରାମ ହରେ ରାମ ରାମ ରାମ ହରେ ହରେ" ମହାମନ୍ତ୍ର ଉଚ୍ଚାଟନରେ ସମ୍ପୃକ୍ତ ଅଞ୍ଚଳ ପ୍ରକମ୍ପିତ ହୁଏ । ଲୋକେ ହରିନାମ ହରଣ କରି ପରମତୃପ୍ତି ଲାଭ କରନ୍ତି । ଏତଦ୍‌ବ୍ୟତୀତ ନାନାଦି ପାର୍ବଣ ଯଥା - ଦୋଳ, ଝୁଲଣ, ମଲ୍ଲୀଝୁଲଣ, ଗିରିଗୋବର୍ଦ୍ଧନ ପୂଜା, ଦହିଯାତ୍ରା, ନାବକେଳି, ପଞ୍ଚୁଦୋଳ, ଇତ୍ୟାଦି ବୈଷ୍ଣବ ପରମ୍ପରା ଆଧାରିତ ଉତ୍ସବମାନ ବର୍ଷଯାକ ଅନୁଷ୍ଠିତ ହୋଇଥାଏ । ପ୍ରତି ସନ୍ଧ୍ୟାରେ ଉଭୟ ମହନ୍ତ ମଠ ଓ ଅଧିକାରୀ ମଠଗୁଡ଼ିକରେ ନାମ ସଂକୀର୍ତ୍ତନ ହୁଏ । ଏହି ଅବସରରେ ସଙ୍ଗୀତ ଆସର ମଧ ଜମେ ବିଶେଷ କରି ଗୋପାଳକୃଷ୍ଣଙ୍କ ପଦାବଳୀ ମାଧମରେ କୀର୍ତ୍ତନିଆମାନଙ୍କ ମନ୍ଦ୍ର ମଧୁର କଣ୍ଠସ୍ୱର ସୃଷ୍ଟି କରେ ଭକ୍ତିରସାଶ୍ରିତ ଆମୋଦଦାୟକ ପରିବେଶ । ସଙ୍ଗୀତର ତାଳେତାଳେ ବୈଠକ-କୀର୍ତ୍ତନ ପ୍ରଦୋଷ ସମୟକୁ ପ୍ରଭାବିତ କରି ରଖେ । କିଛି ସମୟ ପାଇଁ ପାରଳାଖେମୁଣ୍ଡିର ଭକ୍ତ-ଜନ-ମନକୁ ଐହିକରୁ ଈଶ୍ୱରୀୟ ସତ୍ତା ଆଡକୁ ହରଣ କରିନିଏ । ସାୟଂସନ୍ଧ୍ୟା ଆଗନ୍ତୁକ ପାଇଁ ଆଣିଦିଏ ଏକ ସ୍ୱତନ୍ତ୍ର ଅନୁଭବ । ଏଥିପୂର୍ବରୁ ପାରଳାଖେମୁଣ୍ଡିକୁ ବର୍ଷଯାକ ଶତାଧିକ ବିଦେଶାଗତ ବୈଷ୍ଣବ ସାଧୁ ସନ୍ଥଙ୍କର ଭିଡ଼ ଲାଗି ରହୁଥିଲା । ସେମାନେ ମନଇଚ୍ଛା ନିର୍ବିଘ୍ନରେ ସେମାନଙ୍କର ଆସ୍ଥାନ ଓ ପ୍ରବଚନ ଆସର ଜମାଉଥିଲେ । କୀର୍ତ୍ତନରେ ଅଂଶଗ୍ରହଣ କରି ପ୍ରାତଃ ଓ ସାୟଂସନ୍ଧ୍ୟାରେ ନଗର ପରିବ୍ରାଜନ ପୂର୍ବକ ଭଗବତପ୍ରେମରେ ଜନମାନସକୁ ପ୍ରେମାୟିତ କରୁଥିଲେ । ବୃନ୍ଦାବନ ତୁଲ୍ୟ ସର୍ବଦା ବୈଷ୍ଣବ ସମାବେଶ ଲାଗିରୁହୁଥିବାରୁ ପାରଳାଖେମୁଣ୍ଡି ଦ୍ୱିତୀୟ ବୃନ୍ଦାବନର ମର୍ଯ୍ୟାଦା ପାଉଥିଲା । ଏବେ ମଧ ଯୌବନର ଉଦାମରେ ଉପନୀତ ପାରଳା ଯୁବକର ଗ୍ରୀବାରେ ତୁଳସୀକଣ୍ଠି ଓ ମସ୍ତକରେ ବୈଷ୍ଣବ ତିଳକ ଦେଖି ବହିରାଗତ ବ୍ୟକ୍ତି ବିସ୍ମିତ ହୁଅନ୍ତି । ସାଧାରଣ ପରିବାର ସମେତ ପାରଳାର ଆଭିଜାତିକ ପରିବାରଗୁଡ଼ିକର ସମସ୍ତ ଶୁଭକାର୍ଯ୍ୟରେ ନିରାମିଷ ଅନ୍ନଭୋଜନର ବ୍ୟବସ୍ଥା ଚଳିଆସିଛି । ପାରଳାଖେମୁଣ୍ଡି ଜନଜୀବନର ଏହା ଏକ ବିଶେଷତା ।

# ପାରଳାଖେମୁଣ୍ଡିର ପରିଚ୍ଛା ବଂଶ ଓ ବ୍ରାହ୍ମଣ୍ୟ ପରମ୍ପରା

'ପରିଚ୍ଛା' ଏକ ସଞ୍ଜ୍ଞା ନୁହେଁ । ଏହା ଏକ ଉପାଧି । ଏ ଉପାଧି ଏକ ନିର୍ଦ୍ଦିଷ୍ଟ ସେବା ସହ ପ୍ରଯୁକ୍ତ । ଓଡ଼ିଶାରେ ବ୍ରାହ୍ମଣ, କରଣ ଇତ୍ୟାଦି ସଂଭ୍ରାନ୍ତଶ୍ରେଣୀର ବ୍ୟକ୍ତିବିଶେଷଙ୍କୁ ରାଜା, ମହାରାଜା ଓ ଜମିଦାରମାନଙ୍କ ଦ୍ୱାରା ଏହି ଉପାଧି ଦିଆଯାଉଥିଲା । ବିଭିନ୍ନ ପୂର୍ବତନ ଗଡ଼ଜାତ, ଦେଶୀୟ ରାଜ୍ୟ ଓ ଶ୍ରୀକ୍ଷେତ୍ର-ପୁରୀରେ ମଧ୍ୟ ଏ ଉପାଧିର ବ୍ୟବହାର ଥିଲା ବା ଅଛି । ତେବେ, ପାରଳାଖେମୁଣ୍ଡିରେ ଏହି ଉପାଧି କେବଳ ଲୌକିକ ବ୍ରାହ୍ମଣମାନଙ୍କୁ ଦିଆଯାଇଥିଲା । ତେଣୁ ପାରଳାଖେମୁଣ୍ଡି ସହର କିମ୍ବା ଏହା ଆସପାଶ ଅଞ୍ଚଳରେ ବୈଦିକ ବ୍ରାହ୍ମଣ ତଥା ଲୌକିକ ବ୍ରାହ୍ମଣେତର ଜାତିରେ ପରିଚ୍ଛା ସଞ୍ଜ୍ଞାଧାରୀ ବ୍ୟକ୍ତି ପରିଦୃଷ୍ଟ ହୁଅନ୍ତି ନାହିଁ । ତେବେ ମାଳ ଅଞ୍ଚଳରେ ବ୍ରାହ୍ମଣେତର ନିର୍ଦ୍ଦିଷ୍ଟ ଗୋଷ୍ଠୀର କେତେକ ବ୍ୟକ୍ତି ଅଧୁନା 'ପରିଚ୍ଛା' ସଞ୍ଜ୍ଞା ବ୍ୟବହାର କରୁଅଛନ୍ତି । ଏ ସଞ୍ଜ୍ଞା ସେମାନଙ୍କର ଆନୁବଂଶିକ ଉପାଧି ବା ସଞ୍ଜ୍ଞା ନୁହେଁ । ରାଜା ରାଜୁଡା ଅମଳରେ କେହି ନିଜ ଇଚ୍ଛାରେ ନିଜ ନାମ ସହିତ କୌଣସି ପଦବୀ ଯୋଡ଼ିବା ଏକ ସମାଜବିରୋଧୀ କାର୍ଯ୍ୟ ଭାବେ ବିବେଚିତ ହେଉଥିଲା । ଭାଷା, ସାହିତ୍ୟ, ସଂସ୍କୃତ ଇତ୍ୟାଦି ବିଷୟରେ ଯେଉଁମାନେ ଏକ ନିର୍ଦ୍ଦିଷ୍ଟ ସ୍ତରରେ ଉତ୍ତୀର୍ଣ୍ଣ ଲାଭ କରୁଥିଲେ ସେମାନେ ନାମ ପୂର୍ବରୁ ବା ପରେ କେତେକ ବ୍ୟବସ୍ଥିତ ପଦବୀର ଉଲ୍ଲେଖ କରୁଥିଲେ । ଯଥା - 'ପଣ୍ଡିତ' 'ଉ.ଭା.ପ୍ର', କବିଭୂଷଣ ଇତ୍ୟାଦି । ସେହିପରି ରାଜା, ମହାରାଜା ବା ଜମିଦାର କୌଣସି ନିର୍ଦ୍ଦିଷ୍ଟ

କାର୍ଯ୍ୟରେ ପାରଦର୍ଶିତା ହେତୁ କିମ୍ବା ନିର୍ଦ୍ଦିଷ୍ଟ ଦାୟିତ୍ୱ ପ୍ରଦାନ ପୂର୍ବକ ସେମାନଙ୍କୁ 'ରାଜଗୁରୁ', 'ପରିଛା', 'ମହାପାତ୍ର' ଇତ୍ୟାଦି ଅନେକ ଉପାଧି ଦେଉଥିଲେ । ଏ ବାବଦରେ ସମାଜରେ ଏକ ଆଘୋଷିତ ଅନୁଶାସନ ଚଳିଆସୁଥିଲା । ତାହା ବର୍ତ୍ତମାନ ବଦଳିଗଲାଣି । ନିଜ ନାମ ପୂର୍ବରୁ ବା ପରେ, ଯୋଗ୍ୟତା ଥାଉ ବା ନଥାଉ, ଏକ ପଦବୀକୁ ନିଜେ ଯୋଡ଼ିଦେବା ପାଇଁ ସମ୍ପୃକ୍ତ ବ୍ୟକ୍ତିମାନେ ସାମାନ୍ୟତମ କୁଣ୍ଠା ପ୍ରକାଶ କରୁନାହାନ୍ତି । ସେହିପରି 'ପରିଛା', 'ଖାଡଙ୍ଗା', 'ମହାପାତ୍ର', ରାଜଗୁରୁ ବିଶୋଇ, ବିଶୋଇରତ୍ନ, କବିରତ୍ନ, ରଣହାତୀ, ରଣବିଜୁଳି, ଉତ୍ତରକବାଟ, ପଶ୍ଚିମ କବାଟ, ବିନ୍ଧାଣିରତ୍ନ ପରି ଅସଂଖ୍ୟ ପଦବୀ ଯାହାକି ରାଜାରାଜୁଡ଼ା ଶାସନବେଳେ କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ କୌଣସି ନିର୍ଦ୍ଦିଷ୍ଟ ସେବା କିମ୍ବା ପ୍ରତିପତ୍ତିହେତୁ ଦିଆଯାଇଥିଲା, ସେସବୁ ବର୍ତ୍ତମାନ ଆନୁବଂଶିକ ସଞ୍ଜ୍ଞାରେ ପରିଣତ ହୋଇଯାଇଛି, ଏଥିପାଇଁ ଯୋଗ୍ୟତାର ବିଚାର ଆବଶ୍ୟକ ପଡେନାହିଁ । ଏସବୁ ଉପାଧିକୁ ସଞ୍ଜ୍ଞାଭାବେ ବ୍ୟବହାର କରୁଥିବା ଉପଭୋକ୍ତାମାନେ ଏହା ନିଜର ଆଭିଜାତ୍ୟର ପରିଚୟ ବୋଲି ମନେ କରୁଅଛନ୍ତି ।

'ପରିଛା' ଉପାଧିକୁ ପାରଳାଖେମୁଣ୍ଡିରେ କେବଳ ଲୌକିକ ବ୍ରାହ୍ମଣମାନେ ଶହ ଶହ ବର୍ଷଧରି ପାରମ୍ପରିକ ଭାବେ ବ୍ୟବହାର କରି ଆସୁଛନ୍ତି । ବ୍ରାହ୍ମଣେତର କିଛି ହରିଜନ ଦେଶ ସ୍ୱାଧୀନୋତ୍ତର କାଳରେ ଏହାକୁ ସଞ୍ଜ୍ଞା ଭାବେ ବ୍ୟବହାର କରିବା ଆରମ୍ଭ କରିଛନ୍ତି । ଏହି ସଂଜ୍ଞା ଏ ଅଞ୍ଚଳରେ ଲୌକିକ ବ୍ରାହ୍ମଣେତର ଗୋଷ୍ଠୀର ଉପାଧିରୁ ଉଦ୍ଭବ ହୋଇନାହିଁ । ସୁତରାଂ ପରିଛା ଉପାଧି ତଥା ସଞ୍ଜ୍ଞା ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ଲୌକିକ ବ୍ରାହ୍ମଣ ସମ୍ପର୍କରେ କିଂଚିତ୍ ବିବରଣୀ ଦେବା ଉଚିତ୍ ମନେହୁଏ ।

ବ୍ରହ୍ମଣମାନଙ୍କର ଶ୍ରେଣୀବିଭାଗ ସମ୍ପର୍କରେ ପୁରୀଜିଲ୍ଲା ଷୋଳଶାସନୀ ବ୍ରାହ୍ମଣଙ୍କ ମଧ୍ୟରୁ ଜଣେ ମୂର୍ଦ୍ଧଣ୍ୟ ପଣ୍ଡିତ ଶ୍ରୀ ବିଶ୍ୱନାଥ ରଥ କାବ୍ୟତୀର୍ଥ ଗବେଷଣା କରି ନିଜର ସନ୍ଦର୍ଭ ପ୍ରଦାନ କରିଅଛନ୍ତି । ଏହି ସନ୍ଦର୍ଭର ସାରାଂଶ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ୬ଷ୍ଠ ଭାଗରେ ପୃଷ୍ଠା ୭୬୪୦ ଠାରୁ ୭୬୪୩ ମଧ୍ୟରେ ସନ୍ନିବେଶିତ ହୋଇଛି । ପଣ୍ଡିତ ରଥ ସ୍ୱୟଂ ଜଣେ ବୈଦିକ ଶାସନୀ ବ୍ରାହ୍ମଣ ହୋଇ ସୁଦ୍ଧା ମୁକ୍ତ କଣ୍ଠରେ ସ୍ୱୀକାର କରିଅଛନ୍ତି ଯେ ପ୍ରଥମରୁ ବ୍ରାହ୍ମଣମାନଙ୍କ ମଧ୍ୟରେ ବୈଦିକ, ଲୌକିକ ବା ପଣ୍ଡା, ପଢ଼ିଆରୀ, ପୂଜାରୀ, ସାରୁଆ ବା ହଳୁଆ ଏପରି ଶ୍ରେଣୀବିଭାଗ ନଥିଲା । ସମସ୍ତେ ଥିଲେ ବୈଦିକ ବ୍ରାହ୍ମଣ । ବୌଦ୍ଧଧର୍ମର ପ୍ରଭାବରେ ବ୍ରାହ୍ମଣମାନେ ନିଜର କୌଳିକ ବ୍ରାହ୍ମଣ ବୃତ୍ତି ମଧ୍ୟରେ ନିଜକୁ ସୀମିତ ନରଖି ବ୍ରାହ୍ମଣେତର ବୃତ୍ତି ଯଥା - ବାଣିଜ୍ୟ, ବ୍ୟବସାୟ, ଚାଷ ଏପରି ଅର୍ଥ ରୋଜଗାର-ପ୍ରଧାନ ବୃତ୍ତିମାନ ଆବୋରି ନେଲେ । ସେମାନେ କ୍ରମେ କ୍ରମେ ବୈଦିକ କର୍ମକାଣ୍ଡ ଉଚିତ କାର୍ଯ୍ୟରୁ ଦୂରେଇଯିବା ଫଳରେ ବୈଦିକ ବ୍ରାହ୍ମଣୋଚିତ କାର୍ଯ୍ୟ ତୁଲାଇବା ପାଇଁ ବ୍ରାହ୍ମଣମାନଙ୍କର ବିଶେଷ ଅଭାବ ଅନୁଭୂତ ହେଲା । ସୁତରାଂ ଯାଜପୁର

(ଯଜାତିନଗର)ରେ, ଯେଉଁ ଦଶାଶ୍ୱମେଧ ଯଜ୍ଞର ଆୟୋଜନ ହୋଇଥିଲା, ସେଥିପାଇଁ ବୈଦିକ ବ୍ରାହ୍ମଣ ମିଳିଲେ ନାହିଁ । ତେଣୁ ଯଜାତି କେଶରୀ କାନ୍ୟକୁବ୍ଜରୁ ଦଶ ସହସ୍ର ବୈଦିକ ବ୍ରାହ୍ମଣ ଅଣାଇଥିଲେ । ସେହିଦିନ ଠାରୁ ବୈଦିକ ବ୍ରାହ୍ମଣମାନେ ଯାଗଯଜ୍ଞାଦି କରି ଆସୁଅଛନ୍ତି ଓ ଲୌକିକ ବ୍ରାହ୍ମଣମାନେ ସାଧାରଣତଃ ନିଜର ବ୍ରାହ୍ମଣ ବୃତ୍ତିକୁ ମଠ ମନ୍ଦିରାଦିରେ ସେବାପୂଜାରେ ସୀମିତ ରଖିଛନ୍ତି । ତେବେ ଏହାର ବ୍ୟତିକ୍ରମ ମଧ ଦେଖାଯାଏ । ଏଥିରେ ଓଲଟପାଲଟ ମଧ କ୍ଷେତ୍ର ବିଶେଷରେ ପରିଲକ୍ଷିତ ହୁଏ ।

ଅବିଭକ୍ତ ଗଞ୍ଜାମ ଜିଲ୍ଲାରେ ଋଷିକୁଲ୍ୟାଠାରୁ ବଂଶଧାରା ନଦୀ ମଧସ୍ଥ ଅଞ୍ଚଳରେ ଲୌକିକ ବ୍ରାହ୍ମଣଙ୍କର ସଂଖ୍ୟା ସର୍ବାଧିକ । ଏବଂ ସେମାନେ ପଞ୍ଚୋପଚାରଠାରୁ ଷୋଡଶ ଉପଚାର ପର୍ଯ୍ୟନ୍ତ ସକଳ ପ୍ରକାର ପୂଜାରେ ପ୍ରବୀଣ ଅଟନ୍ତି । ପାରଳାଖେମୁଣ୍ଡି ରାଜ ପରିବାର ନିଜର ତଥା ନିଜ ଅଧୀନସ୍ଥ ଶାଖାମାନଙ୍କରେ ବୈଦିକ ବ୍ରାହ୍ମଣମାନଙ୍କୁ ରାଜଗୁରୁ ଭାବେ ନିଯୁକ୍ତ କରି ଲୌକିକ ବ୍ରାହ୍ମଣମାନଙ୍କୁ ବିଭିନ୍ନ ମଠ ମନ୍ଦିରରେ ପୂଜକ ବା ପୂଜାରୀ ଭାବରେ ନିଯୁକ୍ତି ଦେଇଥିଲେ । ଚାଙ୍ଗୁଡି ଶାସନର 'ଲାଉମିଶ୍ର' ପରିବାରର ପିଣ୍ଡିକ ରାଜଗୁରୁଙ୍କ ପର୍ଯ୍ୟନ୍ତ ଶ୍ରୋତ୍ରିୟ ବୈଦିକ ବ୍ରାହ୍ମଣମାନେ ରାଜଗୁରୁ ଭାବେ ନିଯୁକ୍ତ ଥିଲେ । ଏହି 'ଲାଉମିଶ୍ର'ମାନେ ପୁରୀର ଷୋଳଶାସନୀ ବ୍ରାହ୍ମଣ ପରମ୍ପରାରେ 'ଅଷ୍ଟବସୁ' ଭାବେ ଗଣ୍ୟ । ପୁରୀ ଶ୍ରୀକ୍ଷେତ୍ରରେ ରାଜଗୁରୁଙ୍କର ଅଧୀନରେ କାର୍ଯ୍ୟ କରୁଥିବା ଆଠଜଣ ବ୍ରାହ୍ମଣଙ୍କୁ ଅଷ୍ଟବସୁ କୁହାଯାଉଥିଲା । ଏମାନେ କୁଳୀନ ଶ୍ରୋତ୍ରିୟ ବ୍ରାହ୍ମଣ । ଏମାନଙ୍କ ସଞ୍ଜ୍ଞା ସହ ସ୍ଥାନୀୟ ଭାବେ 'ଲାଉଗୋରଡ଼ା', 'କାଠ', କୌସ୍ତ(ସ), 'ଫୁଙ୍କନଳୀ', 'ତୁଛା ମାଠିଆ', 'ପରିଡ଼' ଓ 'ପରହାଟ' ଆଦି ଉପନାମ ଯୋଡ଼ା ଯାଉଥିଲା । ଅନ୍ୟ କେତେକଙ୍କ ମତରେ 'ଡରାଟ', 'ଖାରୁଆ', 'ଦକ୍ଷିଣ ସାହିଆ', 'ବସ୍ତ'(ସ), 'ଲାଉ', 'ବାଇଗଣ ଫାଳିଆ', 'ପରହାଟିଆ' ଓ 'ଲଙ୍କଳା ଆଟିକା ଛୁଆଁ' ହେଉଛନ୍ତି ଅଷ୍ଟବସୁ । ଉଦାହରଣ ସ୍ୱରପ ଦକ୍ଷିଣ ସାହିଆ ରଥ, କୌସ୍ତ (ସ) ମହାପାତ୍ର, ଲାଉମିଶ୍ର - ଏପରି ଏମାନଙ୍କୁ ଡକା ଯାଉଥିଲା । ଋଙ୍ଗୁଡ଼ିର 'ଲାଉମିଶ୍ର' ମାନେ ଏହି ଅଷ୍ଟବସୁ ବ୍ରାହ୍ମଣ ଶ୍ରେଣୀୟ । ଏମାନେ ଶାସନୀ ବ୍ରାହ୍ମଣ ଭାବରେ ସାମନ୍ତ (ସାଆନ୍ତ) ବ୍ରାହ୍ମଣଙ୍କ ପରି ମର୍ଯ୍ୟାଦାବନ୍ତ କିନ୍ତୁ ସାମନ୍ତ ନୁହନ୍ତି ।

ପାରଳାଖେମୁଣ୍ଡିରେ ଯେତେ ବୈଦିକ ବ୍ରାହ୍ମଣ ରହି ଆସିଛନ୍ତି ସେମାନେ ପୁରୀ ଷୋଳଶାସନ ବା ୩୨ କରବାଡ଼ ମଧରୁ କୌଣସି ନା କୌଣସିଠାରୁ ଆସିଛନ୍ତି । ସେମାନଙ୍କର ପୂର୍ବପୁରୁଷ କେହି ସିଧା ସଳଖ ପୁରୀ ଅଞ୍ଚଳରୁ ଆସିଛନ୍ତି ତ କେହି ମଧବର୍ତ୍ତୀ କୌଣସିଠାରେ କେତେ ପୁରୁଷ ବିତାଇବା ପରେ ପାରଳା ରାଜ୍ୟରେ ପହଞ୍ଚିଛନ୍ତି । ଏଠାରେ ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କ ମଧରେ ଅଛନ୍ତି ପାଢ଼ିଆ ଓ ହଳୁଆ । ସାରୁଆ ବ୍ରାହ୍ମଣଙ୍କ ସଂଖ୍ୟା ଏଠାରେ ନଗଣ୍ୟ । ହଳୁଆ ବ୍ରାହ୍ମଣମାନଙ୍କ ମଧରେ ପଣ୍ଡା, ସାହୁ,

ଦାସ, ପରିଚ୍ଛା, ଚୌଧୁରୀ, ବିଷୋଇ, ପାଣିଗ୍ରାହୀ, ପଡ଼ିଆରୀ ସଙ୍ଗ୍ୟା ବ୍ୟବହାର ହୁଏ । ଏମାନେ ମଠ ମନ୍ଦିରମାନଙ୍କରେ ପୂଜକ କାର୍ଯ୍ୟ କରନ୍ତି । ପାଡ଼ିଆ ବ୍ରାହ୍ମଣମାନେ ବୈଦିକ ବ୍ରାହ୍ମଣଙ୍କ ପରି ପୌରୋହିତ୍ୟ କାର୍ଯ୍ୟ କରନ୍ତି । ପୂର୍ବେ ଏମାନଙ୍କ ମଧ୍ୟରୁ ଗୋଟିଏ ଶ୍ରେଣୀର ଅନ୍ୟ ଶ୍ରେଣୀ ସହ ବୈବାହିକ ସମ୍ପର୍କ ଚଳୁନଥିଲା । ବର୍ତ୍ତମାନ ସେଥିରେ ପରିବର୍ତ୍ତନ ହେଲାଣି ।

ତ୍ରିପାଠୀ ସଙ୍ଗ୍ୟକ ବୈଦିକ ବ୍ରାହ୍ମଣ ପରିବାରରୁ ପାରଳା ରାଜାଙ୍କର ରାଜଗୁରୁ ନିଯୁକ୍ତ ହେଉଥିଲେ । ଏଥିରୁ ପ୍ରମାଣ ମିଳୁଛି ଯେ ଶ୍ରୋତ୍ରିୟ ବୈଦିକ ବ୍ରାହ୍ମଣଙ୍କୁ ରାଜଗୁରୁ ଓ ଲୌକିକ ବ୍ରାହ୍ମଣଙ୍କୁ ମଠ ମନ୍ଦିରମାନଙ୍କରେ ପୂଜକ ଭାବେ ନିଯୁକ୍ତ କରାଯାଉଥିଲା । ଏହି ପରମ୍ପରା ପାରଳାଖେମୁଣ୍ଡିରେ ଶହ ଶହ ବର୍ଷ ହେଲା ଚଳିଆସିଛି । ତତ୍‌କାଳୀନ ସମାଜରେ ରାଜାଙ୍କ ବିଦ୍ୱତ୍‌ ପରିଷଦରେ ରାଜଗୁରୁଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ସେହିପରି ମଠ ମନ୍ଦିରାଦି ଧର୍ମଧାରଣାର କେନ୍ଦ୍ରବିନ୍ଦୁ ହୋଇଥିବାରୁ ସେଗୁଡ଼ିକର ଉପଯୁକ୍ତ ପରିଚାଳନା କାର୍ଯ୍ୟ ମଧ୍ୟ ତଦ୍ରୂପ ଗୁରୁତ୍ୱପୂର୍ଣ୍ଣ ଥିଲା । ଏ ଉଭୟ କାର୍ଯ୍ୟପାଇଁ ଓଡ଼ିଆ ବ୍ରାହ୍ମଣ ପାରଳାଖେମୁଣ୍ଡି ଅଞ୍ଚଳରେ ନଥିଲେ । ତେଣୁ ଏଠାର ରାଜାମାନେ ଆବଶ୍ୟକତାନୁସାରେ ଉଭୟ ବୈଦିକ ଓ ଲୌକିକ ବ୍ରାହ୍ମଣମାନଙ୍କୁ ପାରଳାଖେମୁଣ୍ଡି ରାଜ୍ୟ ବାହାରୁ ଅଣାଇ ସେମାନଙ୍କୁ ଉପରୋକ୍ତ କାର୍ଯ୍ୟରେ ନିଯୁକ୍ତି ଦେଇ ନିଷ୍କର ଭୂମିବାଡ ଯୋଗାଇ ଦେଉଥିଲେ । ମନ୍ଦିର ପରିଚାଳନା ପାଇଁ ଲୌକିକ ବ୍ରାହ୍ମଣଙ୍କ ମଧ୍ୟରୁ ପରିଚ୍ଛା ନିଯୁକ୍ତ କରାଯାଉଥିଲା । ଏହି 'ପରିଚ୍ଛା' ପଦଟି ଏକ ଉପାଧି ଓ ନିଯୁକ୍ତି ଉଭୟକୁ ସୂଚାଏ । 'ପରିଚ୍ଛା' ଉପାଧି ଇତି ମଧ୍ୟରେ ଏକ ସଙ୍ଗ୍ୟାରେ ପରିଣତ ହୋଇଗଲାଣି । କେତେକଙ୍କ ମତରେ 'ପରୀକ୍ଷା' ଉପାଧି ପରିଚ୍ଛାରେ ପରିଣତ ହୋଇଛି । ଏ ସମ୍ପର୍କରେ ପରେ ଆଲୋଚନା କରାଯାଇଛି ।

ବର୍ତ୍ତମାନ ଯେଉଁ 'ପରିଚ୍ଛା' ସଙ୍ଗ୍ୟକ ବ୍ରାହ୍ମଣ ପାରଳାଖେମୁଣ୍ଡିରେ ବସବାସ କରୁଅଛନ୍ତି ସେମାନଙ୍କ ପୂର୍ବପୁରୁଷରେ ସଙ୍ଗ୍ୟା ଥିଲା ପଣ୍ଡା ବା ପାଣିଗ୍ରାହୀ । ସେମାନେ ଶିକ୍ଷିତ ଓ ସଂମ୍ଭ୍ରାନ୍ତ ଶ୍ରେଣୀରେ ଗଣ୍ୟ ହେଉଥିଲେ । ପାରଳାର ପରିଚ୍ଛା ସଙ୍ଗ୍ୟାଧାରୀ ସମସ୍ତ ବ୍ରାହ୍ମଣଙ୍କୁ ୩ ଗୋଟି ଗୋଷ୍ଠୀରେ ବିଭକ୍ତ କରାଯାଇପାରେ । ଗୋଟିଏ ଗୋଷ୍ଠୀ ଆଦିନାଟ୍ୟକାର କବିଚନ୍ଦ୍ର ରଘୁନାଥ ପରିଚ୍ଛାଙ୍କ ଜ୍ଞାତି । ଦ୍ୱିତୀୟ ଗୋଷ୍ଠୀଟି କବି ଗୌରହରି ପରିଚ୍ଛାଙ୍କ ଜ୍ଞାତି । ତୃତୀୟ ଗୋଷ୍ଠୀଟି ନାଟ୍ୟକାର, ନାଟ୍ୟ ନିର୍ଦ୍ଦେଶକ ଓ ଦେଶଭକ୍ତ ଆପନ୍ନା ପରିଚ୍ଛାଙ୍କ ଜ୍ଞାତି । ଏହି ୩ ପରିଚ୍ଛା ଗୋଷ୍ଠୀ - ଏକ ସଙ୍ଗ୍ୟାଧାରୀ ହୋଇଥିଲେ ସୁଦ୍ଧା କାହାର କାହା ସହ ଆନୁବଂଶିକ-ଶାଖା-ସମ୍ବନ୍ଧ ନାହିଁ ।

ରଘୁନାଥ ପରିଚ୍ଛାଙ୍କ ପୁରୁଷାନୁକ୍ରମିକ ସଙ୍ଗ୍ୟା ପଣ୍ଡା ଓ ଗୋତ୍ର କାଶ୍ୟପ । ଗୌରହରି ପରିଚ୍ଛାଙ୍କ ପୁରୁଷାନୁକ୍ରମିକ ସଙ୍ଗ୍ୟା ପାଣିଗ୍ରାହୀ ଓ ଗୋତ୍ର କାଶ୍ୟପ । ଆପନ୍ନା ପରିଚ୍ଛାଙ୍କ

ପୂର୍ବପୁରୁଷରେ ସଙ୍ଖାଥିଲା ପଣ୍ଡା ଓ ସେମାନଙ୍କ ଗୋତ୍ର ବତ୍ସସ । ଏହି ସମସ୍ତ ପରିଚ୍ଛା ହେଉଛନ୍ତି ହଳୁଆ ବ୍ରାହ୍ମଣ, ଭାଷାନ୍ତରେ ଏମାନେ ଲୌକିକ ବ୍ରାହ୍ମଣ ଭାବେ ମାନ୍ୟ । ଏମାନଙ୍କ ପୂର୍ବପୁରୁଷ ପାରଳାଖେମୁଣ୍ଡି ଆସିବା ପରେ ଗୌଡୀୟ ବୈଷ୍ଣବ ମତ ଗ୍ରହଣ କରି ରାଧାକୃଷ୍ଣଙ୍କୁ ନିଜ ନିଜର ମୁଖ୍ୟ ଉପାସ୍ୟ ଦେବତା ଭାବେ ଗ୍ରହଣ କରିଅଛନ୍ତି । ଆଧୁନିକ ଗଞ୍ଜାମ ଜିଲ୍ଲାର ଚିକିଟି ଅଞ୍ଚଳରୁ ଗୌରହରି ପରିଚ୍ଛା ଓ ମହୁରୀର ହଳଦିଆପଦର ଗ୍ରାମରୁ ଆପନ୍ନା ପରିଚ୍ଛାଙ୍କ ପୂର୍ବପୁରୁଷ ପାରଳାଖେମୁଣ୍ଡି ଆସିଥିବା ସେମାନଙ୍କ ଉତ୍ତରପୀଢ଼ିର ଲୋକଙ୍କଠାରୁ ଶୁଣାଯାଏ । କିନ୍ତୁ ରଘୁନାଥ ପରିଚ୍ଛାଙ୍କ ବଂଶ ନିଜକୁ କୁଳୀନ ଶାସନୀ ବ୍ରାହ୍ମଣ ବୋଲି ଦାବି କରିବା ସହ ସେମାନେ ଯାଜପୁର ଅଞ୍ଚଳର କୌଣସି ବ୍ରାହ୍ମଣ ଶାସନରୁ ଆସିଥିବା ପ୍ରକାଶ କରୁଅଛନ୍ତି । କେତେକ ଆଲୋଚକ ଏହି କଥାକୁ ହିଁ ମାନି ନେଇଛନ୍ତି । କିନ୍ତୁ ଏହାର ସମର୍ଥନରେ କୌଣସି ନିର୍ଭରଯୋଗ୍ୟ ପ୍ରମାଣ ମିଳୁନାହିଁ ।

ଆମେ ପୂର୍ବରୁ ଦର୍ଶାଇଅଛୁ ଯେ ବୌଦ୍ଧଧର୍ମର ପ୍ରଭାବରେ ଉତ୍କଳରେ ବୈଦିକ କର୍ମପାଇଁ ନୈଷ୍ଠିକ ବ୍ରାହ୍ମଣଙ୍କର ଅଭାବ ହେବାରୁ କାନ୍ୟକୁବ୍ଜରୁ ଦଶ ସହସ୍ର ବୈଦିକ ବ୍ରାହ୍ମଣ ଅଣା ହୋଇଥିଲେ । ବର୍ତ୍ତମାନ ଯେଉଁ ବୈଦିକ ବ୍ରାହ୍ମଣ ଆଧୁନିକ ଓଡ଼ିଶାରେ ବସବାସ କରୁଅଛନ୍ତି ସେମାନେ ସମସ୍ତେ କାନ୍ୟକୁବ୍ଜରୁ ଆନୀତ ବୈଦିକ ବ୍ରାହ୍ମଣ । ଏ ସମ୍ପର୍କରେ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ "ଓଡ଼ିଶାର ଇତିହାସ" ପୁସ୍ତକ ପୃ-୬୩ ରୁ ୬୪ ଦ୍ରଷ୍ଟବ୍ୟ । ସେଥିରେ ସନ୍ନିବେଶିତ ତଳ ଲିଖିତ ସଂସ୍କୃତ ଶ୍ଳୋକଟି ଏହି ଉକ୍ତିର ପ୍ରମାଣ ଦିଏ ।

"କନୌଜଦେଶାତ୍ ସ୍ୱୟମାହୁତା ଯେ ଦଶାଶ୍ୱମେଧାୟ ପୁରାବିଧାତ୍ରା ।
ମର୍ତ୍ତ୍ୟସ୍ଥିତାଃ ସ୍ୱର୍ଗଗତାଶ୍ଚ ବିପ୍ରା ସ୍ତେଭ୍ୟୋ ଦ୍ୱିଜେଭ୍ୟଃ ପ୍ରଦଦାମିଋର୍ଘ୍ୟଂ ।।"

ପରିଚ୍ଛା ବଂଶ ସମ୍ପର୍କରେ ସଠିକ ଧାରଣା ଦେବାକୁ ହେଲେ 'ପରିଚ୍ଛା', 'ପରୀକ୍ଷା', 'ପୂଜାରୀ', 'ପୂଝାରୀ' ସମ୍ପର୍କରେ ଆଲୋଚନା ଆବଶ୍ୟକ । ଡଃ ବେଣୀମାଧବ ପାଢ଼ୀ କବିଚନ୍ଦ୍ର ରଘୁନାଥଙ୍କ "ରାଧାମାଧବ ବିଳାସ"ର ଭୂମିକାରେ ଦର୍ଶାଇଅଛନ୍ତି ଯେ ରଘୁନାଥଙ୍କ ପୂର୍ବପୁରୁଷ ଲିହୁରୀ ଗୋପୀନାଥ ମନ୍ଦିରର ପରୀକ୍ଷଣ କାର୍ଯ୍ୟରେ ନିଯୁକ୍ତ ଥିଲେ । ତେଣୁ ସେମାନଙ୍କୁ ପରୀକ୍ଷା ଉପାଧି ପାରଳା ରାଜାଙ୍କ ପକ୍ଷରୁ ପ୍ରଦତ୍ତ ହୋଇଥିଲା । ପରେ ପରୀକ୍ଷା ଅପଭ୍ରଂଶ ହୋଇ ପରିଚ୍ଛା ହୋଇଥିବା ସେ ଦର୍ଶାଇଛନ୍ତି । ଅନ୍ୟ ପକ୍ଷରେ କବିଚନ୍ଦ୍ର ରଘୁନାଥ ଜଣେ ବୈଷ୍ଣବ ଭକ୍ତ ଓ ସେ ଉକ୍ତ ମନ୍ଦିରରେ ପୂଜାରୀ ଭାବେ କାର୍ଯ୍ୟ କରିଥିବା ମଧ୍ୟ ଡଃ ପାଢ଼ୀ ପ୍ରଦର୍ଶାଇ ଅଛନ୍ତି । ତେବେ 'ପରିଚ୍ଛା' ଓ ପରୀକ୍ଷା ଦୁଇଗୋଟି ସ୍ୱତନ୍ତ୍ର ପଦରେ ପ୍ରାଚୀନ ଓ ପରବର୍ତ୍ତୀ ଗଙ୍ଗମାନଙ୍କ ସମୟରୁ ବିଭିନ୍ନ ମନ୍ଦିରମାନଙ୍କରେ ନିଯୁକ୍ତି ପାଇଥିବାର

ଅନେକ ପ୍ରମାଣ ଦୃଷ୍ଟିପଥକୁ ଆସେ । ବିଭିନ୍ନ ତାମ୍ରପତ୍ର, ପ୍ରାଚୀନ ସାହିତ୍ୟ ତଥା ଇତିହାସ ପୋଥିରେ ମହାମାଣ୍ଡଳିକ, କଳିଙ୍ଗ ପରୀକ୍ଷା, କଳିଙ୍ଗ ସେନାପତି, ମନ୍ତ୍ରୀ, ମନ୍ଦିର ପରୀକ୍ଷା, ଦେଉଳ ପରିଛା, ପରିମାଣ୍ଡଳିକ, କର୍ମସଚିବ, ଦ୍ୱାରନାୟକ ପଦବୀ ଗୁଡ଼ିକ ଉଲ୍ଲେଖ ହୋଇଥିବା ଦେଖିବାକୁ ମିଳେ । ପ୍ରାଚୀନ ଉତ୍କଳ (ଜଗବନ୍ଧୁ ସିଂହ) ୨ୟ ଭାଗ ପୃଷ୍ଠା ୮୮, ୯୭, ୯୮, ୯୯, ୧୧୯ ଓ ୧୩୪ରୁ 'ପରୀକ୍ଷା', 'ଗଣପତି ପରୀକ୍ଷା' ପଦ ମନ୍ଦିରରେ ପ୍ରଚଳିତ ଥିବା ଜଣାଯାଏ । "ପରମହଂସ ବାଜପେୟୀ ପରୀକ୍ଷାଙ୍କୁ ନେଇ ପରମେଶ୍ୱରଙ୍କ ଭୋଗ ନିଯୋଗ କରାଇବେ । ପରୀକ୍ଷା ପରମେଶ୍ୱରଙ୍କୁ ଦର୍ଶନ କଲାପରେ ତଳିପାଳିଆ, ପଢ଼ିଆରୀ, ପରିଛାଙ୍କ ପଛେ ପଛେ ଥାଇ ତାଙ୍କ ହାତରୁ ପ୍ରସାଦ ନେଲା । ପରେ ପରିଛା ତିନିଟି ମଣ୍ଡପରେ ବେହରଣ କରି ଖଡି ବିଛଣା ପକାଇ ସମସ୍ତ ପ୍ରକରଣମାନଙ୍କ ଠାରୁ ଭୋଗ ନିଯୋଗ ଭଲ ମନ୍ଦ ବୁଝି ଭିଆଣ ପ୍ରମାଣେ ତୁଳପଳ ମାପକରି ନିଯୋଗ ଦର୍ଶାଇଲା । ଏଠାରୁ ଅଖଣ୍ଡ ପରିଛା ବଇଠା ଦେଖାଇ ସିଂହାସନ ତଳକୁ ନେଲା । ଶ୍ରୀପୁରୁଷୋତ୍ତମ ବଡଦେଉଳ ପରିଛାଙ୍କୁ ଛାମୁଚିଟାଉ ।" ଏହିପରି ଭାବରେ 'ପରୀକ୍ଷା' ଓ 'ପରିଛା' ଦୁଇଗୋଟି ସ୍ୱତନ୍ତ୍ର ପଦବୀ ପ୍ରଯୁକ୍ତ ସେବକମାନେ ଭିନ୍ନ ଭିନ୍ନ କାର୍ଯ୍ୟ କରୁଥିବା ଉପରୋକ୍ତ ଉଲ୍ଲେଖଗୁଡ଼ିକରୁ ପ୍ରମାଣିତ ହୁଏ । ତେଣୁ 'ପରିଛା' ଓ 'ପରୀକ୍ଷା' କେହି କାହାର ଅପଭ୍ରଂଶ ନୁହନ୍ତି । ଉଭୟ ମୂଳଶବ୍ଦ ବୋଲି ଆମର ଦୃଢ଼ଧାରଣା ।

ପାରଳାଖେମୁଣ୍ଡିର ଦକ୍ଷିଣ-ପୂର୍ବକୁ ଅବସ୍ଥିତ ଶ୍ରୀକୂର୍ମକ୍ଷେତ୍ର, ଯାହାକି ଏକଦା ପାରଳାଖେମୁଣ୍ଡି ଗଙ୍ଗବଂଶୀ ରାଜାମାନଙ୍କ ଅଧୀନସ୍ଥ ଥିଲା, ସେଠାରେ ମଧ୍ୟ 'ପରୀକ୍ଷା', 'ପରିଛା' ଏପରି ଦୁଇଗୋଟି ପଦ ପ୍ରଯୁକ୍ତ ସେବକ ନିଯୁକ୍ତ ଥିଲେ । ବିଭିନ୍ନ ପ୍ରାଚୀନ ଉଲ୍ଲେଖରେ ସେ ପଦଗୁଡିକ କିପରି ବ୍ୟବହୃତ ହେଉଥିଲା ତଳଲିଖିତ ଉଦ୍ଧୃତିଗୁଡ଼ିକ ତା'ର ପ୍ରମାଣ ଦିଏ । "– ଶ୍ରୀକୂର୍ମ ଭୋଗ ପରୀକ୍ଷା ଥିଲେ", "ଦୀକ୍ଷିତ ନରସିଂହ ଉପାଧ୍ୟାୟ କୂର୍ମ ମନ୍ଦିରର ପରୀକ୍ଷା", "କୂର୍ମ ଭୋଗ ପରୀକ୍ଷା ନରସିଂହ ଦାସ ପଣ୍ଡିତେ", "ହୀରାଦେବୀ ଗୋବିନ୍ଦଙ୍କ ପୁତ୍ର ସିଂଗନ ଗୁଣକାର କୂର୍ମଭୋଗ ପରୀକ୍ଷା ଦୋଳମଣ୍ଡପ କଲେ", "କଳିଙ୍ଗ ପରୀକ୍ଷା ସ୍ୱପ୍ନେଶ୍ୱର ମହାପାତ୍ରଙ୍କ ଭାର୍ଯ୍ୟା ସୀତା ଦେବୀ", "ଭୋଗ ପରୀକ୍ଷା ନରସିଂହ ଦାସ ପଣ୍ଡିତେ", "ମନ୍ଦିର ପରୀକ୍ଷା ନରହରି ମୁନିଶ୍ୱର", "ଛେତଗଙ୍ଗ କୂର୍ମ ନିବାସୀଙ୍କୁ ମନ୍ଦିର ପରିଛା କଲେ ।" ଏହି ଶବ୍ଦ ସନ୍ଦୋହ ମାଡ୍ରାସ ରେକର୍ଡରୁ ଆବିଷ୍କୃତ ହୋଇଅଛି । ଏସବୁ ପଟା ନଂ ୧୦୧୦ ରୁ ୧୨୩୩ ମଧ୍ୟରେ, ଶକାବ୍ଦ ୧୧୯୩ ରୁ ୧୩୪୪ ମଧ୍ୟରେ ପ୍ରଚଳିତ ଥିବା ପରିଦୃଷ୍ଟ ହୁଏ । ପୁରୀର ଶ୍ରୀମନ୍ଦିର ପରି ଓଡ଼ିଶାର ଏହି ଦକ୍ଷିଣ ଅଞ୍ଚଳରେ ମଧ୍ୟ 'ପରୀକ୍ଷା' ଓ 'ପରିଛା' ଦୁଇଗୋଟି ପଦବୀଯୁକ୍ତ ସେବକ ମନ୍ଦିର ପ୍ରାଶାସନିକ

କାର୍ଯ୍ୟରେ ନିଯୁକ୍ତ ଥିବାର ପ୍ରମାଣ ମିଳୁଛି । ସୁତରାଂ ପାରଳାଖେମୁଣ୍ଡିରେ ଯେଉଁ ୩ ଗୋଟି ଶାଖାର ପରିଚ୍ଛା ବଂଶ ବର୍ତ୍ତମାନ ବସବାସ କରୁଅଛନ୍ତି, ସେମାନେ 'ପରୀକ୍ଷା'ରୁ ଅପଭ୍ରଂଶ ହୋଇ ପରିଚ୍ଛା ହୋଇ ଯାଇଛନ୍ତି, ଏପରି କଳ୍ପନା କରିବାରେ କୌଣସି ଉପଯୁକ୍ତ କାରଣ ନାହିଁ । ଅପରନ୍ତୁ, ପାରଳାର ପରିଚ୍ଛା ବଂଶ ଆରମ୍ଭରୁ ଶିକ୍ଷିତ, ମାର୍ଜିତ ଓ ସେମାନେ ରାଜ କର୍ମଚାରୀ ଭାବେ ନିଯୁକ୍ତ ଥିଲେ । ତେଣୁ ଏମାନଙ୍କ ତୁଣ୍ଡରେ ନିଜ ବଂଶର ଆଭିଜାତିକ ଉପାଧିଟି, ଯାହାକୁ ସେମାନେ ସଞ୍ଜା ଭାବେ ନିତି ବ୍ୟବହାର କରୁଥିଲେ, ତାକୁ ଭୁଲଭାବେ କେବେ କହି କହି ଅପଭ୍ରଂଶ କରିଦେଇଥିବେ ଏପରି ଅନୁମାନ ଆଦୌ ଗ୍ରହଣୀୟ ନୁହେଁ, ବରଂ ତାହା ଅବିଶ୍ୱାସ୍ୟ । ତେଣୁ ପାରଳାଖେମୁଣ୍ଡିର ପରିଚ୍ଛା ସଞ୍ଜକ ବ୍ରାହ୍ମଣମାନେ ପୂର୍ବରୁ 'ପରିଚ୍ଛା' ବୋଲାଉଥିଲେ ଓ ବର୍ତ୍ତମାନ ମଧ୍ୟ ତାହା ଅକ୍ଷୁଣ୍ଣ ରହିଛି କହିବା ସମୀଚୀନ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଗଜପତି ପୁରୁଷୋତ୍ତମ ଦେବ କାଂଚି ବିଜୟରୁ ଫେରିବା ବେଳେ କାଂଚିର ସୈନ୍ୟମାନଙ୍କ ପ୍ରତ୍ୟାକ୍ରମଣରୁ ରାଜାଙ୍କୁ ରକ୍ଷା କରିବା ପାଇଁ ତାଙ୍କ ସହିତ ଥିବା "ଗୋଦାବର ମିଶ୍ର" ନାମକ ଜଣେ ବ୍ରାହ୍ମଣ ମନ୍ତ୍ର ବଳରେ ଗୋଦାବରୀ ନଦୀରେ କୃତ୍ରିମ ବନ୍ୟା ସୃଷ୍ଟିକରି କାଂଚି ସୈନ୍ୟଙ୍କର ପ୍ରତ୍ୟାକ୍ରମଣକୁ ପ୍ରତିହତ କରିଦେଇଥିଲେ । ଏଥିପାଇଁ ଗୋଦାବର ମିଶ୍ରଙ୍କୁ ଗୋଦାରୀ ବର୍ଦ୍ଧନ ମହାପାତ୍ର ଉପାଧି ପ୍ରଦାନ କରାଯାଇଥିଲା । ତେଣୁ ସେହିଦିନ ଠାରୁ ଶ୍ରୀମନ୍ଦିରରେ ବ୍ରାହ୍ମଣ ପରୀକ୍ଷା (ପରିଚ୍ଛା) ମାନଙ୍କୁ ନିଯୁକ୍ତି ମିଳିଥିଲା । ମାଦଳା ପାଞ୍ଜି - ଉତ୍କଳ ବିଶ୍ୱବିଦ୍ୟାଳୟ, ପୃଷ୍ଠା-୫୧, ସଂସ୍କୃତ ପୁସ୍ତକ ପାଣ୍ଡୁଲିପି ତାଲିକା ଭାଗ-୨ (୧୯୫୮), ଓଡ଼ିଶା ପ୍ରତ୍ନତତ୍ତ୍ୱାଗାର ଯାହାକି କେଦାରନାଥ ମହାପାତ୍ରଙ୍କ ଦ୍ୱାରା ସଂପାଦିତ, ମାଦଳାପାଞ୍ଜି (ଉତ୍କଳ ବିଶ୍ୱ ବିଦ୍ୟାଳୟ) ପୃ-୪୨ (୧୯୬୯) ଦ୍ରଷ୍ଟବ୍ୟ । ଉପର ବର୍ଣ୍ଣିତ ଗୋଦାବର ମିଶ୍ର ଏ ଲେଖକଙ୍କର ପୂର୍ବପୁରୁଷ, ଯିଏକି "ଗୋଦାବରୀ ବର୍ଦ୍ଧନ ମହାପାତ୍ର" ଉପାଧି ବ୍ୟବହାର କରୁଥିଲେ ଓ ଗଜପତିଙ୍କର ରାଜଗୁରୁ ନିଯୁକ୍ତ ହୋଇ ପରୀକ୍ଷା ଓ ପରିଚ୍ଛା ସେବା କରୁଥିଲେ ପୁରୀ ଶ୍ରୀମନ୍ଦିରରେ । ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ବିଭିନ୍ନ କାର୍ଯ୍ୟ ପାଇଁ ନିଯୁକ୍ତ ଥିବା ପରିଚ୍ଛାମାନଙ୍କର ଏକ ତାଲିକା ଏଠାରେ ପ୍ରଦତ୍ତ ହେଲା ।

(୧) ଦୋସନ୍ଧି ପରିଚ୍ଛା (ମାହାରୀଙ୍କୁ ଆକଟ କରିବା ପାଇଁ), (୨) ପରୀକ୍ଷା ସେବକ, (୩) ଭୋଗ ପରିଚ୍ଛା, (୪) ମଡ଼ଫୁଲି ପରିଚ୍ଛା, (୫) ରଥ ପରିଚ୍ଛା, (୬) ସୁଆଁସ ପରିଚ୍ଛା, (୭) ପରିଚ୍ଛାକରଣ, (୮) ପରୀକ୍ଷା ବଡ୍ଡୁ, (୯) ଭୋଗକରଣ ପରିଚ୍ଛା, (୧୦) ସଞ୍ଜୁଡ଼ି ପରିଚ୍ଛା ।

ପରିଚ୍ଛା ଓ ପରୀକ୍ଷା – ଏ ଉଭୟେ ଏକ ଏକ ମର୍ଯ୍ୟାଦାବନ୍ତ ସେବାକୁ ବୁଝାଏ । ପରିତଃ ଈକ୍ଷତେ ଅନୟା ଇତି ପରୀକ୍ଷା – ଅର୍ଥାତ୍ ତନ୍ନ ତନ୍ନ କରି ଦେଖିବା । ସାରଳା ମହାଭାରତର ବର୍ଣ୍ଣନା – "ମନ୍ତ୍ରୀ ଚୂଡ଼ାମଣି ସହଦେବ ଗୋରୁଙ୍କ ପରିଚ୍ଛା", ବଂଶୀଧର ମହାନ୍ତିଙ୍କ ମର୍ତ୍ତ୍ୟ ବୈକୁଣ୍ଠର ବର୍ଣ୍ଣନା ହେଲା – "ବିଷ୍ଣୁଙ୍କ କ୍ଷେତ୍ରରେ ଶିବ ପରିଚ୍ଛା ବୋଲାନ୍ତି/ ଶିବଙ୍କ କ୍ଷେତ୍ରରେ ବିଷ୍ଣୁ ପରିଚ୍ଛା ବୋଲାନ୍ତି" । ଗ୍ରୋମସଙ୍କ ବିବରଣୀ ପ୍ରକାରେ – "The authority of Parichhas in the temple was always absolute. But now from their inattention to their duties and want of superintendence of their conduct by the Ruling power no obedience whatever is paid to their orders. The consequence is that people go into the temple at times when they should not, and remain there when they ought to go."

ଗଙ୍ଗ ଶାସକମାନେ ପରିଚ୍ଛା ସେବକଙ୍କ ଉପରେ ସର୍ବାଧିକ ଗୁରୁତ୍ୱ ଦେଉଥିଲେ । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଏମାନଙ୍କର ଗୁରୁତ୍ୱ ବିଶେଷଭାବେ ଅନୁଭୂତ ହେଉଥିଲା । ତେବେ ଉତ୍କଳରୁ ଦକ୍ଷିଣାଞ୍ଚଳ ଛିନ୍ନ ହେବାପରେ ପରିଚ୍ଛା ବା ପରୀକ୍ଷାମାନେ ଏକାଧିକ କାର୍ଯ୍ୟ ପାଇଁ ନିଯୁକ୍ତି ପାଉଥିବା କେବଳ ଶ୍ରୀକୂର୍ମଠାରେ ପରିଲକ୍ଷିତ ହୁଏ । ଦକ୍ଷିଣାଞ୍ଚଳର ଅନ୍ୟ ମନ୍ଦିରମାନଙ୍କରେ ପ୍ରାୟତଃ ଗୋଟିଏ ମନ୍ଦିର ପାଇଁ ଜଣେମାତ୍ର ପରିଚ୍ଛା ବା ପରୀକ୍ଷା ନିଯୁକ୍ତ ହେଉଥିବାର ନଜିର ମିଳୁଛି ।

ଗଙ୍ଗବଂଶୀୟ ଜନୈକ ରାଜାଙ୍କ ନାମ ସହ 'ପରିଚ୍ଛା' ସଞ୍ଜ୍ଞା ବ୍ୟବହାର ହୋଇଥିବା ଓ ସେ ଭୀମ ପରିଚ୍ଛା ବୋଲାଉଥିବା ମାଦଳା ପାଞ୍ଜିରେ ଲେଖାଅଛି । ଏଠି ସ୍ମରଣୀୟ ଯେ ପାରଳାଖେମୁଣ୍ଡିର ଗଙ୍ଗବଂଶୀ ରାଜାମାନଙ୍କ ପୂର୍ବପୁରୁଷ ପୁରୀ ଶ୍ରୀମନ୍ଦିର ନିର୍ମାଣ କରିଥିଲେ । ପାରଳାଖେମୁଣ୍ଡିରୁ ରାଜା ଜଗନ୍ନାଥ ନାରାୟଣ ଦେବ (୨ୟ) ଯୁଦ୍ଧ ଅଭିଯାନ କରି ଗଜପତି ରାଜା ବୀରକିଶୋର ଦେବଙ୍କୁ ପରାସ୍ତ କରିବା ସହ ଶ୍ରୀଜଗନ୍ନାଥ ମନ୍ଦିରକୁ ମଧ୍ୟ ନିଜ ଅଧୀନକୁ ନେଇଯାଇଥିଲେ । ତେଣୁ ସେଠାରୁ ସେ ପ୍ରତ୍ୟାବର୍ତ୍ତନ କରିବା ପରେ ଶ୍ରୀମନ୍ଦିର ପରମ୍ପରା ପ୍ରକାରେ ନିଜ ରାଜ୍ୟର ମନ୍ଦିରମାନଙ୍କରେ ବ୍ରାହ୍ମଣ ପରିଚ୍ଛା ନିଯୁକ୍ତ କରିଥିବା ସମ୍ଭବ । ସେହି ଜଗନ୍ନାଥ ନାରାୟଣ ଦେବଙ୍କ ସମୟରେ ହିଁ ପାରଳାଖେମୁଣ୍ଡିରେ ଶ୍ରୀବିଗ୍ରହମାନ (ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ) ସ୍ଥାପିତ ହୋଇଥିଲେ । କୃଷ୍ଣଚରଣ ପଣ୍ଡାଙ୍କୁ ସେ ବଡ଼ପଣ୍ଡା ନିଯୁକ୍ତ କରି ନାମମାତ୍ର କରରେ ସୁରୁଜୁଣି ଗ୍ରାମରେ ଭୂମିଦାନ କରିଥିବା ତଳଲିଖିତ ତମ୍ବାପଟାରୁ ଜଣାଯାଏ ।



‘‘କୃଷ୍ଣଚରଣ ବଡପଣ୍ଡାଙ୍କୁ ଦେବା ପଟା ନିର୍ଣ୍ଣୟ ତୁମ୍ଭଙ୍କୁ ଯେ ପୂର୍ବ ତରଫ ସୁରୁଜୁଣି ମୁକାମ ଅନ୍ତର୍ଗତ ୫ ପାଞ୍ଚ ଗଡିଶା ଦେଇଣ ଆଜ୍ଞା ଅବଧାନ କଲାଇ ଯେଥୁକୁ ଆମ୍ଭ ସରକାରକୁ ଦେବାକୁ ଶ୍ରୋତ୍ରୀୟ ଟ୫ ପାଞ୍ଚ ଟଙ୍କା ଦେଇ ଯେ ଭୂମି ତୋ ପୁତ୍ର ପୌତ୍ରାଦି ପରଂପରାରେ ଯାବତ ଚନ୍ଦ୍ରାର୍କେ ଉତମ ସୁଖେଣ ଅନୁଭବ କରୁଥିବ । ଏଥିରେ ଆନ ଅବଧାନ ନାହିଁ । ଶଂ ଶ୍ରୀ ଶ୍ରୀ ସମୁଖ ଚିତ୍ରଭାନୁ ନାମ ସରମ୍ଭସର ଭାଦ୍ରପଦ ଶୁକ୍ର ୫କୁ’’

ଶ୍ରୀ ଶ୍ରୀ ବୀରଶ୍ରୀ ବୀରାଧିବୀରବର ଶ୍ରୀ ଗଜପତି ଶ୍ରୀ ଛତ୍ରପତି ଶ୍ରୀଜଗନ୍ନାଥ ଗଜପତି ନାରାୟଣ ଦେବ ମହାରାଜାଙ୍କର ଉପରୋକ୍ତ ଦାନପତ୍ରର କାଳ ଜ୍ୟୋତିଷଶାସ୍ତ୍ର ନିୟମରେ ଗଣନା କଲେ ସିଓଲଙ୍କ ମତାନୁସାରେ ତାଙ୍କ ରାଜତ୍ୱ ମେଳଖାଉଅଛି । ତେଣୁ ଜଗନ୍ନାଥ ନାରାୟଣ ଦେବ ହିଁ ପାରଳାଖେମୁଣ୍ଡିରେ ଜଗନ୍ନାଥଙ୍କ ବିଗ୍ରହ ସ୍ଥାପନ କରିଥିବା ସମ୍ଭବ । ଏହାଙ୍କ ସମୟରେ ମଠ ମନ୍ଦିରମାନଙ୍କରେ ପୁରୀ ଶ୍ରୀମନ୍ଦିର ପ୍ରଥାନୁସାରେ ସେବା ପୂଜା ଓ

ସେବକ ନିଯୁକ୍ତି ହୋଇଥିବା ଅନୁମେୟ । ତେଣୁ ପରିଛା ଓ ପରୀକ୍ଷା ସେବକ ନିଯୁକ୍ତିର ଆଦ୍ୟ ପ୍ରବର୍ତ୍ତକ ଜଗନ୍ନାଥ ନାରାୟଣ ଦେବ (୨ୟ) ହୋଇଥିବା ନିଶ୍ଚିତ ମନେ ହେଉଅଛି । ମନ୍ଦିର ପରୀକ୍ଷା, ମନ୍ଦିର ପରିଛା, ଭୋଗ ପରୀକ୍ଷା – ଏ ତିନି ପଦବୀ ମଧ୍ୟରେ ପ୍ରଥମ ଦୁଇ ପଦବୀର ସେବକ ଉଚ୍ଚତର ମନେହୁଏ । ମନ୍ଦିର ପରୀକ୍ଷା ବା ପରିଛା କାର୍ଯ୍ୟ ଅର୍ଥାତ୍ ମନ୍ଦିରର ସକଳ କାର୍ଯ୍ୟ ଅଧୀକ୍ଷଣ କରିବାର କ୍ଷମତାକୁ ବୁଝାଉଛି । ଯେଉଁ ସେବକ କେବଳ ଭୋଗ ପରୀକ୍ଷଣ କାର୍ଯ୍ୟ କରୁଥିଲେ ସେ ଭୋଗ ପରୀକ୍ଷା ବୋଲାଇ ଥିବେ ଓ ଯେ ମନ୍ଦିରର ସକଳ କାର୍ଯ୍ୟ ଅଧୀକ୍ଷଣ କରିବାର କ୍ଷମତା ପାଇଥିଲେ ସେ ମନ୍ଦିର ପରିଛା ବା ମନ୍ଦିର ପରୀକ୍ଷା ବୋଲାଉଥିବେ । ତେଣୁ ଏ ସବୁ ବିଚାରକୁ ନେଲେ ଜଣାଯାଏ ଯେ ସବୁ ପରିଛା ମନ୍ଦିର ପରିଛା ନୁହନ୍ତି । ତେବେ ଆମର ଆଲୋଚ୍ୟ ଆପନ୍ନା ପରିଛାଙ୍କ କ୍ଷେତ୍ରରେ ଏ ପରିଛା ପଦଟି ମନ୍ଦିର ପରିଛା ପଦ ସହ ସମାନ ମନେହୁଏ । କାରଣ ଆରମ୍ଭରୁ ଅର୍ଥାତ୍ କାଳିଆ ପରିଛାଙ୍କ ସମୟରୁ ଏମାନେ ପରିଛା ସଞ୍ଜ୍ଞା ବ୍ୟବହାର କରି ଆସୁଛନ୍ତି ଓ ଏକ ପ୍ରଧାନ ମଠରେ ମୁଖ୍ୟ ଭାବରେ ତାହା ପରିଚାଳନା କରିଆସୁଅଛନ୍ତି । ଏହି ଦୃଷ୍ଟି ଭଙ୍ଗୀରେ ଦେଖିଲେ ଅନ୍ୟ ଦୁଇ ପରିଛା ଗୋଷ୍ଠୀର ପୂର୍ବପୁରୁଷ ଯଥା ରଘୁନାଥ ପରିଛାଙ୍କ ପୂର୍ବପୁରୁଷ ଲିହୁରି ଗୋପୀନାଥ ମନ୍ଦିରର ପରିଛା ଭାବେ ଓ ଗୌରହରି ପରିଛାଙ୍କ ପୂର୍ବପୁରୁଷ ଗୋପିନୀ ସାହି ମଠର ପରିଛା ନିଯୁକ୍ତ ହୋଇଥିବା ସମ୍ଭବ । ଗୋପିନୀ ସାହିର ଗୌରହରି ପରିଛା ମଠ ସେମାନଙ୍କର ପୁରୁଷାନୁକ୍ରମିକ ମଠରେ ପରିଣତ ହୋଇଅଛି । 'ପରିଛା'ଙ୍କର କାର୍ଯ୍ୟରେ ବିଭିନ୍ନତା ଥିଲା । ଭିନ୍ନ ଭିନ୍ନ କାର୍ଯ୍ୟ ପାଇଁ ଭିନ୍ନ ଭିନ୍ନ ପରିଛା ନିଯୁକ୍ତ ହେଉଥିଲେ । ପୁରୀ ଶ୍ରୀମନ୍ଦିରରେ କି ପ୍ରକାର ପରିଛା ନିଯୁକ୍ତ ଥିଲେ, ତା'ର ଏକ ତାଲିକା ପୂର୍ବରୁ ପ୍ରଦାନ କରାଯାଇଛି ।

ପାରଳାଖେମୁଣ୍ଡିର ସାହିତ୍ୟ, ଆଧ୍ୟାତ୍ମିକ ସଂସ୍କୃତି, ସଙ୍ଗୀତ ଓ ନାଟକାଦି କ୍ଷେତ୍ରକୁ ଉପର୍ଯ୍ୟୁକ୍ତ ପରିଛା ବଂଶଗୁଡ଼ିକର ଅବଦାନ ଅଜସ୍ର । ରଘୁନାଥ ପରିଛା ପ୍ରଥମ ଓଡ଼ିଆ ନାଟ୍ୟକାର । ତାଙ୍କ ପୁତ୍ର ପଦ୍ମନାଭ ପରିଛା ଓ ମାମୁଁ ପଦ୍ମନାଭ ପରିଛା କାବ୍ୟ ଓ ଚୌପଦୀମାନ ରଚନା କରି ପାରଳାର ସଂସ୍କୃତିକୁ ଋଦ୍ଧିମନ୍ତ କରିଛନ୍ତି । ଗୌରହରି ପରିଛା ଓ ତାଙ୍କ ପରିବାର ମଧ୍ୟ ଗେୟ କବିତା ଓ ଅଜସ୍ର ଚୌପଦୀ ରଚନା କରି ପାରଳାର ବୈଷ୍ଣବ ସଂସ୍କୃତିକୁ ବହୁ ଭାବରେ ସମୃଦ୍ଧ କରିଯାଇଛନ୍ତି । ଗୌରହରି ଜୟଦେବଙ୍କ ଗୀତ ଗୋବିନ୍ଦ ଅବିକଳ ରାଗ, ତାଳ ଆଧାରରେ ଓଡ଼ିଆ ଅନୁବାଦ କରିଥିଲେ । ପ୍ରହ୍ଲାଦ ନାଟକରେ ସନ୍ନିବେଶିତ ଶୁଦ୍ଧ ସଂଗୀତ ସବୁ ଗୌରହରିଙ୍କ କୃତିତ୍ୱ । ଅନ୍ୟତମ ପରିଛା ପରିବାରର ଆପନ୍ନା ପରିଛା ଥିଲେ ଜଣେ ବହୁମୁଖୀ ପ୍ରତିଭାଧର ଉଜ୍ଜ୍ୱଳ ପୁରୁଷ । ଏହାଙ୍କ ସମ୍ପର୍କରେ ପରବର୍ତ୍ତୀ ପରିଚ୍ଛେଦରେ ବିସ୍ତୃତ ଆଲୋଚନା କରାଯାଇଛି ।



ଓଡ଼ିଆ ଜାତିର ଅଭୁଲା ସ୍ମୃତିସୌଧ ପରିଚ୍ଛା ମଠ

# ପରିଚ୍ଛା ମଠ

ପାରଳାଖେମୁଣ୍ଡି ସହରର ପଶ୍ଚିମକୁ ରହିଛି ରାଜଗୁରୁ ସାହି ଓ ସୁନାରିସାହି । ଏ ଦୁଇ ସାହିର ପଶ୍ଚିମମୁଣ୍ଡ ରାସ୍ତାର ଅପରପାର୍ଶ୍ୱରେ ଯେଉଁ ଦ୍ୱିତଳ ପ୍ରାସାଦ ଓ ତତ୍‌ସଂଲଗ୍ନ ମନ୍ଦିର ବିଦ୍ୟମାନ ତାହାର ସ୍ଥାନୀୟ ନାମ ପରିଚ୍ଛା ମଠ । ଏହା ମାଧ୍ୱଗୌଡୀୟ ପରମ୍ପରା ପୁଷ୍ଟ ଏକ ସ୍ୱନାମଧନ୍ୟ ପୁରାତନ ମଠ । ଏଥିରେ ଥିବା ମନୋରମ ମନ୍ଦିରଟିରେ ପ୍ରଭୁ ରସିକରାଜ-ଶ୍ରୀକୃଷ୍ଣ ଓ ଶ୍ରୀରାଧା ଲଳିତାଙ୍କ ସହ ବିରାଜମାନ କରୁଅଛନ୍ତି । ସରକାରୀ କାଗଜପତ୍ରରେ ଏ ମଠର ନାମ ଶ୍ରୀ ଶ୍ରୀ ଶ୍ରୀ ରସିକରାଜ ମହାପ୍ରଭୁ ସ୍ୱାମୀ ମଠ । ଏହି ମଠର ପ୍ରତିଷ୍ଠାତା ଆପନ୍ନା ପରିଚ୍ଛାଙ୍କ ପୂର୍ବପୁରୁଷ ଦାମୋଦର ପଣ୍ଡା ବୋଲି ପ୍ରାୟ ସମସ୍ତ ଆଲୋଚକ 'ମତ ପ୍ରକାଶ କରିଅଛନ୍ତି । ରାଜା ଜଗନ୍ନାଥ ନାରାୟଣ ଦେବଙ୍କ ସମୟରେ ଏହା ପ୍ରତିଷ୍ଠିତ ହୋଇଥିବା ମଧ୍ୟ ସମସ୍ତ ଆଲୋଚକ ମତ ପୋଷଣ କରିଛନ୍ତି । କିନ୍ତୁ, ବର୍ତ୍ତମାନ ଆମର ହସ୍ତଗତ ହୋଇଥିବା ତଥ୍ୟ ପାରଳାର ବିଭିନ୍ନ ରାଜାଙ୍କ ରାଜତ୍ୱକାଳ ସହ ସମ୍ପୃକ୍ତ ପରିଚ୍ଛା ବଂଶର ବଂଶଲତା ମିଳାଇ ଅନୁଧ୍ୟାନ କଲେ ଉକ୍ତ ଧାରଣା ଆଂଶିକ ଠିକ୍ ଥିବା ମନେ ହେଉଛି । ୧୮।

ଆପନ୍ନା ପରିଚ୍ଛାଙ୍କ ପରିବାରରୁ ସଂଗୃହୀତ ବଂଶଲତାରେ ପରଳାଖେମୁଣ୍ଡିରେ ସେମାନଙ୍କର ଆଦିପୁରୁଷଭାବେ କାଳିଆ ପଣ୍ଡାଙ୍କୁ ଦର୍ଶାଯାଇଅଛି । କାଳିଆ ପଣ୍ଡାଙ୍କ ପୁତ୍ର ଦାମୋଦରଙ୍କ ଠାରୁ ନାମ ସହ 'ପରିଚ୍ଛା' ଉପାଧିକୁ ସଞ୍ଜ୍ଞା ଭାବେ ଯୋଡା ହୋଇଅଛି । ଦାମୋଦରଙ୍କୁ ମିଶାଇ ତିନି ପୁରୁଷ ଗତ ହେବାପରେ ଆପନ୍ନା ପରିଚ୍ଛା ଭୂମିଷ୍ଟ ହୋଇଛନ୍ତି ।

ଆପନ୍ନାଙ୍କର ଜନ୍ମ ୧୮୭୮ ମସିହାରେ । ଆପନ୍ନାଙ୍କ ବ୍ୟତୀତ ତାଙ୍କ ପୂର୍ବବର୍ତ୍ତୀ ଅନ୍ୟ କୌଣସି ପୁରୁଷଙ୍କର ଜନ୍ମ ତାରିଖ ଅନୁପଲବ୍ଧ । ତେବେ ଆପନ୍ନା ପରିଚ୍ଛାଙ୍କ ସ୍ୱହସ୍ତ ଲିଖିତ ଏକ ଟିପ୍ପଣୀରୁ ଜଣାଯାଏ ଯେ କାଳିଆ ପଣ୍ଡା ତାଙ୍କର ଦ୍ୱାଦଶ ବର୍ଷର ପୁତ୍ର ଦାମୋଦରଙ୍କୁ ସଙ୍ଗରେ ନେଇ ମହୁରୀ ଜମିଦାରୀ ଅନ୍ତର୍ଗତ ହଳଦିଆପଦର ଗ୍ରାମରୁ ପାରଳାଖେମୁଣ୍ଡିକୁ ଆସିଥିଲେ । ରାଜ ଜଗନ୍ନାଥ ଦେବ(୨) ଦାମୋଦରଙ୍କୁ ପୁଅବ୍ରାହ୍ମଣ କରିଥିଲେ । କାଳିଆ ପଣ୍ଡା ରାଜ ପ୍ରୋତ୍ସାହନରେ ଗୋଟିଏ ଛୋଟିଆ ମଠ ନିର୍ମାଣ କରି ରସିକରାଜଙ୍କୁ ବିଜେ କରାଇଥିଲେ । ଦାମୋଦର ନାବାଳକ ଥିବାରୁ କାଳିଆ ପଣ୍ଡା ସେତେବେଳେ ମଠର ପରିଚ୍ଛା କାର୍ଯ୍ୟ ତୁଲାଇଥିବା ସମ୍ଭବ । କାଳିଆ ପଣ୍ଡା ସେତେବେଳେ ରାଜାଙ୍କଠାରୁ ଅଧିକାରପ୍ରାପ୍ତ ହୋଇ ନିଜ ବ୍ରାହ୍ମଣ କୁଳ ଶାଖାର ପରିଚ୍ଛା ଦାୟିତ୍ୱ ମଧ ତୁଲାଉଥିଲେ । ଆପନ୍ନା ପରିଚ୍ଛାଙ୍କ ଗୃହରୁ ସଂଗୃହୀତ ଏକ ଅତି ପୁରାତନ ଖାତାରୁ ପାରଳାଖେମୁଣ୍ଡିରେ ଥିବା ବିଭିନ୍ନ ମଠମାନଙ୍କୁ ରାଜପ୍ରଦତ୍ତ ଭୂମି ପଟାର ଏକ ନକଲ ଆମର ଦୃଷ୍ଟିକୁ ଆସିଛି । ସେହି ନକଲଟି ଅବିକଳ ଏଠାରେ ଉଦ୍ଧାର କରାଗଲା ।

"ସମସ୍ତ ଅ୨୧ଙ୍କ ପ୍ଲବଙ୍ଗ ନାମ ସମ୍ବତ୍ସର ମେ ସହ ୧୭ ତକ ବୈଶାଖ ଶୁ୭ ବୁଧବାରେ ଢି ପଞ୍ଚାଶନ୍ନାଠାଧିପ ଶ୍ରୀ ଅନ୍ତରଭିଗ୍ରଗଣ୍ୟ" ଅଶ୍ମ ଶ୍ରୀ ଗୁରୁ ଶ୍ରୀ ଶ୍ରୀ ମହନ୍ତ ଶ୍ରୀ ହରେ କୃଷ୍ଣ ଦାସ ଗୋସ୍ୱାମୀ ମହାପ୍ରଭୁଙ୍କ ଗୋଚରରେ ଦେବା ପଟା ନିର୍ଣ୍ଣୟ । ଆମ୍ଭ ରାଜଧାନୀ ମଧରେ ଯେତେ ମଠମାନେ ଅଛନ୍ତି ସେ ସମସ୍ତ ଶ୍ରୀ ଗୋସେଇଁ ମହାପ୍ରଭୁଙ୍କୁ ଗୋଚରରେ ଦେଇ ଆଜ୍ଞା କଲଇ ଯେ ଏଥକୁ ମଠ ଜନଙ୍ଗ । ଶ୍ରୀ ମଦନମୋହନ ମଠ, ବୃନ୍ଦାବନ ଦାସ ମଠ, ରସିକରାଇ ମଠ, ଦାମ ଅଧିକାରୀ ମଠ, ଖଞ୍ଜାବୋଗୀ ଘର ସ୍ମ (ସମ୍ମୁଖ) ଶ୍ୟାମ ସୁନ୍ଦର ମଠ, କାଳିଆ ପରିଚ୍ଛା ସମ୍ବନ୍ଧ ରସିକ ରାଇ ମଠ, ଥାଟ ରାଜାଘର ସମ୍ବନ୍ଧ ରସିକ କିଶୋର ମଠ, ଭଜନି ମଠ, ମନୋହର ଦାସ ସମ୍ବନ୍ଧ ଚୈତନ୍ୟ ମଠ, ମଧୁ ପାଣିଗ୍ରାହୀ ମଠ, ନରହରି ପାତ୍ର ମଠ, ଗୋବିନ୍ଦ ଦାସଙ୍କ ମଠ, ଅଲସନା ପୁଅ ବାସୁ ଦାସ ମଠ, ଦେଉଳ ମଠ, ନିମିଗାଆ ଠାକୁର ମଠ, ଅଣରାଶି ଠାକୁର ମଠ, ଲିହୁରୀ ଗୋପୀନାଥ ମଠ, ଗୁଲମୁର ଠାକୁର ମଠ, ରାଟେଣି ଠାକୁର ମଠ ମଧ । ଏତେ ମଠମାନଙ୍କୁ ସମର୍ପଣ କଲିଯେ ଏ ମଠମାନଙ୍କ ହାନି ଲାଭ ଆପଣ ବୁଝି ଆଜ୍ଞା ହେଉଥିବେ । ଶ୍ରୀ ବୀର ଶ୍ରୀ ବୀରାଧି ବୀରବର ଶ୍ରୀ ଗଜପତି ଶ୍ରୀ ଛତ୍ରପତି ଶ୍ରୀ ଗଜପତି ନାରାୟଣ ଦେବ ମହାରାଜାଙ୍କ ସମ୍ମତ ।

ଉପରୋକ୍ତ ପଟାରେ ଯେଉଁ ଗଜପତି ନାରାୟଣ ଦେବଙ୍କ ନାମୋଲ୍ଲେଖ କରାଯାଇଅଛି ସେ ହେଉଛନ୍ତି ଜଗନ୍ନାଥ ନାରାୟଣ ଦେବ (୨ୟ)ଙ୍କ ପୁତ୍ର ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ (୧ମ) । ପାରଳାଖେମୁଣ୍ଡିର ଏହି ରାଜା ଗଜପତି ଦେବ ଭାବରେ ଖ୍ୟାତ ଥିଲେ । 'ନାରାୟଣ' ପାରଳା ରାଜବଂଶ ବ୍ୟବହାର କରୁଥିବା ପଦ

ଅଟେ ଯେମିତି କି ବଡଖେମୁଣ୍ଡି ବଂଶ ଅନଙ୍ଗ ଭୀମ ପଦ ବ୍ୟବହାର କରନ୍ତି । ପଟାରେ ଲିଖିତ ସମୟର ପ୍ଳବଙ୍ଗ ଓ ଅନ୍ୟାନ୍ୟ କାଳ ନିରୂପକ ତଥ୍ୟ ଆଧାରରେ ଜ୍ୟୋତିଷୀ ଗଣନା କଲେ ଏହା ଖ୍ରୀ ୧୭୭୮ରେ ଲେଖା ହୋଇଥିବା ସ୍ପଷ୍ଟ ଭାବେ ଜଣା ଯାଉଅଛି । ଗଜପତି ଦେବଙ୍କ ଶାସନ କାଳ ୧୭୭୧ରୁ ୧୮୦୨ । ସୁତରାଂ ୧୭୭୮ ଖ୍ରୀଷ୍ଟାବ୍ଦରେ ଉକ୍ତ ଭୂମିଦାନ ପଟା ଦିଆଯାଇଛି ଗଜପତି ଦେବଙ୍କ ଦ୍ୱାରା । ଏଥିରେ ଯେଉଁ ୨୨ ଗୋଟି ମଠର ନାମ ଲେଖା ହୋଇଛି, ତନ୍ମଧରେ କାଳିଆ ପରିଚ୍ଛା ସମ୍ବନ୍ଧ ରସିକରାଈ ମଠ ଅନ୍ୟତମ । ଅର୍ଥାତ୍ ୧୭୭୮ ବେଳକୁ 'ରସିକରାଈ' ମଠ, ଯାହାର ପରବର୍ତ୍ତୀ ନାମ ରସିକରାଜ ମଠ, କାଳିଆ ପରିଚ୍ଛାଙ୍କ ଦ୍ୱାରା ପ୍ରତିଷ୍ଠା ହୋଇସାରିଥିଲା । କାଳିଆ ପରିଚ୍ଛା ସମ୍ବନ୍ଧ ବୋଲି ଲେଖା ଯାଇଥିବାରୁ ଏ ମଠକୁ କାଳିଆ ପରିଚ୍ଛା ପ୍ରତିଷ୍ଠା କରିଥିବା ପ୍ରମାଣିତ ହେଉଅଛି । ମଠର ନାମ ଲେଖିଲା ବେଳେ କାଳିଆ ପରିଚ୍ଛା ସମ୍ବନ୍ଧ ବୋଲି ଲେଖାଯିବାର ଅନ୍ୟ ଏକ କାରଣ ମଧ ରହିଛି । ସେହି କାରଣଟି ହେଉଛି ପାରଳାନଗରରେ 'ରସିକରାଈ' ମଠ ନାମରେ ଦୁଇଗୋଟି ମଠ ଅଛି । ଗୋଟିଏ ମଠ କରଣ ସାହିରେ ଓ ଅନ୍ୟଟି ରାଜଗୁରୁ ସାହିରେ ଅବସ୍ଥିତ । ତେଣୁ ପରିଚ୍ଛା ମଠକୁ ସ୍ପଷ୍ଟ ଭାବେ ଚିହ୍ନିତ କରିବା ପାଇଁ ମଠ ପ୍ରତିଷ୍ଠାତା କାଳିଆ ପରିଚ୍ଛାଙ୍କ ନାମ ମଠ ସହ ଯୋଡା ହୋଇଥିବା ଜଣା ପଡୁଛି । 'ରସିକରାଈ' ମଠ ଲେଖା ଯିବାର କାରଣ ହେଲା - ରସିକ ମାନେ କୃଷ୍ଣ, ରାଈ ମାନେ ରାଧା । ଅର୍ଥାତ୍ ରାଧାକୃଷ୍ଣ । ଉକ୍ତ ପଟାରେ ଲେଖାଥିବା ଅନ୍ୟାନ୍ୟ ପୁରାତନ ମଠଗୁଡ଼ିକର ନାମରେ ମଧ ସେଭଳି କେତେକ ପରିବର୍ତ୍ତନ ଘଟିଅଛି । ଯଥା - ବୃନ୍ଦାବନ ଦାସ ମଠ ପରିବର୍ତ୍ତେ ନୃସିଂହନାଥ ଓରଫ୍ ସାନ ରାଧାକାନ୍ତ ମଠ, ବିଷ୍ଣୁ ଦାସ ମଠ ପରିବର୍ତ୍ତେ ବଡ ବ୍ରାହ୍ମଣ ସାହିର ପାତ୍ର ମଠ, 'ଭଜନୀ' ମଠ ପରିବର୍ତ୍ତେ ଗୁଣ୍ଡିଚ୍ଛବାଡି ମଠ ଇତ୍ୟାଦି ।

ଆଲୋଚିତ ପଟାରେ ଗଜପତି ଦେବ କାଳିଆ ପରିଚ୍ଛା ସମ୍ବନ୍ଧ 'ରସିକରାଈ' ମଠ (ବର୍ତ୍ତମାନର ପରିଚ୍ଛା)କୁ ଭୂମିବାଡି ଖଞ୍ଜି ଦେଇଥିବାରୁ ସେହି ମଠର ପରିଚ୍ଛଳନା ପାଇଁ କାଳିଆ ପଣ୍ଡାଙ୍କୁ 'ପରିଚ୍ଛା' ଭାବେ ନିଯୁକ୍ତି ଦେଇଥିବା ସମ୍ଭବ ଓ ସେହି ସମୟରୁ କାଳିଆ ପଣ୍ଡା ଓ ତାହାଙ୍କ ଅନ୍ତେ ତାଙ୍କ ଔରସଦାରମାନେ 'ପରିଚ୍ଛା' ବୋଲାଉଥିବା ସ୍ପଷ୍ଟ ହୁଏ । ରାଜା ଭୂସମ୍ପତ୍ତି ଦେଇଥିବା ମଠ ଗୁଡ଼ିକର ହାନି ଲାଭ ବୁଝି ସମୟକୁ ସମୟ ବିହିତ ଆଦେଶ ପ୍ରଦାନ କରିବାକୁ ରାଜା ତାଙ୍କ ଗୁରୁ ହରେକୃଷ୍ଣ ଦାସ ଗୋସ୍ୱାମୀଙ୍କୁ ମଠ ଗୁଡ଼ିକୁ ସମର୍ପଣ କରିଦେଇଥିବା ଉପରୋକ୍ତ ପଟାରେ ଲେଖାଅଛି । କିନ୍ତୁ ସମୟକ୍ରମେ ସେଥିରେ ପରିବର୍ତ୍ତନ ଘଟି ପାରଳା ସହରରେ ଉକ୍ତ ପଟାଭୁକ୍ତ ସମସ୍ତ ମଠ ପୁରୁଷାନୁକ୍ରମିକ ପାରିବାରିକ ମଠରେ ପରିଣତ ହୋଇଯାଇଅଛି । ପରିଚ୍ଛା ପରିବାର ଦାମୋଦର ପଣ୍ଡାଙ୍କୁ ମଠ ପ୍ରତିଷ୍ଠାତା ଭାବେ ଉପସ୍ଥାପିତ କରୁଥିବାରୁ ହୁଏତ ମଠ ମଧସ୍ଥ ମନୋରମ ମନ୍ଦିରର ପ୍ରତିଷ୍ଠାତା ସେ ହୋଇ ପାରିଥାନ୍ତି । କିନ୍ତୁ ପରିଚ୍ଛା ମଠର ପ୍ରତିଷ୍ଠାତା ଭାବେ କାଳିଆ ପରିଚ୍ଛା ହିଁ ଗ୍ରହଣୀୟ ।

ପରିଛା ମଠର ପ୍ରାୟ ଏକ ଏକର ପରିମିତ ଜମିକୁ ଲାଗି ଏକ ପୋଖରୀ ଅଛି । ମନ୍ଦିର ବେଢ଼ା ଭିତରେ ଅଛି ଏକ ଅଶ୍ୱତ୍ଥବୃକ୍ଷ, ଯାହାକି ଅନେକ ଐତିହାସିକ ଘଟଣା ସହ ଓଡ଼ିଆ ଜାତିର ଉତ୍‌ଥାନ ପତନର ମୂକସାକ୍ଷୀ । ମଠର ବାହାର ବେଢ଼ାର ପ୍ରବେଶ ଦ୍ୱାରଟି ଅତ୍ୟନ୍ତ ପ୍ରଶସ୍ତ । ଦ୍ୱାରର ଉଭୟ ପାର୍ଶ୍ୱରେ ଥିଲା ଦୁଇଟି ସୁନ୍ଦର, ବଳିଷ୍ଠ ଓ ବିଶ୍ୱସ୍ତ ହସ୍ତୀଙ୍କର ପ୍ରତିମୂର୍ତ୍ତି, ଯାହାର ଧ୍ୱଂସାବଶେଷ ବର୍ତ୍ତମାନ ମଧ ଦୃଶ୍ୟମାନ । ଏଠିକାର ଗଜପତିଙ୍କ ରାଜନଅରର ଦ୍ୱାର ଦେଶରେ ଦୁଇଟି ସିଂହ ଦେଖିବାକୁ ମିଳେ । କିନ୍ତୁ ପରିଛାଙ୍କ ମଠର ଦ୍ୱାର ଦେଶରେ ଅଛନ୍ତି ଦୁଇଗୋଟି ହସ୍ତୀଙ୍କ ପ୍ରତିମୂର୍ତ୍ତି । ଏପରି କରିବା ଦ୍ୱାରା ପରିଛା ମଠର ପ୍ରବେଶ ଦ୍ୱାର ଏକ ଗଜଦ୍ୱାରର ମାନ୍ୟତା ପାଇଆସିଛି । ଗଜପତିଙ୍କର ସିଂହଦ୍ୱାର ଥିଲା ବେଳେ ପରିଛାଙ୍କ ମଠରେ ଗଜଦ୍ୱାର ରହି ପରିଛା ବଂଶର ଆଭିଜାତିକ ସ୍ପର୍ଦ୍ଧା ପ୍ରକାଶ କରୁଅଛି । ପାରଳା ରାଜା ଗଜପତି ଉପାଧିକୁ ନେଇ ନିଜର ସମ୍ଭ୍ରମତା ପ୍ରକାଶ କରୁଥିବାବେଳେ ପରିଛା ବଂଶ ନିଜ ମଠର ଦ୍ୱାରକୁ ଗଜଦ୍ୱାର ରୂପେ ପରିଚିତ କରାଇଥିଲେ ।

ଭାରତରେ ରାଜାମାନଙ୍କୁ ୪ ଶ୍ରେଣୀରେ ବିଭାଗ କରାଯାଏ; ଯଥା – ଗଜପତି, ଅଶ୍ୱପତି, ନରପତି ଓ ଛତ୍ରପତି । କିନ୍ତୁ, ପାରଳାଖେମୁଣ୍ଡିର ରାଜ ବିରୁଦାବଳୀ ଓ ପ୍ରଶସ୍ତି ପତ୍ରମାନଙ୍କରୁ ଜଣାଯାଏ ଯେ ସେମାନେ ନିଜକୁ ଗଜପତି ତଥା ଛତ୍ରପତି ଭାବେ ପରିଚିତ କରିଆସୁଛନ୍ତି । ସେମାନେ ସାଧାରଣତଃ ନିଜ ନାମ ସହ 'ଛତ୍ରପତି' ନଲେଖି କେବଳ 'ଗଜପତି' ଲେଖୁଥିବାରୁ ଗଜପତି ଉପାଧି ହିଁ ସେମାନଙ୍କର ମୁଖ୍ୟ ପରିଚୟ । ଏ ଗଜପତି ଉପାଧିକୁ ନେଇ ମଧ ଅନେକ ବିଭ୍ରାନ୍ତି ସୃଷ୍ଟି ହୁଏ । ଉତ୍କଳରେ ଗଙ୍ଗବଂଶ ରାଜତ୍ୱ ସମାପ୍ତ ହେବାପରେ ସୂର୍ଯ୍ୟବଂଶୀ ଶାସନ ଆରମ୍ଭ ହେଲା । ସେମାନଙ୍କ ସମୟରେ 'ଗଜପତି' ପଦବୀ ପ୍ରଥମ କରି ବ୍ୟବହୃତ ହୋଇଥିବା କେତେକ ଐତିହାସିକଙ୍କ ମତ । ଅନ୍ୟ କେତେକଙ୍କ ମତରେ କଳିଙ୍ଗ ସହ ଉତ୍କଳର ମିଶ୍ରଣ ପରଠାରୁ ହିଁ ଗଙ୍ଗମାନେ ଉତ୍କଳର ଗଜପତି ବୋଲାଉଥିଲେ । କିନ୍ତୁ 'ଗଜପତି' ପଦ ଗଙ୍ଗବଂଶରେ ତା'ର ବହୁଆଗରୁ ଚଳି ଆସୁଥିବା ନିମ୍ନଲିଖିତ ଆଲୋଚନାରୁ ସ୍ପଷ୍ଟ ହୁଏ :–

(୧) ମହାକୋଶଳ ଇତିହାସ ସମିତି ଦଲିଲ ୨ୟ ଭାଗ – ପୃଷ୍ଠା ୬୧ ରେ ପ୍ରକାଶିତ ନିମ୍ନୋକ୍ତ ଶିଳାଲିପିରୁ ଶେଷୋକ୍ତ ଯୁକ୍ତି ପ୍ରତି ସମର୍ଥନ ମିଳୁଅଛି ଓ ଏହାର ଉଲ୍ଲେଖ ସମ୍ବଲପୁର ଇତିହାସରୁ ଉପଲବ୍ଧ ।

"xxxxx ଶ୍ରୀ ରତ୍ନଦେବୋ ନୃପଃ ।
ଯଶ୍ଚୋଡ ଗଙ୍ଗନୃପତି କଳିଙ୍ଗ ଦେଶାଧିପଂ ଗଜାଧୀଶଂ
ସମିତିଂ ଜଟେଶ୍ୱର ଜନକଂ କନକାଶ୍ୱ ଗଜାନ୍ ଜିତବାନ୍ ।

(ସମ୍ବଲପୁର ଇତିହାସ – ଶିବପ୍ରସାଦ ଦାସ)

(୨) ନରସିଂହ ତାମ୍ର ଫଳକରୁ ଅନୂଦିତ ଏକ ପ୍ରଶସ୍ତି ପତ୍ରରୁ ଜଣାଯାଏ ଯେ ସେ ସିଂହାସନ ଆରୋହଣ କଲାପରେ ବୀରାସନରେ ଗଜପୃଷ୍ଠରେ ବସିଥିଲେ । ହୁଏତ ଏହା ସେମାନେ ପୂର୍ବରୁ ଗଜପତି ଥିବା କଥା ସୂଚାଉଅଛି ।

(୩) ଗଙ୍ଗବଂଶରେ ହସ୍ତୀବର୍ମନ ସଞ୍ଜ୍ଞା ବ୍ୟବହାର କରୁଥିବାର ପ୍ରମାଣ ଅଛି । ଏହି ସଞ୍ଜ୍ଞା ଗଙ୍ଗମାନଙ୍କ ପାରମ୍ପରିକ ପଦ ନ ହୋଇଥିଲେ ସେମାନେ କାହିଁକି ନିଜ ନାମସହ ଯୋଡ଼ିଥାନ୍ତେ ?

(୪) ମହୀଶୂରର ପାଶ୍ଚାତ୍ୟ ଗଙ୍ଗମାନଙ୍କ ସମୟରୁ ପ୍ରଚଳିତ ଏକ କିମ୍ବଦନ୍ତୀ ଅନୁଯାୟୀ କଳିଙ୍ଗ ଗଙ୍ଗମାନଙ୍କ ଆଦିପୁରୁଷ ଭଗଦତ୍ତ । ଏହାଙ୍କ ଭାଇଙ୍କ ନାମ ଶ୍ରୀଦତ୍ତ । ଏମାନଙ୍କ ପିତା ବିଷ୍ଣୁ ଗୁପ୍ତ ନିଜ ରାଜ୍ୟକୁ ନିଜ ପୁତ୍ରମାନଙ୍କ ମଧ୍ୟରେ ବଣ୍ଟନ କରିବା ଦ୍ୱାରା କଳିଙ୍ଗ ଭଗଦତ୍ତଙ୍କ ଭାଗରେ ଓ ହସ୍ତୀ ସହ ପୈତୃକ ରାଜ୍ୟଟି ଶ୍ରୀଦତ୍ତଙ୍କ ଭାଗରେ ପଡ଼ିଲା । ତେବେ ୟଂ ଚୁଂଙ୍କ ବିବରଣୀରୁ ଜଣାଯାଏ ଯେ ଦକ୍ଷିଣର ଶାସକମାନେ ଗଜପତି, ପଶ୍ଚିମର ଶାସକମାନେ ଅଶ୍ୱପତି ଓ ପୂର୍ବର ଶାସକମାନଙ୍କୁ ନରପତି କୁହାଯାଉଥିଲା । ଘଡ଼ୱଲ ଗୋବିନ୍ଦ ଚନ୍ଦ୍ର (୧ ୨ଶ ଶତାବ୍ଦୀ)ଙ୍କ inscriptions ପ୍ରକାରେ ଏହି ଗଜପତି, ଅଶ୍ୱପତି ଓ ନରପତି ଉପାଧି ଗୁଡ଼ିକ ରାଜତ୍ରୟାଧିପତି ବୋଲି ବିବୃତ ହୋଇଛି । ଉକ୍ତ କିମ୍ବଦନ୍ତୀ ସହ ଐତିହାସିକ ଟିପ୍ପଣୀରୁ ସୂଚନା ମିଳୁଛି ଯେ କଳିଙ୍ଗ ଗଙ୍ଗମାନଙ୍କ ପୂର୍ବପୁରୁଷ ଗଜପତି ଉପାଧି ବ୍ୟବହାର କରୁଥିଲେ ଓ ଅନ୍ତତଃ ୭ମ ଶତାବ୍ଦୀଠାରୁ ଏହା ପ୍ରଚଳିତ ଥିଲା ।

(୫) ପ୍ୟାରିମୋହନ ଆଚାର୍ଯ୍ୟଙ୍କ ଓଡ଼ିଶା ଇତିହାସରେ 'ଗଜପତି' ଉପାଧି ଗଙ୍ଗମାନଙ୍କ ପୂର୍ବପୁରୁଷରୁ ଚଳି ଆସିଥିବାର ଉଲ୍ଲେଖ ଅଛି ।

(୬) ଗଙ୍ଗମାନଙ୍କର ଗଙ୍ଗାରିଡ଼େର ରାଜା ମୂଳଭୂମି Xandramasଙ୍କର ୪୦୦୦ ଯୁଦ୍ଧହସ୍ତୀ ଥିଲେ ।

(୭) ପୂର୍ବ ଓ ପଶ୍ଚିମର ଗଙ୍ଗମାନେ ହସ୍ତୀ ଚିତ୍ରକୁ ଶାସନର ସଙ୍କେତ ଭାବେ ବ୍ୟବହାର କରୁଥିଲେ । ଦେବେନ୍ଦ୍ର ବର୍ମାଙ୍କ ବାଙ୍ଗାଲୋର ତାମ୍ର ଶାସନରେ ହସ୍ତୀ ସଙ୍କେତ ଅଙ୍କିତ ହୋଇଥିବାରୁ ପୂର୍ବ ଓ ପଶ୍ଚିମ ଉଭୟ ଅଞ୍ଚଳର ଗଙ୍ଗ ଶାସକମାନେ ହସ୍ତୀ ସଙ୍କେତ ବ୍ୟବହାର କରୁଥିବା ପ୍ରମାଣିତ ହେଉଛି ।

(୮) ମହାରାଜା ହସ୍ତୀବର୍ମାଙ୍କ ଶିକାକୋଲ ତାମ୍ର ଶାସନରେ ଶଙ୍ଖଚକ୍ର ସହ ହସ୍ତୀର ଗଣ୍ଡି ଅଙ୍କିତ ହୋଇଅଛି । ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଦେବ ଉତ୍କଳ ସିଂହାସନ ନିଜ ପରାକ୍ରମ ବଳରେ ଦଖଲ କଲାବେଳେ "ଶୌର୍ଯ୍ୟାସାଦିତ ଦନ୍ତିରାଜ ବିଭାବ ଭୂମଣ୍ଡଳା ଖଣ୍ଡଳୋ" ବୋଲି ବର୍ଣ୍ଣନା ଦେଖିବାକୁ ମିଳୁଛି ।

ଉପରଲିଖିତ ଆଲୋଚନାରୁ ଜଣାପଡୁଛି ଯେ ପାରଳାଖେମୁଣ୍ଡି ରାଜପରିବାର

ବ୍ୟବହାର କରୁଥିବା 'ଗଜପତି' ଉପାଧି ସେମାନଙ୍କର ବଂଶାନୁକ୍ରମିକ ଅଟେ ଯାହାକି କଳିଙ୍ଗସହ ଉତ୍କଳର ମିଶ୍ରଣ ହେବା ପୂର୍ବରୁ ସେମାନେ ବ୍ୟବହାର କରି ଆସୁଛନ୍ତି । ତେବେ, ନିୟମିତଭାବେ ଗଜପତି ଉପାଧି ୧୩୮୯ ଖ୍ରୀ.ରୁ ବ୍ୟବହାର ହେଉଥିବା ଡଃ.ହରେକୃଷ୍ଣ ମହତାବଙ୍କ ଓଡ଼ିଶା ଇତିହାସ - ପୃ. ୧୯୬ରୁ ସ୍ପଷ୍ଟ ହୁଏ ।

ତାତ୍‌କାଳିକ ସାମାଜିକ ବ୍ୟବସ୍ଥାରେ ରାଜା ବ୍ୟବହାର କରୁଥିବା କୌଣସି ନିଶାଣ ବା ପଦବୀକୁ କେହି ପ୍ରଜା ବ୍ୟବହାର କରିବା ଏକ ବର୍ଜିତ କାର୍ଯ୍ୟ ଭାବେ ଗଣ୍ୟ ହେଉଥିଲା । ତଥାପି ପରିଛା ପରିବାର ନିଜ ମଠରେ ଗଜଦ୍ୱାର ନିର୍ମାଣ କରିଥିବା ଏକ ଉଲ୍ଲେଖଯୋଗ୍ୟ ଉଦାହରଣ । ପରିଛା ମଠର ମୁଖ୍ୟ ଫାଟକ ଠାରୁ ପୂର୍ବ ପଶ୍ଚିମଭାବେ ଦକ୍ଷିଣ ଶ୍ରେଣୀରେ ଲମ୍ବିଥିଲା ଏକ ଛାତ୍ରାବାସ । ଶୁଣାଯାଏ, ଆଠଗୋଟି ପ୍ରଶସ୍ତ କୋଠରୀ ଛାତ୍ରବାସ ଭାବେ ବ୍ୟବହୃତ ହେଉଥିଲା । ବର୍ତ୍ତମାନ ଛାତ୍ରାବାସ ନାହିଁ, ଅଛି କେବଳ ତା'ର ଧ୍ୱଂସାବଶେଷ । ମଠ ପରିସରରେ ଅଛି ଏକ ମନୋରମ ମନ୍ଦିର । ଏହାର ଗାଠନିକ ଶୈଳୀରୁ ଜଣାଯାଏ ଯେ ଏହା ଏକ ରେଖଦେଉଳ । କାରଣ ଦେଉଳଟି ବିଶେଷ ଉଚ୍ଚ ନହେଲେ ମଧ ଗେଡା ନୁହେଁ । ଏହାର ଆକୃତି ଶିବଲିଙ୍ଗ ସଦୃଶ । ଏଥିରେ ଥିବା ଗର୍ଭଗୃହଟି ଚତୁରସ । ପ୍ରତି ବାହୁର ଲମ୍ବ ୧୩ ଫୁଟ ୬ ଇଞ୍ଚ । ଦେଉଳର ସମ୍ମୁଖ ଭାଗରେ ରହିଛି ଜଗମୋହନ । ଏହା ଅନୁଚ୍ଚ ଓ ଏହାର ଭିତରଟା ଏକ ଆୟତାକାର କ୍ଷେତ୍ର । ଦେଉଳର ପୀଠ ଦେବତା ରାଧାକୃଷ୍ଣ ହୋଇଥିବାରୁ ଏହାକୁ ଶକ୍ତିପୀଠ କୁହାଯାଇ ପାରିବ ନାହିଁ । ଖାକରା ଦେଉଳର କୌଣସି ଲକ୍ଷଣ ମଧ ଏଥିରେ ନାହିଁ । କିନ୍ତୁ କେହି କେହି ଆଲୋଚକ ଏହି ମନ୍ଦିରକୁ ଖାକ୍ରା ଶୈଳୀର କହିଥିବାରୁ ଆମେ ସେମାନଙ୍କ ସହ ମତୈକ୍ୟ ପ୍ରତିଷ୍ଠା କରିବା ସମ୍ଭବ ହେଉନାହିଁ । ମନ୍ଦିରର ମୁଖ୍ୟ ପ୍ରବେଶ ଦ୍ୱାର ତୋରଣ ଉପରକୁ ଅଛି ପ୍ରସ୍ତର ନିର୍ମିତ ନବଗ୍ରହ ପାଟ । ତୋରଣକୁ ଧରି ରଖିଥିବା ଉଭୟ ଖମ୍ବରେ ପ୍ରସ୍ତର ନିର୍ମିତ ଜୟ ବିଜୟ ପ୍ରତିମା ଦ୍ୱାରପାଳ ରୂପେ ଦଣ୍ଡାୟମାନ । ଜୟ ବିଜୟଙ୍କ ଉଭୟ ପାର୍ଶ୍ୱରେ ଅଛନ୍ତି ଦଶାବତାର ବିଗ୍ରହ । ଏ ବିଗ୍ରହ ଗୁଡ଼ିକ ପ୍ରସ୍ତର ନିର୍ମିତ ଓ ଅତୀବ କମନୀୟ । ସାଧାରଣତଃ ୯ମ ଅବତାରର ବୁଦ୍ଧଙ୍କ ବିଗ୍ରହ ଅନ୍ୟାନ୍ୟ ମନ୍ଦିରମାନଙ୍କରେ ସ୍ଥାନିତ ହୋଇଥାନ୍ତି । କିନ୍ତୁ ଏଠାରେ ସେଥିର ବ୍ୟତିକ୍ରମ ପରିଦୃଷ୍ଟ । ପରିଛା ମଠସ୍ଥ ଏହି ରାଧାକୃଷ୍ଣ ମନ୍ଦିରରେ ଜଗନ୍ନାଥ ବିରାଜମାନ କରୁଛନ୍ତି ୯ମ ଅବତାର ରୂପେ ।

ମନ୍ଦିରର ତିନି ପାର୍ଶ୍ୱରେ ଥିବା ଗାତ୍ର ଦେହରେ ପାରମ୍ପରିକ ଭାବେ ଶାସ୍ତ୍ର ସମ୍ମତ ପାର୍ଶ୍ୱଦେବତାଗଣ ବିରାଜମାନ କରୁଅଛନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ସ୍ୱଳ୍ପ ସଂଖ୍ୟକ ମିଥୁନ ଓ ମୈଥୁନ ପ୍ରତିମା । ଇନ୍ଦ୍ରଙ୍କ ବଜ୍ରାଘାତରୁ ମନ୍ଦିରକୁ ରକ୍ଷା କରିବା ପାଇଁ ଏ ପରମ୍ପରାର ସୃଷ୍ଟି । କାରଣ ମୈଥୁନରତ ପ୍ରାଣୀମାନଙ୍କୁ ଆଘାତ ବା ସଂହାର କରାଯିବା ବିଧେୟ ନୁହେଁ । ଜଗମୋହନଟି ତିନି ଦ୍ୱାର ବିଶିଷ୍ଟ । ବୈଷ୍ଣବୀୟ ମଠ ମନ୍ଦିରର

ଗାଠନିକ ପରମ୍ପରା ରକ୍ଷାପୂର୍ବକ ଜଗମୋହନର ୪ କୋଣଠାରୁ ସମାନ ଦୂରତା ରକ୍ଷାକରି ନିର୍ମାଣ କରାଯାଇଛି ୪ ଗୋଟି ସୁଶୋଭିତ ନାନା କାରୁକାର୍ଯ୍ୟ ମଣ୍ଡିତ ସ୍ତମ୍ଭ । ଜଗମୋହନର ଭିତର ପାର୍ଶ୍ୱ କାନ୍ଥରେ ନାନା ବର୍ଣ୍ଣ ବିଭାରେ ପାରଳା ଚିତ୍ରକାରମାନଙ୍କ ଦ୍ୱାରା ପ୍ରସ୍ତୁତ ପ୍ରତିମା ଚିତ୍ରଗୁଡ଼ିକ ଶୋଭା ପାଉଅଛି । ପାରଳା ରାଜନଅରର କାନ୍ଥ ଚିତ୍ର ସହ ଏଠିକାର କାନ୍ଥ ଚିତ୍ରର ସାଦୃଶ୍ୟ ଦେଖିବାକୁ ମିଳେ । ଜଗମୋହନକୁ ଲାଗି ଗର୍ଭଗୃହ । ତା' ଭିତରେ ପୀଠ ଦେବତାଙ୍କ ଆସ୍ଥାନ । ମନ୍ଦିର ଛାତର ତଳଭାଗ ଚିତ୍ରିତ । ରେଖ ଦେଉଳ ଶୈଳୀରେ ନିର୍ମିତ ମନ୍ଦିରରେ ୩ ଗୋଟି ମୁଦ ଥାଏ । ପ୍ରତି ମୁଦ ପରସ୍ପରଠାରୁ ଅଭିନ୍ନ ଭାବେ ଗୋଟିକ ପରେ ଗୋଟିଏ ରହିଥାଏ । ଏଠାରେ ମଧ ସେହି ଏକା ପରମ୍ପରା ଅନୁସୃତ । ନିମ୍ନ ଭାଗରେ ଧାନମୁଦ, ମଧଭାଗରେ ବାଲିମୁଦ ଓ ଉପରି ଭାଗରେ ରତ୍ନମୁଦ । ତା'ପରେ ବେକି, ବେକି ଉପରେ ଅଁଳାଶ୍ରୀ, ତା' ଉପରେ କଳସ ଓ ସବା ଉପରକୁ ସୁଦର୍ଶନ ଚକ୍ର । ରେଖ ଦେଉଳର ଏହି ସମସ୍ତ ପାରମ୍ପରିକ ଶୈଳୀ ଉକ୍ତ ମନ୍ଦିରରେ ତ୍ରୁଟିଶୂନ୍ୟଭାବେ ପାଳିତ ହୋଇଛି ।



(ମନ୍ଦିରର ଜଗମୋହନର କାନ୍ଥରେ ଅଙ୍କିତ ଚିତ୍ର)

ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ଏକ ଅପ୍ରଶସ୍ତ ଅଗଣା । ଏକ ବିଶାଳ ଧାନଘର ଉକ୍ତ ଅଗଣାର ପୂର୍ବ ତରଫକୁ ଥିଲା । ବର୍ତ୍ତମାନ ଧାନଘର ମେଲା ହୋଇଗଲାଣି । ମନ୍ଦିରର ସମ୍ମୁଖ ଭାଗରେ କିଂଚିତ୍ ଦକ୍ଷିଣକୁ ଅଛି ଏକ ସମକୋଣୀ କଲ୍ୟାଣ ମଣ୍ଡପ । ଏହା କ୍ଷୁଦ୍ର ହେଲେ ମଧ ଆକର୍ଷଣୀୟ । ପରିଚ୍ଛା ପରିବାରର ବ୍ରତ, ବିବାହାଦି ଶୁଭ କାର୍ଯ୍ୟ ସକଳ ଏଠାରେ ସମ୍ପାଦିତ ହୁଏ । କଲ୍ୟାଣ ମଣ୍ଡପର ପୃଷ୍ଠଭାଗକୁ ଥିବା ଦ୍ୱିତଳ ପ୍ରାସାଦର

ପ୍ରଥମ ମହଲାଟି ମଠର ଭଣ୍ଡାର ଘର, ଉପର ମହଲାଟି ଏକ ପାଠାଗାର । ଏହାଥିଲା ଓଡ଼ିଶାର ଅନେକାନେକ ମନୀଷୀଙ୍କର ସ୍ୱଳ୍ପକାଳୀନ ବିଶ୍ରାମ କକ୍ଷ ଓ ସ୍ୱତନ୍ତ୍ର ଓଡ଼ିଶା ଗଠନ ତଥା ସ୍ୱାଧୀନତା ଆନ୍ଦୋଳନର ଏକ ଚାରଣ ଭୂମି । ପାଠାଗାରରେ ସହସ୍ର ସଂଖ୍ୟାରେ ଉପାଦେୟ ବଙ୍ଗଳା, ହିନ୍ଦୀ, ସଂସ୍କୃତ, ଇଂରାଜୀ ଓ ଓଡ଼ିଆ ବହି ଥିଲା । ଆପନ୍ନା ପରିଚ୍ଛାଙ୍କର ଏହା ଥିଲା ସାଧନାପୀଠ ତଥା ମନ୍ତ୍ରଣାକକ୍ଷ । ଏବେ ମଧ୍ୟ ଅନେକ ଉପାଦେୟ ବଙ୍ଗଳା ବହି ଉକ୍ତ ପାଠାଗାରରେ ସୁରକ୍ଷିତ ଅଛି । ଆପନ୍ନାଙ୍କ ପଣିନାତି ଚିତ୍ରଶିଳ୍ପୀ ମୁରଲୀ ପରିଚ୍ଛା ପାଠାଗାରର ରକ୍ଷଣାବେକ୍ଷଣ କରୁଛନ୍ତି ।

ମନ୍ଦିରର ବାହାର ବେଢ଼ା ମଧ୍ୟରେ ଗଜଦ୍ୱାରକୁ ଲାଗି ଯେଉଁ ଛାତ୍ରାବାସଟି ଥିଲା, ସେଥିରେ ଅବିଭକ୍ତ ଗଞ୍ଜାମ ଜିଲ୍ଲାର ଦୂରଦୂରାନ୍ତରୁ ଅଧ୍ୟୟନ ପାଇଁ ଆସୁଥିବା ଛାତ୍ରମାନଙ୍କ ପାଇଁ ବିନା ଶୁଳ୍କରେ ବାସଗ୍ରାସର ବ୍ୟବସ୍ଥା କରାଯାଉଥିଲା । ପ୍ରାକୃତିକ ଓଡ଼ିଶାର ଏକ ପ୍ରଧାନ ଶିକ୍ଷାକ୍ଷେତ୍ର ଭାବେ ଗଢ଼ିଉଠିଥିଲା ପାରଳାଖେମୁଣ୍ଡି । ଏଠାରେ ସାଧାରଣ ଉଚ୍ଚଶିକ୍ଷାର ପର୍ଯ୍ୟାପ୍ତ ସୁବିଧା ସହ ସଂସ୍କୃତ ଶିକ୍ଷା ପାଇଁ ଉପଯୁକ୍ତ ବ୍ୟବସ୍ଥା ଥିଲା । ସେତେବେଳେ କଲେଜ କହିଲେ ରେଭେନ୍‌ସା, ଖଲ୍ଲିକୋଟ (ବ୍ରହ୍ମପୁର) ଓ ପାରଳାଖେମୁଣ୍ଡିକୁ ବୁଝାଉଥିଲା । ସେହିପରି ଆଙ୍ଗୁଠି ଗଣିତା ହାଇସ୍କୁଲ ମଧ୍ୟରେ ପାରଳାଖେମୁଣ୍ଡିର ମହାରାଜାଙ୍କ ହାଇସ୍କୁଲ ଥିଲା ଅନ୍ୟତମ । ଏଠାକୁ ବହୁ ସଂଖ୍ୟାରେ ଛାତ୍ର ଅଧ୍ୟୟନ ପାଇଁ ଆସୁଥିଲେ । ମହାରାଜାଙ୍କ ପକ୍ଷରୁ ଗରିବ ଛାତ୍ରଙ୍କ ପାଇଁ କେତେକ ସ୍ୱତନ୍ତ୍ର ସୁବିଧା ଥିବା ସତ୍ତ୍ୱେ ତାହା ସମସ୍ତଙ୍କୁ ମିଳିପାରୁନଥିଲା । ତେଣୁ ସେଥିରୁ ବଂଚିତ ଛାତ୍ରମାନଙ୍କ ଦାୟିତ୍ୱ ବହନ କରୁଥିଲେ ପାରଳାଖେମୁଣ୍ଡିର ଦୁଇଟି ପ୍ରଧାନ ମଠ, ଗୋଟିଏ ବଡ ରାଧାକାନ୍ତ ମଠ ଓ ଅନ୍ୟଟି ପରିଚ୍ଛା ମଠ । ଉଭୟ ମଠର ପରିଚାଳକ ଥିଲେ ଆପନ୍ନା ପରିଚ୍ଛା । ବଡ ରାଧାକାନ୍ତ ମଠରେ ରାଜାଙ୍କର ତାତ୍‌କାଳୀନ ଗୁରୁ ରାଧାକୃଷ୍ଣ ଦାସ ଥିଲେ ଅତ୍ୟନ୍ତ ଉଦାରମନା ବ୍ୟକ୍ତି । ମଠର ସକଳ କାର୍ଯ୍ୟ ପରିଚାଳନାରେ ସେ ପରିଚାଳକ ଆପନ୍ନା ପରିଚ୍ଛାଙ୍କ ଉପରେ ନିର୍ଭର କରୁଥିଲେ । ତେଣୁ ସେ ଆପନ୍ନା ପରିଚ୍ଛାଙ୍କ ପରାମର୍ଶରେ ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ତରରେ ଅଧ୍ୟୟନ ପାଇଁ ଆସୁଥିବା ଅନେକ ମେଧାବୀ ତଥା ଗରିବ ଛାତ୍ରଙ୍କ ପାଇଁ ବଡ ରାଧାକାନ୍ତ ମଠକୁ ଉନ୍ମୁକ୍ତ ରଖୁଥିଲେ । ଏଣେ ପରିଚ୍ଛା ମଠରେ ତ ଛାତ୍ରମାନଙ୍କ ରହଣି ପାଇଁ ସ୍ୱତନ୍ତ୍ର ଛାତ୍ରାବାସ ଥିଲା । ଛାତ୍ରମାନେ ପରିଚ୍ଛା ମଠରେ ରହି ଅଧ୍ୟୟନ କରିବା ସହ ଚରିତ୍ର ଗଠନ ପାଇଁ ବିଶେଷ ସୁଯୋଗ ପାଉଥିଲେ ।

ମନ୍ଦିରର ମୁଖ୍ୟ ତୋରଣଟି ଥରେ ଦେଖିଲେ ପୁଣି ଦେଖିବାକୁ ଇଚ୍ଛା ହୁଏ । କବିଙ୍କ ଭାଷାରେ – "ସୁନ୍ଦର ତୃପ୍ତିର ଅବସାଦ ନାହିଁ ଯେତେ ଦେଖୁଥିଲେ ନୂଆ ଦିଶୁଥାଇ" । ଏହାର ବାମ ପାର୍ଶ୍ୱରେ ଅବସ୍ଥିତ ଝୁଲଣ ମେଲା । ପାରଳାଖେମୁଣ୍ଡିର

ପ୍ରାୟ ପ୍ରତ୍ୟେକ ମଠରେ ଏକ ବା ଏକାଧିକ ମେଲା ଦେଖିବାକୁ ମିଳେ । ମେଲାଗୁଡ଼ିକର ଆକାରରୁ ସେଗୁଡିକୁ ଏକ ଏକ ପ୍ରଶସ୍ତ ବାରଣ୍ଡା କୁହାଯାଇପାରେ । ଏଗୁଡ଼ିକ ଝୁଲଣ ମେଲା, ଚିତ୍ରମେଲା ଏପରି ବିଭିନ୍ନ ନାମରେ ନାମିତ । ପରିଚ୍ଛା ମଠରେ ଅଛି ଏକ ପ୍ରକାଣ୍ଡ ଝୁଲଣ ମେଲା । ଏହାର ଗଠନ ପରିପାଟୀ ଅନ୍ୟାନ୍ୟ ମଠର ମେଲାଗୁଡ଼ିକ ଠାରୁ ଭିନ୍ନ ଧରଣର । ଏହି ମଠର ଝୁଲଣ ମେଲାଟି ୪ ଗୋଟି ଆର୍ଚ (Arch) ଦ୍ୱାରା ବିଭାଜିତ । ମଠର ପର୍ବପର୍ବାଣି ସମୟରେ ବିଭିନ୍ନ ବେଶରେ ଏଠାରେ ଠାକୁର ବିଜେ ହୁଅନ୍ତି ।

କଲ୍ୟାଣ ମଣ୍ଡପର ସାମାନ୍ୟ ଆଗରେ ରହିଛି ରାସ ମଣ୍ଡପ । ଏହାର ସମ୍ମୁଖ ଭାଗଟି ଏକ ମୁକ୍ତ ପ୍ରେକ୍ଷାଳୟ ଭାବେ ବ୍ୟବହୃତ ହେଉଥିଲା । ରାସ ମଣ୍ଡପଟି ରାସଯାତ୍ରା ତଥା ନାଟକ ଉଭୟ କାର୍ଯ୍ୟ ପାଇଁ ବ୍ୟବହୃତ ହେଉଥିଲା । ଏହି ରାସ ମଣ୍ଡପଟି ଦେଖିବାକୁ ସାଧାସିଧା, କିନ୍ତୁ ଏହା ପଛରେ ଛପି ରହିଚି ଓଡ଼ିଶାର ରଙ୍ଗମଂଚ ଆନ୍ଦୋଳନର ଅନେକ ମରମ ଗାଥା । ଆପନ୍ନା ପରିଛାଙ୍କ 'ନବାନୁରାଗ', ସିଂହାଦ୍ରି ପରିଛାଙ୍କ 'ନବୋଢ଼ଣ୍ଡା', ସତ୍ୟନାରାୟଣ ରାଜଗୁରୁଙ୍କ ରାଧାଭିଷେକ ଇତ୍ୟାଦି ଅନେକ ନାଟକର ସଫଳ ଅଭିନୟ ଏହି ମଂଚରେ ଅନୁଷ୍ଠିତ ହୋଇଯାଇଛି । ପାରଳାଖେମୁଣ୍ଡିର ରଂଗମଂଚ ଆନ୍ଦୋଳନ ସହ ଆପନ୍ନା ପରିଚ୍ଛା ଓ ପରିଚ୍ଛା ମଠ କିଭଳି ଭାବେ ସମ୍ବନ୍ଧିତ ଥିଲେ ସେଥିର ସମ୍ପୂର୍ଣ୍ଣ ବିବରଣୀ ଦେଲେ ତାହା ହେବ ଅର୍ଦ୍ଧଶତାବ୍ଦୀର ରଂଗମଂଚ ଇତିହାସ । ତେବେ ଏ ପୁସ୍ତକର ପରବର୍ତ୍ତୀ ପର୍ଯ୍ୟାୟରେ ଏ ବିଷୟରେ କିଂଚିତ୍ ଆଲୋକପାତ କରିବାକୁ ଆମେ ପ୍ରୟାସ କରିଛୁ । ୧୯୧୫ ଖ୍ରୀଷ୍ଟାବ୍ଦରେ, ଆପନ୍ନା ପରିଚ୍ଛା ମହାରାଜାଙ୍କ ସହ କେତେକ ନୀତିଗତ ମତଭେଦ କାରଣରୁ ପଦ୍ମନାଭ ରଂଗାଳୟରୁ ନିଜକୁ ଅସମ୍ପୃକ୍ତ କରିନେଇ ନିଜସ୍ୱ ଏକ ନାଟକ ଦଳ ଗଠନ କରିଥିଲେ । ଆପନ୍ନାଙ୍କ ଏହି ନାଟକ ଦଳ ପରିଚ୍ଛା ମଠରେ ପୂର୍ବରୁ କୁହାଯାଇଥିବା ରାସ ମଣ୍ଡପକୁ ରଂଗମଂଚର ରୂପ ଦେଇ ସେଥିରେ ନାଟକ ଅଭିନୟ କରୁଥିଲେ । ପଦ୍ମନାଭ ରଂଗାଳୟ ସହ ସମାନ୍ତରାଳ ଭାବେ ଏହି ନାଟକ ଗତିକରି ବହୁ ଖ୍ୟାତିର ଅଧିକାରୀ ହେଲା ବେଳକୁ ପଦ୍ମନାଭ ରଂଗାଳୟ ପକ୍ଷରୁ ଅଭିନୀତ ନାଟକମାନ ଥିଲା ଅଧୋଗାମୀ ।

ମଠର ଝୁଲଣ ମେଲାର ପଶ୍ଚିମକୁ ପଙ୍ଗତ ଘର । ବର୍ତ୍ତମାନ ଏହାର ଧ୍ୱଂସାବଶେଷ ଦେଖିବାକୁ ମିଳେ । ପ୍ରତ୍ୟହ ଏଠାରେ ବାବାଜୀ, ବୈଷ୍ଣବ, ବିଦ୍ୟାର୍ଥୀ, ଅତିଥି, ଅଭ୍ୟାଗତ ସମସ୍ତେ ପଂକ୍ତିରେ ବସି ପଙ୍ଗତ କରୁଥିଲେ । ବୈଷ୍ଣବ ସଂସ୍କୃତିରେ ପଙ୍ଗତରେ କେହି ଅପାଙ୍କ୍ତେୟ ନୁହେଁ । ଏଠି ଜାତି ବର୍ଣ୍ଣର ପ୍ରଶ୍ନ ହିଁ ନାହିଁ । ସତରେ ମାନବ-ପ୍ରେମର କି ମହନୀୟ ଆଦର୍ଶ ନରହିଛି ଏହି ବୈଷ୍ଣବ ଦର୍ଶନରେ । ପରିଚ୍ଛା ମଠ ଏ ଦର୍ଶନର ଏକ ସଫଳ ପ୍ରୟୋଗ କ୍ଷେତ୍ର ଭାବେ କାର୍ଯ୍ୟ କରୁଥିଲା ।

ପରିଚ୍ଛା ମଠର ସ୍ୱତ୍ୱାଧିକାରୀ ଥିଲେ ଆପନ୍ନା ପରିଚ୍ଛା ଓ ତାଙ୍କର ଦୁଇ ଭାଇ ନୀଳମଣି ଓ ମଦନମୋହନ । ପିତାଙ୍କ ବାର୍ଦ୍ଧକ୍ୟ ତଥା ଅସୁସ୍ଥତା ହେତୁ ଆପନ୍ନାଙ୍କ ଉପରେ ମଠ ପରିଚାଳନା ଭାର ନ୍ୟସ୍ତ ହୋଇଥିଲା ସମ୍ଭବତଃ ୧୮୯୮ ମସିହାରେ । ଏ ସମ୍ପର୍କରେ ପରବର୍ତ୍ତୀ ପର୍ଯ୍ୟାୟରେ ସ୍ୱତନ୍ତ୍ର ଆଲୋଚନା କରାଯାଇଅଛି । ପାରଳାଖେମୁଣ୍ଡିରେ ରାଜାରାଜୁଡ଼ା ଅମଳରେ ଯେତେ ମଠ ମନ୍ଦିର ଥିଲା, ତନ୍ମଧ୍ୟରେ ସର୍ବାଧିକ ଭୂ-ସମ୍ପତ୍ତିର ମାଲିକ ଥିଲା ରାଧାକାନ୍ତ ମଠ । ଏହାର ମୁଖ୍ୟାଳୟ ପୁରୀରେ ଓ ଏହାର ପୂର୍ବନାମ କାଶୀମିଶ୍ରାଳୟ । ପାରଳାର ରାଜା ଜଗନ୍ନାଥ ନାରାୟଣ ଦେବ(୨) ଉକ୍ତ ମଠର ଏକ ଶାଖା ପାରଳାଖେମୁଣ୍ଡିରେ ପ୍ରତିଷ୍ଠା କରି ବହୁପରିମାଣର ଜମିବାଡି ଖଞ୍ଜି ଦେଇଥିଲେ । ତେଣୁ ପାରଳାଖେମୁଣ୍ଡିରେ ଏହି ମଠ ଅନ୍ୟ ସମସ୍ତ ମଠମାନଙ୍କଠାରୁ ବିଭବଶାଳୀ ହୋଇପାରିଥିଲା । ଏହି ଶାଖା ମଠର ବାର୍ଷିକ ଆୟ ଟ.୧,୦୩୦୦୦.୦୦ ଥିବାବେଳେ ପରିଚ୍ଛା ମଠର ବାର୍ଷିକ ଆୟ ଥିଲା ଟ.୯୬୦୦୦.୦୦ । ଏହି ଦୁଇଟି ମଠ ଆୟ ଦୃଷ୍ଟିରେ ପାରଳା ମହାରାଜାଙ୍କ ତଳକୁ କ୍ରମାନ୍ୱୟରେ ରହିଥିବା ବିଷ୍ଣୁଚରଣ ମହାନ୍ତି "ପାରଳା ପ୍ରତିଭା" ପୁସ୍ତକରେ ଲେଖି ଅଛନ୍ତି । ରାଜା କୃଷ୍ଣଚନ୍ଦ୍ରଙ୍କର ଦୀକ୍ଷା ଗୁରୁ ଭାବରେ ବଡ ରାଧାକାନ୍ତ ମଠର ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀଙ୍କର ସାମାଜିକ ମର୍ଯ୍ୟାଦା ଯଥେଷ୍ଟ ଥିଲା । ତଥାପି ପରିଚ୍ଛା ମଠର ଅଧିକାରୀ ଭାବରେ ଆପନ୍ନା ପରିଚ୍ଛାଙ୍କ ସମ୍ମାନ ମଧ କିଛି କମ ନଥିଲା । ତାଙ୍କର ବ୍ୟକ୍ତିଗତ ଯୋଗ୍ୟତା, ପାରିବାରିକ ଆଭିଜାତ୍ୟ ଓ ଧନାଢ଼୍ୟ ସ୍ଥିତି ହିଁ ଏପରି ଲୋକ ମର୍ଯ୍ୟାଦାର କାରଣ ବୋଲି କୁହାଯାଇପାରେ ।

ପରିଚ୍ଛା ମଠ ଥିଲା ସାରସ୍ୱତ ସାଧନାର ଏକ ସମନ୍ୱିତ ପୀଠ । ଏହି ମଠ ସହ ଭକ୍ତକବି ଗୋପାଳକୃଷ୍ଣଙ୍କର ଘନିଷ୍ଠ ସମ୍ପର୍କ ରହିଥିଲା । ବିଖ୍ୟାତ କଣ୍ଠଶିଳ୍ପୀ ତଥା ଓଡ଼ିଆ ଛାନ୍ଦର ଅପ୍ରତିଦ୍ୱନ୍ଦୀ ଗାୟକ (ଅନ୍ଧ) ଆପନ୍ନା ପାଣିଗ୍ରାହୀ ମଧ ଏହି ମଠକୁ ନିଜ ସାଧାନାର ଅନ୍ୟତମ କ୍ଷେତ୍ରଭାବେ ବ୍ୟବହାର କରି ଯାଇଛନ୍ତି । ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ପୁରୀର ପ୍ରଚାରକ ଅନନ୍ତ ମିଶ୍ର, ଜଗନ୍ନାଥ ମିଶ୍ର, ଲିଙ୍ଗରାଜ ପାଣିଗ୍ରାହୀ, ଶଶୀଭୂଷଣ ରଥ, ନିରଞ୍ଜନ ପଟ୍ଟନାୟକ, ସଂସ୍କାରକ ଶ୍ରୀବସ୍ତ ପଣ୍ଡା ପ୍ରଭୃତି ଜାତୀୟବାଦୀ ନେତାମାନେ ବାରମ୍ବାର ଏହି ମଠକୁ ଆସିଛନ୍ତି । ଏଠାରେ ସେମାନେ ଆତିଥ୍ୟ ଗ୍ରହଣ କରି ଅନେକ ରାତି ବିତାଇଛନ୍ତି । ଜାତୀୟ କଂଗ୍ରେସ ଆନ୍ଦୋଳନ ସହ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ବୀଜମନ୍ତ୍ର ଅନେକବାର ଏଠାରୁ ଉଚ୍ଚାଟିତ ହୋଇଛି । ଉତ୍କଳ ସମ୍ମିଳନୀ କାର୍ଯ୍ୟକ୍ରମ ରୂପାୟନ ପାଇଁ ନେତା ଓ କର୍ମୀମାନଙ୍କର ମୁହୁର୍ମୁହୁ ଆଲୋଚନା ଏଠାରେ ସଂଘଟିତ ହୋଇଛି । ଜାତୀୟତାବାଦୀ କଂଗ୍ରେସ ନେତାମାନେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସାକ୍ଷାତ କରିବାରେ ଯେବେ ବିଫଳ ହୋଇଛନ୍ତି ତତ୍କାଳ ସେମାନଙ୍କୁ ସହଯୋଗର ହସ୍ତ ପ୍ରସାରି ଦେଇଛି ଏହି ମଠ । ଆଗନ୍ତୁକ-ରାଜନୀତିକ ନେତାମାନଙ୍କୁ

ଉପଯୁକ୍ତ ଆତିଥ୍ୟ ପ୍ରଦାନ କରିବାରେ ଏହା ସର୍ବଦା ତତ୍ପରତା ପ୍ରକାଶ କରିଛି ସିନା କେବେହେଲେ କୁଣ୍ଠା ପ୍ରକାଶ କରିନାହିଁ । କେବଳ ସେତିକି ନୁହେଁ, ଜାତୀୟ କଂଗ୍ରେସ ଆନ୍ଦୋଳନ ସହ ଏ ମଠ ନିବିଡଭାବରେ ସମ୍ପୃକ୍ତ ଥିଲା । ମହାତ୍ମା ଗାନ୍ଧୀଙ୍କ ଚିନ୍ତନକୁ ରୂପଦେଇ ପାରଳାଖେମୁଣ୍ଡି ଅଂଚଳରେ ପ୍ରଚାର ପ୍ରସାର କରିବାରେ ଏହି ମଠର ଅଧିକାରୀ ତଥା ପରିଚାଳକ ଆପନ୍ନା ପରିଛା ପ୍ରମୁଖ ଭୂମିକା ତୁଲାଇଥିଲେ । ସେ କଂଗ୍ରେସର ବାର୍ତ୍ତା ପ୍ରଚାର ପାଇଁ ୧୯୨୭ ଡିସେମ୍ବର ୩ ତାରିଖରେ ପାରଳାଖେମୁଣ୍ଡିରେ ମହାତ୍ମା ଗାନ୍ଧୀଙ୍କ ଆଗମନର ବ୍ୟବସ୍ଥା କରିବା ସହ ନିଜେ ଏକ ଜନସଭାର ଆୟୋଜନ କରିଥିଲେ । ପାରଳାଖେମୁଣ୍ଡିର ବଜାର ଛକ ନିକଟରେ ଦିବା ଗୋଟାଏ ବେଳେ ୧୦ ସହସ୍ର ଲୋକଙ୍କ ସମାବେଶରେ ମହାତ୍ମାଗାନ୍ଧୀ ଭାଷଣ ଦେଇ ୩ଟା ବେଳେ ପାରଳାରୁ ବିଦାୟ ନେଇଥିଲେ । ଗାନ୍ଧିଜୀଙ୍କ ସାଥିରେ ଥିଲେ ନିରଞ୍ଜନ ପଟ୍ଟନାୟକ ଓ ଗୋବିନ୍ଦ ମିଶ୍ର । ଗାନ୍ଧିଜୀଙ୍କ ଭାଷଣର ଓଡ଼ିଆ ତର୍ଜମା କରିଥିଲେ ଗୋବିନ୍ଦ ମିଶ୍ର । ଅନ୍ୟାନ୍ୟ ଅଂଚଳରେ ମଧ୍ୟ କଂଗ୍ରେସର ବାର୍ତ୍ତା ପ୍ରଚାର ପାଇଁ ସଭା ସମିତି ଓ ସଭ୍ୟ ସଂଗ୍ରହ କାର୍ଯ୍ୟରେ ନିଜ ସହ ନିଜର ମଠକୁ ବରାବର ନିୟୋଜିତ କରୁଥିଲେ । ଏଥିଲାଗି ତାଙ୍କୁ ପରୋକ୍ଷ ଭାବେ ରାଜରୋଷର ଶିକାର ହେବାକୁ ପଡ଼ିଥିବ, ଏଥିରେ ସନ୍ଦେହ ନାହିଁ । କାରଣ ମହାରାଜା କୃଷ୍ଣଚନ୍ଦ୍ରଙ୍କର ଇଂରେଜ ଅଧିକାରୀମାନଙ୍କ ସହ ସୁସମ୍ପର୍କ ଥିଲା ।

ସମସ୍ତ ପ୍ରକାର ଆଶଙ୍କାକୁ ପଛରେ ପକାଇ ଆପନ୍ନା ଜାତୀୟ ଯଜ୍ଞରେ ଆହୂତି ଦେବାକୁ ଆଗୁସାର ହେଉଥିଲେ । ପରିଛା ମଠ ଦେଶର ସ୍ୱାଧୀନତା ଆନ୍ଦୋଳନ ସହ ସମତାଳରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ଆନ୍ଦୋଳନ ପାଇଁ ନିଜର ଦ୍ୱାର ସର୍ବଦା ଉନ୍ମୁକ୍ତ ରଖିଥିଲା ।

ପାରଳାଖେମୁଣ୍ଡିର ଜନଜୀବନର ଏକ ବୈଶିଷ୍ଟ୍ୟ ହେଲା ସେମାନଙ୍କର ସଂଗୀତପ୍ରିୟତା । ଏଥିପାଇଁ ପ୍ରତି ସନ୍ଧ୍ୟାରେ ପରିଛା ମଠରେ ବିଶେଷ ସଂଗୀତ ଆସର ଜମୁଥିଲା । ସଂଗୀତ ଶିକ୍ଷା ଦେବା ପାଇଁ ବାଳକମାନଙ୍କୁ ମନୋନୀତ କରାଯାଇ ସେମାନଙ୍କର ବାସଗ୍ରାସର ବ୍ୟବସ୍ଥା ମଠ ତରଫରୁ ବିନା ଶୁଳ୍କରେ କରାଯାଉଥିଲା । ସବୈତନିକ ସଂଗୀତ ଶିକ୍ଷକ ମାଗତା ପାତ୍ରୋଙ୍କ ଦ୍ୱାରା ସଂଗୀତ ଶିକ୍ଷା ନିୟମିତ ଦିଆ ଯାଉଥିଲା । ଏହିପରି ଭାବେ ପାରଳାଖେମୁଣ୍ଡିର ସଂଗୀତ ଧାରା ସହ ଏହି ମଠ ଅଙ୍ଗାଙ୍ଗୀ ଭାବେ ଜଡିତ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରଖ୍ୟାତ ହରିକଥା ଗାୟକ ନାରାୟଣ ସଦେଇ ପରିଛା ମଠରୁ ସଂଗୀତ ଶିକ୍ଷା କରି ଓଡ଼ିଶାରେ ଜଣେ ସ୍ୱନାମଧନ୍ୟ ସଂଗୀତଜ୍ଞ ତଥା କଣ୍ଠଶିଳ୍ପୀ ଭାବେ ପ୍ରତିଷ୍ଠାଲାଭ କରିଥିଲେ । ନିୟମିତ ନାଟକାଭ୍ୟାସ ଓ ବିଦ୍ୟାଳୟରେ ଅଧ୍ୟୟନ - ଏ ଉଭୟ କାର୍ଯ୍ୟ ପାଇଁ ବାଳକମାନଙ୍କୁ ମନୋନୀତ କରାଯାଉଥିଲା । ମନୋନୀତ ସମସ୍ତ ବାଳକ ମଠରେ ବିନା ଶୁଳ୍କରେ ରହିବା ସହ ମାଗଣା ଭୋଜନର

ସୁବିଧା ମଧ ପାଉଥିଲେ । ଦୁଇଶହ ବର୍ଷ ପୂର୍ବେ ଯେତେବେଳେ ପ୍ରାକୃତିକ ଓଡ଼ିଶାରେ ଉଚ୍ଚଶିକ୍ଷା ଏକ ଦୁଃସ୍ୱପ୍ନ ଥିଲା ସେତେବେଳେ ପରିଛା ମଠ ଓ ଏହାର ପରିଚ୍ଛଳକ ଆପନ୍ନା ପରିଛାଙ୍କ ସହାୟତାରେ ଅନେକ ଗରିବ-ମେଧାବୀ ପିଲା ଶିକ୍ଷାଲାଭ କରିବା ସହ ଓଡ଼ିଆ ସଂସ୍କୃତିର ଉନ୍ନତିରେ ନିଜକୁ ସାମିଲ କରିବାର ସୁଯୋଗ ପାଉଥିଲେ । ମାଡ୍ରାସ ସରକାରଙ୍କ ଅଧୀନରେ ଥାଇ ଓଡ଼ିଆ ଜାତିର ସ୍ୱାଭିମାନ ଭୂଲୁଣ୍ଠିତ ହେଉଥିବା ବେଳେ ଉକ୍ତ ମଠ ଥିଲା ଆଶାର ବୈତରଣୀ ତଥା ନିରନ୍ଧ୍ର ଅନ୍ଧକାରରେ ଏକ ଆଲୋକବର୍ତ୍ତିକା ।

ପରିଛା ମଠ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପ୍ରତିଷ୍ଠିତ ହୋଇଥିଲେ ସୁଦ୍ଧା ଏହା ଜନାଭିମୁଖୀ ହେବାକୁ ଆରମ୍ଭ କରିଥିଲା ଉନ୍ନବିଂଶ ଶତାବ୍ଦୀର ଅନ୍ତିମ ଚରଣରେ । ଆପନ୍ନା ପରିଛା ପରିଚ୍ଛଳନା ଦାୟିତ୍ୱ ବହନ କଲା ପରେ ପାରଳାଖେମୁଣ୍ଡିର ଅନ୍ୟାନ୍ୟ ମଠମାନଙ୍କ ସମକ୍ଷରେ ଏହି ମଠ ସୃଷ୍ଟି କଲା ତା'ର ଏକ ସ୍ୱତନ୍ତ୍ର ପରିଚୟ, ଏକ ଭିନ୍ନ ଭାବମୂର୍ତ୍ତି ।

ସମକାଳୀନ ମଠଗୁଡ଼ିକ କେବଳ ପାରମ୍ପରିକ ରୀତିନୀତିରେ ଦୈନନ୍ଦିନ କାର୍ଯ୍ୟକୁ ସୀମିତ ରଖୁଥିବା ବେଳେ ପରିଛା ମଠ ଏକ ସମାଜ-ବତ୍ସଳ ଦୃଷ୍ଟିଭଙ୍ଗୀ ସହ ଶିକ୍ଷା, ସମାଜସେବା, ନୃତ୍ୟ, ନାଟକ, ସଂଗୀତ, ଓଡ଼ିଆ ସାହିତ୍ୟ, ଓଡ଼ିଆ ଭାଷା ଓ ପାଠାଗାର ଆନ୍ଦୋଳନର ପ୍ରସାରରେ ନିଜକୁ ଓତପ୍ରୋତ ଭାବେ ଜଡ଼ିତ କରିବା ସହ ଓଡ଼ିଆ ଜାତିର ସ୍ୱତନ୍ତ୍ର ପରିଚୟ ପାଇଁ ସଂଗ୍ରାମ କରୁଥିଲା । ନାବାଳକ କୃଷ୍ଣଚନ୍ଦ୍ର ଗଜପତି ମାଡ୍ରାସର ନ୍ୟୁଇଙ୍ଗଟନ୍ କଲେଜରେ ଅଧ୍ୟୟନ କରୁଥିବାବେଳେ ପରିଛା ମଠ ଦେଶ ମିଶ୍ରଣ ଆନ୍ଦୋଳନର ଆଦ୍ୟ ପର୍ବ ଆରମ୍ଭ କରିସାରିଥିଲା । ପାରଳାଖେମୁଣ୍ଡିର ସେତେବେଳର ଚିନ୍ତାନାୟକମାନଙ୍କ ମଧ୍ୟରେ ଆପନ୍ନା ପଣ୍ଡା, ଶ୍ୟାମସୁନ୍ଦର ରାଜଗୁରୁ, ମାନ୍ଧାତା ଗୋରାଚ୍ଛନ୍ଦ ପଟ୍ଟନାୟକ, ଭବକୃଷ୍ଣ ଦ୍ୱୈପାୟନ ରାଓ ଓ ପଦ୍ମନାଭ ଗଜପତି ପ୍ରଭୃତିଙ୍କ ସହ ସମନ୍ୱୟ ରକ୍ଷାକରି ଏହି ମଠର ଅଧିକାରୀ ତଥା ପରିଚ୍ଛଳକ ଆପନ୍ନା ପରିଛା ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ପରିଛା ମଠକୁ ଦେଶ ମିଶ୍ରଣ କାର୍ଯ୍ୟରେ ନିୟୋଜିତ କରୁଥିଲେ । ଏହାଦ୍ୱାରା ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ପୂର୍ବରୁ ପାରଳାଖେମୁଣ୍ଡିରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ସପକ୍ଷରେ ଏକ ବାତାବରଣ ସୃଷ୍ଟି ହୋଇସାରିଥିଲା । ଗୌରଚନ୍ଦ୍ର ଗଜପତି (୨ୟ)ଙ୍କ ରାଜତ୍ୱ ସମୟକୁ ପାରଳାଖେମୁଣ୍ଡିରେ ଇଂରେଜ ବିରୋଧୀଭାବ ନିରବି ଯାଇଥିଲା । କୃଷ୍ଣଚନ୍ଦ୍ର ଗଜପତି ଶିକ୍ଷା ସମାପ୍ତ କରି ରାଜ୍ୟକୁ ଫେରିବା ବେଳକୁ ପାରଳାରେ ଇଂରେଜ କର୍ତ୍ତୃକ ତତ୍ତ୍ୱାବଧାରକ ଶାସନ ଚାଲୁଥିଲା । ତା' ପୂର୍ବରୁ ତାଙ୍କ ପିତା ଗୌରଚନ୍ଦ୍ର ଗଜପତି ମାତ୍ର ୧୫ ବର୍ଷ ରାଜତ୍ୱ କରିଥିଲେ ଓ ତତ୍ପୂର୍ବ ୬୦ ବର୍ଷ କାଳ ଅର୍ଥାତ୍ ୧୮୩୦ରୁ ୧୮୯୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଇଂରେଜ କର୍ତ୍ତୃକ ତତ୍ତ୍ୱବଧାରକ ଶାସନ ଅଧୀନରେ ପାରଳାଖେମୁଣ୍ଡି ରହିଆସିଥିଲା । ଇଂରେଜ କର୍ତ୍ତୃପକ୍ଷ ପାରଳା ଅଂଚଳରେ କେତେକ

ବିକାଶମୂଳକ କାର୍ଯ୍ୟ କରିଥିଲେ ସୁଦ୍ଧା ଓଡ଼ିଆଙ୍କ ଅସ୍ମିତା ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ଥିଲେ । କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଏହା ବାଧିଥିବ । ତେଣୁ ସେ ତାଙ୍କ ରାଜତ୍ୱ ଆରମ୍ଭରୁ ଦେଶ ମିଶ୍ରଣ ଆନ୍ଦୋଳନ ଚଳାଇଥିବା ଉତ୍କଳ ସମ୍ମିଳନୀର କାର୍ଯ୍ୟକ୍ରମ ପ୍ରତି ଆକୃଷ୍ଟ ହେଲେ । ଅନ୍ୟପକ୍ଷରେ ଇଂରେଜ ପ୍ରଶାସକମାନଙ୍କ ସହିତ ମଧ୍ୟ ମହାରାଜା କୃଷ୍ଣଚନ୍ଦ୍ରଙ୍କ ସୁସଂପର୍କ ସ୍ଥାପିତ ହୋଇଥିଲା । ଇଂରେଜ ଅଧିକାରୀମାନଙ୍କ ସହଯୋଗରେ ନିଜ ଜମିଦାରିର ସମ୍ବଳ ଉପଯୋଗ କରି ପାରଳାଖେମୁଣ୍ଡି ଇଲାକାର ସର୍ବାଙ୍ଗୀନ ଉନ୍ନତି ସହ ଓଡ଼ିଶାର ସ୍ୱତନ୍ତ୍ର ପରିଚୟ ପାଇଁ ସେ ଉଦ୍ୟମ ଆରମ୍ଭ କଲେ ।

ରାଜା ଗୌରଚନ୍ଦ୍ରଙ୍କ ସମୟରେ ପାରଳା ରାଜପରିବାରର କଂଗ୍ରେସ ଆନ୍ଦୋଳନ ପ୍ରତି ବିରୋଧ ନଥିଲା, ବରଂ ପ୍ରକାରାନ୍ତରେ ସମର୍ଥନ ଥିଲା । ତା' ନହୋଇଥିଲେ ରାଜଭ୍ରାତା ପଦ୍ମନାଭ ଗଜପତି କଂଗ୍ରେସ ମହାଧିବେଶନମାନଙ୍କରେ ଯୋଗଦେବାର ସୁଯୋଗ ପାଇନଥାନ୍ତେ । କିନ୍ତୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି କୌଣସିମତେ କଂଗ୍ରେସ ଆନ୍ଦୋଳନ ସହ ନିଜକୁ ସଂଶ୍ଳିଷ୍ଟ କରିନଥିଲେ । ମହାରାଜା କୃଷ୍ଣଚନ୍ଦ୍ର ରାଜ୍ୟଭାର ଗ୍ରହଣ କଲାପୂର୍ବରୁ ପରିଚ୍ଛା ମଠାଧିକାରୀ ଆପନ୍ନା ପରିଚ୍ଛାଙ୍କର ପାରଳା ରାଜପରିବାର ସହ ସମ୍ପର୍କ ଆରମ୍ଭ ହୋଇଥିବା ତାଙ୍କ ଦିନଲିପିରୁ ଜଣାପଡୁଛି । ରାଜଭ୍ରାତା ପଦ୍ମନାଭ ଗଜପତିଙ୍କର ଜଣେ ବିଶ୍ୱସ୍ତ ଅନୁଗାମୀ ଥିଲେ ଆପନ୍ନା ପରିଚ୍ଛା । ତେଣୁ ମହାରାଜା କୃଷ୍ଣଚନ୍ଦ୍ରଙ୍କ ସହ ମଧ୍ୟ ତାଙ୍କର ଉତ୍ତମ ସମ୍ପର୍କ ସ୍ଥାପିତ ହୋଇଥିଲା । ଦେଶ ମିଶ୍ରଣ ଆନ୍ଦୋଳନରେ ମହାରାଜା ଓ ଆପନ୍ନା ଏକାତ୍ମଭାବରେ କାର୍ଯ୍ୟ କରିଥିବାର ଭୂୟୋ ପ୍ରମାଣ ରହିଛି । ଅନ୍ୟପକ୍ଷରେ ମହାରାଜା କୃଷ୍ଣଚନ୍ଦ୍ର ଥିଲେ ଜଣେ ପ୍ରଜାନୁରଞ୍ଜନ ରାଜା । ସେବେ କିମ୍ବା ଏବେ କେହି ଜଣେ ମଧ୍ୟ ମହାରାଜା କୃଷ୍ଣଚନ୍ଦ୍ରଙ୍କ ଶାସନ ବିରୋଧରେ ପଦେ କଥା କହିବା ଶୁଣାଯାଏ ନାହିଁ । ଯେଉଁ ଦେଶ ମିଶ୍ରଣ କାର୍ଯ୍ୟରେ ମହାରାଜା ନିଜକୁ ଓ ନିଜର ସମସ୍ତ ଐଶ୍ୱର୍ଯ୍ୟକୁ ସମର୍ପଣ କରିଦେଇଥିଲେ ଆପନ୍ନା ମଧ୍ୟ ତଦ୍ରୂପ ନିଜକୁ ଓ ନିଜ ମଠକୁ ଓଡ଼ିଆ ଜାତିର ମଙ୍ଗଳ ପାଇଁ ଉନ୍ମୁକ୍ତ ରଖିଥିଲେ । ପାରଳା ରାଜାଙ୍କ ରାଜ୍ୟ ଶାସନକୁ ନେଇ ପରିଚ୍ଛା ମଠ ସହ କେବେ ବି ସଂଘର୍ଷ ଘଟିଥିବାର ପ୍ରମାଣ ନାହିଁ । କେବଳ କେତେକ ସମସାମୟିକ ଘଟଣାରେ ଆପନ୍ନା ଓ ମହାରାଜାଙ୍କ ମଧ୍ୟରେ ମତୈକ୍ୟ ନଥିଲା । ପାରଳାର ରାଜତନ୍ତ୍ର ବିରୁଦ୍ଧରେ ନା ଲୋକେ ନା ପରିଚ୍ଛା ମଠ କେଉଁ ବି ସଂଗ୍ରାମ କରିଥିବାର ନଜିର ନାହିଁ । ତେଣୁ ଦେଶର ସ୍ୱାଧୀନତା ଆନ୍ଦୋଳନରେ ପରିଚ୍ଛା ମଠର ସମ୍ପୃକ୍ତିକୁ ଯେଉଁମାନେ 'ଆନନ୍ଦ ମଠ' ସହ ଯୋଡୁଛନ୍ତି ସେମାନଙ୍କ ସହ ଆମେ ଏକମତ ନୋହୁ । 'ଆନନ୍ଦ ମଠ'ର ସଂଗ୍ରାମ ଥିଲା ବିଧର୍ମୀ ମୁସଲମାନ ଶାସକର ଅତ୍ୟାଚାର ବିରୁଦ୍ଧରେ । ସେ ପରିସ୍ଥିତି ପାରଳାଖେମୁଣ୍ଡିରେ କାହିଁ ? ତେବେ ୧୯୨୭ରେ ମହାତ୍ମାଗାନ୍ଧୀଙ୍କ ପାରଳାଖେମୁଣ୍ଡିକୁ ଆଗମନଠାରୁ ଏଠାରେ କଂଗ୍ରେସ କାର୍ଯ୍ୟକ୍ରମ ପରିଚ୍ଛା ମଠର ମୁଖ୍ୟ

ପରିଷଳକ ଆପନ୍ନା ପରିଚ୍ଛାଙ୍କ ନେତୃତ୍ୱରେ ଦାନା ବାନ୍ଧିସାରିଥିଲା । ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଂଗ୍ରେସ ଆନ୍ଦୋଳନଠାରୁ ନିଜକୁ ଦୂରେଇ ରଖି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦିଗରେ ମନୋନିବେଶ କରୁଥିଲେ । ତେଣୁ କଂଗ୍ରେସ କାର୍ଯ୍ୟକ୍ରମ ନିଷ୍ପାଦନ ପାଇଁ ଜାତୀୟ କଂଗ୍ରେସର ନେତାମାନଙ୍କ ପାରଳାଖେମୁଣ୍ଡିକୁ ଆଗମନ ବେଳେ କୌଣସି ରାଜପ୍ରୋତ୍ସାହନ ମିଳୁ ନଥିଲା କିମ୍ବା ବିରୋଧ ମଧ୍ୟ ନଥିଲା । କଂଗ୍ରେସ ଆନ୍ଦୋଳନ ପ୍ରତି କୃଷ୍ଣଚନ୍ଦ୍ର ଗଜପତିଙ୍କ ବିରୋଧ କଥା କେହି କେହି ଆଲୋଚକ ଟିପ୍ପଣୀ କରିଥିବା ଘଟଣା ଆମକୁ ବ୍ୟଥିତ କରିଛି । ତେବେ ଏକଥା ସତ ଯେ କଂଗ୍ରେସ କାର୍ଯ୍ୟକ୍ରମ ପ୍ରତି ରାଜ ପ୍ରୋତ୍ସାହନ ମିଳୁ ନଥିଲା; କିନ୍ତୁ ବିରୋଧ ମଧ୍ୟ ନଥିଲା । ଏହି ପରିସ୍ଥିତିରେ ଆପନ୍ନା ପରିଚ୍ଛା ପାରଳା ତଥା ସମଗ୍ର ଗଞ୍ଜାମ ଅଞ୍ଚଳରେ କଂଗ୍ରେସର ସମସ୍ତ କାର୍ଯ୍ୟ ଆଗେଇ ନେବା ସହ ପରିଚ୍ଛା ମଠକୁ ଜାତୀୟ କଂଗ୍ରେସର ଏକ କେନ୍ଦ୍ର ଭାବେ ବ୍ୟବହାର କରୁଥିଲେ । ତେଣୁ ଜାତୀୟ କଂଗ୍ରେସର ଓଡ଼ିଆ ନେତାମାନଙ୍କ ସୁଅ ପାରଳାଖେମୁଣ୍ଡିକୁ ଛୁଟୁଥିଲା । ଏବଂ ସେମାନେ ପରିଚ୍ଛା ମଠରେ ବାରମ୍ବାର ମିଳିତ ହେଉଥିଲେ । ମଠ ତରଫରୁ ସେଥିପାଇଁ ଆତିଥ୍ୟ ପ୍ରଦାନ କରାଯିବା ସହ ଆବଶ୍ୟକ ସ୍ଥଳେ ଜାତୀୟ କଂଗ୍ରେସର ବିଭିନ୍ନ କାର୍ଯ୍ୟକ୍ରମର ପ୍ରଚାର ପ୍ରସାର ପାଇଁ ବିହିତ ସହଯୋଗ ପ୍ରଦାନ କରାଯାଉଥିଲା । ସାମଗ୍ରିକ ଭାବରେ ପରିଚ୍ଛା ମଠ ନିଜର ପାରମ୍ପରିକ ଧର୍ମ ଓ ଆଧ୍ୟାତ୍ମିକ କାର୍ଯ୍ୟ ସହ ଜନସ୍ୱାର୍ଥ ସମ୍ବଳିତ କାର୍ଯ୍ୟ କରି ଏକ ଉଚ୍ଚ ଆଦର୍ଶ ସୃଷ୍ଟି କରିଥିଲା ।  ସ୍କୁଲ କଲେଜ ସ୍ତରରେ ଶିକ୍ଷାର ଉନ୍ନତି, ସଂଗୀତ, ସାହିତ୍ୟ, ନାଟକ ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟକ୍ରମର ବ୍ୟାପକ ପ୍ରସାରଣ କ୍ଷେତ୍ରରେ ପରିଚ୍ଛା ମଠ ନିଜକୁ ନିୟୋଜିତ ଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଭାଷା ଆନ୍ଦୋଳନ, କଂଗ୍ରେସର ରଚନାତ୍ମକ କାର୍ଯ୍ୟରେ ପରିଚ୍ଛା ମଠ ସତତ ସକ୍ରିୟ ଥିଲା ।

ଏକଦା ଆର୍ଥିକ ସ୍ୱଚ୍ଛଳତା ଓ ଆଦର୍ଶର ଶୀର୍ଷରେ ଉପନୀତ ହୋଇଥିବା ପରିଚ୍ଛା ମଠର ବିପର୍ଯ୍ୟୟ ଆରମ୍ଭ ହୁଏ ପାରିବାରିକ ବୁଝାମଣାରେ ବିଭ୍ରାଟ ଘଟିବାରୁ । ଜ୍ୟେଷ୍ଠଭ୍ରାତ ନୀଳମଣି ପରିଚ୍ଛା ମଠର ପରିଚାଳନା ନିଜ ହାତକୁ ନେବାକୁ ଚେଷ୍ଟା ଆରମ୍ଭ କରନ୍ତି ୧୯୨୮ର ଶେଷ ଚରଣରେ । ଏଥିପାଇଁ ମାଲିମୋକଦ୍ଦମାର ଆଶ୍ରୟ ମଧ୍ୟ ସେ ନେଇଥିଲେ । ୧୯୩୧ ସାଲରେ ଏକ ମୋକଦ୍ଦମା ଏଥିପାଇଁ ଦାଏର କରାଯାଇ ଶେଷରେ ନୀଳମଣି ପରିଚ୍ଛା ଉକ୍ତ ମଠର ଏକାଙ୍ଗ ଟ୍ରଷ୍ଟି ନିଯୁକ୍ତ ହୋଇଥିଲେ ।  ଦୀର୍ଘ ୩୦ ବର୍ଷ ଅର୍ଥାତ୍ ୧୮୯୮ରୁ ୧୯୨୮ ସାଲ ପର୍ଯ୍ୟନ୍ତ ସବୁଦିଗରୁ ଦୀପ୍ତିମନ୍ତ ଥିବା ପରିଚ୍ଛା ମଠ ପରବର୍ତ୍ତୀ କାଳରେ ପରିଚାଳନାଗତ କାରଣରୁ ବିପର୍ଯ୍ୟୟମୁଖୀ ହେଲା । ଏକ ପକ୍ଷରେ ଆପନ୍ନା ପରିଚ୍ଛା ଓ ତାଙ୍କ କନିଷ୍ଠ ଭ୍ରାତା ଓ ଅନ୍ୟପକ୍ଷରେ ନୀଳମଣି ପରିଚ୍ଛାଙ୍କ ମଧ୍ୟରେ ମନୋମାଳିନ୍ୟ ଏ ବିପର୍ଯ୍ୟୟର ମୁଖ୍ୟ କାରଣ ବୋଲି କୁହାଯାଇପାରେ । ଏଭଳି ମନୋମାଳିନ୍ୟ ଭାଇ ଭାଇ ମଧ୍ୟରେ ଲାଗି ରହିଥିବା ବେଳେ ଦେଶ ସ୍ୱାଧୀନତାର ଉତ୍ତର

କାଳରେ ଜମିଦାରି ତଥା ମଧ୍ୟ ସ୍ୱତ୍ୱାଧିକାର ଉଚ୍ଛେଦ ଆଇନ କାର୍ଯ୍ୟକାରୀ ହେଲା । ଫଳରେ ପରିଚ୍ଛା ମଠ ଓ ପରିଚ୍ଛା ପରିବାର ଅଧୀନରେ ଥିବା ପ୍ରାୟ ୧୦୦୦ ଏକର ଜମିର ସିଂହଭାଗ ରୟତମାନଙ୍କ ଦଖଲ ଓ ଅଧିକାରଭୁକ୍ତ ହେଲା । ଆୟ ଆମଦାନୀ ହଠାତ୍ କମିଯିବାରୁ ମଠ ତା'ର ପୂର୍ବଶ୍ରୀ ହରାଇବା ସହ କାର୍ଯ୍ୟକ୍ରମ ସଂକୁଚିତ କରିବାକୁ ବାଧ୍ୟ ହେଲା । ଆପନ୍ନା ପରିଚ୍ଛା ଓ ତାଙ୍କ ଜ୍ୟେଷ୍ଠ କନିଷ୍ଠ ଭାଇମାନଙ୍କ ଦେହାନ୍ତ ହେବା ପରେ ମଧ୍ୟ ମଠ ପରିଚାଳନାକୁ ନେଇ ସେମାନଙ୍କ ଦାୟାଦମାନଙ୍କ ମଧ୍ୟରେ ଏ ପୁସ୍ତକ ଲେଖାହେବା ପର୍ଯ୍ୟନ୍ତ ବାଦ ବିବାଦ ଲାଗି ରହି ଦେବୋତ୍ତର ବିଭାଗରେ ମାଲିମୋକଦ୍ଦମାର ବିଚାର ଚାଲିଆସିଛି । ତେବେ କୌଣସି ମତେ ମଠର ଦୈନନ୍ଦିନ ନୀତି ପରିଚାଳନା କାର୍ଯ୍ୟ ଆପନ୍ନା ପରିଚ୍ଛାଙ୍କ ଶାଖାର ଜଣେ ଦାୟାଦ ମୁରଲୀଧର ପରିଚ୍ଛା ତୁଲାଇ ଆସୁଅଛନ୍ତି । ମଠର କାର୍ଯ୍ୟକ୍ରମ ଆଉ ପୂର୍ବପରି ବ୍ୟାପକ ନହେଲେ ମଧ୍ୟ ଆଦର୍ଶରୁ ପୂରାପୂରି ଦୂରେଇ ଯାଇନାହିଁ । ମଠର ପୁଷ୍ପବାଟିକା ଏବେ ବି ଅଛି । ମାଳତୀ ଲତାର ସୁଗନ୍ଧିତ ବସନ୍ତ ଏବେ ମଧ୍ୟ ମଠ ପରିସରକୁ ବାସ୍ନାୟିତ କରୁଛି । ଏବେ ମଧ୍ୟ ଏହି ମଠ ମଧ୍ୟରେ ଅବସ୍ଥିତ ରସିକରାଜଙ୍କ ମନ୍ଦିରଟି ନିଜ ରୂପଶ୍ରୀକୁ ପୂର୍ବବତ୍ ସଜାଇ ରଖିଛି । ମଠ ପରିସରରେ ପ୍ରତି ସନ୍ଧ୍ୟାରେ ମହାମନ୍ତ୍ରର ମର୍ମସ୍ପର୍ଶୀ ଆବେଦନ ଆଜି ମଧ୍ୟ ଭକ୍ତ-ଜନ-ମନକୁ ଶୁଦ୍ଧପୂତ କରୁଛି । ପୂର୍ବବତ୍ ଦିଅଁଙ୍କ ରୀତିନୀତି ସଂପାଦନା ସହ ପୂଜା ପାର୍ବଣ ସବୁ ପାରମ୍ପରିକ ଢ଼ଙ୍ଗରେ ଚାଲିଆସୁଛି । ମଲ୍ଲୀ ଓ ମାଳତୀ ଝୁଲଣ, ଯାହାକି ଏ ମଠର ଏକ ସ୍ୱତନ୍ତ୍ର ଆକର୍ଷଣ, ପୂର୍ବପରି ଅବ୍ୟାହତ ରହିଛି । ଦୋଳଉତ୍ସବ, ହୋରି ରଙ୍ଗ ବିହାର ଠାରୁ ଏକାଦଶୀ ପାରଣା ପର୍ଯ୍ୟନ୍ତ ସବୁକିଛି ପୂର୍ବପରି ଚାଲିଛି । ପୁରୁଣା ପାଠାଗାରଟି ମଧ୍ୟ ସୁରକ୍ଷିତ ଅଛି । ଏବେ ମଧ୍ୟ ଏ ପାଠାଗାରକୁ ଉପଯୋଗ କରିବା ପାଇଁ ଦୂରଦୂରାନ୍ତରୁ ଗବେଷକମାନେ ଆସୁଛନ୍ତି । ମଠ ଦାୟିତ୍ୱ ସ୍ୱେଚ୍ଛାକୃତଭାବେ ବହନ କରିଥିବା ଯୁବକଳାକାର ମୁରଲୀଧର ପରିଚ୍ଛା ମଠର ଆଦର୍ଶକୁ ରକ୍ଷା କରିବା ପାଇଁ ତାଙ୍କ ସଂଗ୍ରାମ ଯଥାସାଧ୍ୟ ଜାରି ରଖିଛନ୍ତି । ଚିନ୍ମୟ ମିଶନର ଗୀତା ପାରାୟଣ ଓ ଆଲୋଚନା, କାଳିକୃଷ୍ଣ ସଙ୍ଘର ସାମୟିକ କାର୍ଯ୍ୟକ୍ରମ ମଠ ପରିସରକୁ ଉତ୍ସବ ମୁଖର କରିବା ସହ ପାରଳାର ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକ ନିଜ ନିଜର କାର୍ଯ୍ୟକ୍ରମ ଏ ମଠ ପରିସରରେ କରି ଆସୁଛନ୍ତି । ଆପନ୍ନା ପରିଚ୍ଛା ସ୍ମୃତି ସଂସଦ, ଯୁବ ପ୍ରତିଭା, ସାହିତ୍ୟ ଶ୍ୱେତପଦ୍ମା, ସିଦ୍ଧାନ୍ତ, ଗଜପତି ଜିଲ୍ଲା ଲେଖିକା ସାହିତ୍ୟ ସଂସଦ ଓ ଅନ୍ୟାନ୍ୟ ଅନେକ ସାରସ୍ୱତ ଅନୁଷ୍ଠାନକୁ ଏ ମଠ ସୁବିଧା ଦେଇ ଆସୁଛି ନିଜ ନିଜର କାର୍ଯ୍ୟକ୍ରମ କରିବା ପାଇଁ । ମଠ ପରିସର ବର୍ଷଯାକ ଏଥିପାଇଁ ଚଳ ଚଞ୍ଚଳ ରହିବା ସହ ପାରଳାଖେମୁଣ୍ଡିର ସାଂସ୍କୃତିକ ପାଣିପାଗକୁ ପ୍ରଭାବିତ କରୁଅଛି । ଆପନ୍ନା ପରିଚ୍ଛାଙ୍କ ଅବର୍ତ୍ତମାନରେ ମଧ୍ୟ ପରିଚ୍ଛା ମଠ ଆର୍ଥିକ ଅନଟନ ସତ୍ତ୍ୱେ ନିଜ ଆଦର୍ଶ ସହ ସାଲିସ୍ କରି ନାହିଁ ।



ପାରଳାର ବିଦ୍ୟୋତ୍ସାହୀମାନଙ୍କ ଗହଣରେ ରାଜଭ୍ରାତା ପଦ୍ମନାଭ ଦେବ

## ଆପନ୍ନା ପରିଚ୍ଛା

### ବାଲ୍ୟଜୀବନ ଓ ଶିକ୍ଷା :

ପାରଳାଖେମୁଣ୍ଡିକୁ ଶାସନ କରିଆସିଥିବା ଚନ୍ଦ୍ରବଂଶୀୟ ଗଙ୍ଗମାନେ ଧର୍ମ, ସାହିତ୍ୟ ଓ ସଂସ୍କୃତିକୁ ପୃଷ୍ଠପୋଷକତା ଦେଇ ଆସିଛନ୍ତି । ତେଣୁ କବିଶେଖର ଚିନ୍ତାମଣି ମହାନ୍ତି ପାରଳାକୁ ପୁଣ୍ୟପୀଠ ରୂପେ ସମ୍ବୋଧନ କରିଯାଇଛନ୍ତି । ଏଠାରେ ରାଜା, ପ୍ରଜା ସମସ୍ତେ ସ୍ୱଧର୍ମ ପାଳନ ପାଇଁ ଆତ୍ମୋତ୍ସର୍ଗ କରିବାକୁ କେବେ ମଧ କୁଣ୍ଠା ପ୍ରକାଶ କରିନାହାନ୍ତି । ରାଜାମାନେ ଯୁଦ୍ଧ ବିଗ୍ରହବେଳେ ଯେପରି ଅସୀଚାଳନା ପୂର୍ବକ ନିଜର ବିକ୍ରମ ପ୍ରଦର୍ଶନ କରିଛନ୍ତି ବିଶ୍ରାନ୍ତି ସମୟରେ ମସି ଚାଳନାରେ ସେମାନଙ୍କ ସିଦ୍ଧି ତତୋଧିକ ସାବ୍ୟସ୍ତ ହୋଇଛି । ରାଜା ଜଗନ୍ନାଥ ନାରାୟଣ ଦେବ( ୨ୟ) ତା'ର ଏକ ଉଦାହରଣ । ଏକ ଦିଗରେ ରଣ-ଦୁନ୍ଦୁଭିର ଗର୍ଜନ, ଅନ୍ୟ ଦିଗରେ କୃଷ୍ଣପ୍ରେମର ମନ୍ଦାକିନୀ ସଦୃଶ୍ୟ "ବୃନ୍ଦାବନ ଚନ୍ଦ୍ର ବିହାର" । ଏ ଦୁଇ ପରସ୍ପର ବିରୋଧୀ ବ୍ୟଞ୍ଜନା ମଧ୍ୟରେ ଦଣ୍ଡାୟମାନ ଥିଲେ ରାଜା ଜଗନ୍ନାଥ ନାରାୟଣ ଦେବ, ଠିକ୍ ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ପରି । ରାଗାନୁଗା ଭକ୍ତିର ଏହା ଏକ ପାବନ ପୀଠ । ଦେହକୁ ଦେହାତୀତ ସହ ମିଳନ କରାଇ ପାରୁଥିବା ଏଠିକାର ବୈଷ୍ଣବ କବି ଗୋପାଳକୃଷ୍ଣ ମଧ ଅସୀ ସହ ମସି ଚାଳନା କରିବାରେ ସିଦ୍ଧହସ୍ତ ଥିଲେ । ପାରଳାଖେମୁଣ୍ଡିରେ ୧୭୬୭ ସାଲରୁ ୧୮୩୪ ପର୍ଯ୍ୟନ୍ତ ଯୁଦ୍ଧରେ ବ୍ୟାପୃତ ରହିଥିବା ରାଜା, ପ୍ରଜା, ପାଇକ, ଦୋରା, ବିଶୋଇ, ସଉରା, ସାଆନ୍ତ ସଭିଏଁ ଯୁଦ୍ଧର

ଘନଘଟା ବେଳେ ମଧ ସାରସ୍ୱତ ସାଧନା ମାର୍ଗରୁ ବିଚ୍ୟୁତ ହୋଇନାହାନ୍ତି । ଗୋପାଳକୃଷ୍ଣ ପଟ୍ଟନାୟକ, ଗୌରହରି ପରିଚ୍ଛା, ପୁରୁଷୋତ୍ତମ କବିରତ୍ନ, କବିଭୂଷଣ ଗୋପୀନାଥ ପାତ୍ର, ଜଗନ୍ନାଥ ନାରାୟଣ ଦେବ(୨), ଚୈତନ୍ୟ ରାଜଗୁରୁ, ମଧୁ ତ୍ରିପାଠୀ ସମସ୍ତେ ବ୍ରିଟିଶ ବିରୋଧୀ ଯୁଦ୍ଧର ଘନଘଟାବେଳେ ନିଜ ନିଜର ସାରସ୍ୱତ ସାଧନା ଅବ୍ୟାହତ ରଖିଥିଲେ । ତେବେ କାଳ ବଡ କ୍ରୂର । ଶେଷରେ ଇଂରେଜମାନଙ୍କ ଅତ୍ୟାଧୁନିକ କମାଣ ମୁହଁରେ ବଳି ପଡିଲା ପାରଳାର ସମ୍ମିଳିତ ଶକ୍ତି । ଦେଶୀ ବନ୍ଧୁକଧାରୀ ପାରଳାର ପାଇକ, ଶବର-ତୀରନ୍ଦାଜ, ପାଷାଣ, କୃପାଣ, ପାଞ୍ଚଣ ସାହାଯ୍ୟରେ ଆକ୍ରମଣ, ପ୍ରତ୍ୟାକ୍ରମଣ ଦୀର୍ଘ ୬୭ ବର୍ଷ କାଳ ଚଳାଇ ରଖିଥିଲେ । ପରିଶେଷରେ ପାରଳା ସେନା ପରାଜୟ ସ୍ୱୀକାର କଲା 'ଶିଖିମନାଇ'ଙ୍କ ଅନ୍ତର୍ଘାତୀ କାର୍ଯ୍ୟ ଯୋଗୁଁ । ଅସୀ ଯୁଦ୍ଧ ଶେଷ ହୋଇଗଲେ ସୁଦ୍ଧା ମସି ଯୁଦ୍ଧ ଅବ୍ୟାହତ ରହିଥିଲା ପାରଳାମୂଳକରେ ।

ମାନ୍ଦ୍ରାଜ ଶାସନ କେନ୍ଦ୍ରରୁ ଶାସନ କରୁଥିବା ଇଷ୍ଟ ଇଣ୍ଡିଆ କମ୍ପାନୀ ଓ ପରବର୍ତ୍ତୀ ଇଂରେଜ ସରକାର ପାରଳାଖେମୁଣ୍ଡିରେ ନିଜର ସମ୍ପୂର୍ଣ୍ଣ କ୍ଷମତା ଉପଯୋଗ କରିବା ପରେ ଓଡ଼ିଆମାନଙ୍କର ସୀମାହୀନ ଦୁର୍ଦ୍ଦଶାର ଅୟମାରମ୍ଭ ହେଲା । କୌଣସି ନା କୌଣସି ବ୍ୟାହି ଦେଇ ଇଂରେଜ ସରକାର ପାରଳାଖେମୁଣ୍ଡି ଜମିଦାରିକୁ ତତ୍ତ୍ୱାବଧାରକ ପରିଷଦ (Court of Wards) ଅଧୀନରେ ରଖି ସମସ୍ତ ଗୁରୁତ୍ୱପୂର୍ଣ୍ଣ ପଦରେ ଅଣଓଡ଼ିଆ କର୍ମଚାରୀ ଅବା ସାକ୍ଷୀ କଣ୍ଢେଇ ଓଡ଼ିଆଙ୍କୁ ନିଯୁକ୍ତି ଦେଇ ଶାସନକୁ ସିଧାସଳଖ ନିଜେ ପରିଚାଳନା କରିବା ପାଇଁ ପ୍ରୟାସ କଲେ । ଏହି ସ୍ଥିତିରେ ଇଂରେଜ ବୋଲକରା ଅଣଓଡ଼ିଆ କର୍ମଚାରୀମାନେ ସମସ୍ତ ସିରସ୍ତା କାର୍ଯ୍ୟ, କୋର୍ଟ କଚେରୀ କାର୍ଯ୍ୟ ତେଲୁଗୁ ଭାଷାରେ ସମ୍ପାଦନ କରିବା ଦ୍ୱାରା ଓଡ଼ିଆମାନେ ନିଜ ଜନ୍ମଭୂମିରେ ହୀନମନ୍ୟତାର ଶିକାର ହେଲେ । ସ୍କୁଲମାନଙ୍କରେ ମଧ ତେଲୁଗୁ ମାଧମରେ ଶିକ୍ଷାଦାନ କରାଗଲା । ଓଡ଼ିଆ ଭାଷାରେ ସରକାରଙ୍କୁ ଲେଖି ହାରିଗୁହାରି କଲେ କେହି ଶୁଣିଲେ ନାହିଁ । ତେଲୁଗୁରେ ଲେଖାଲେଖି କରିବା ପାଇଁ ଜାଣିଶୁଣି ବାଧ୍ୟବାଧକ ପରିସ୍ଥିତି ଅଣଓଡ଼ିଆ କର୍ମଚାରୀମାନେ ସୃଷ୍ଟିକଲେ । ମାନ୍ଦ୍ରାଜ ଅଧୀନ ପାରଳାଖେମୁଣ୍ଡିରେ ଓଡ଼ିଆ ଭାଷା ଏପରି ଦୁର୍ଦ୍ଦିନ ଦେଇ ଗତି କରୁଥିବା ବେଳେ ତେଣେ ମଧ୍ୟପ୍ରଦେଶ ଅଧୀନ ଓଡ଼ିଆ ଅଞ୍ଚଳରେ ହିନ୍ଦୀକୁ ଓ କଲିକତା ଅଧୀନରେ ଥିବା ଓଡ଼ିଆ ଅଞ୍ଚଳରେ ବଙ୍ଗଳାକୁ ଜୋରଜବରଦସ୍ତ ସେଠିକାର ଲୋକଙ୍କ ଉପରେ ଲଦି ଦିଆଗଲା । ପ୍ରାକୃତିକ ଓଡ଼ିଶାର ସବୁଆଡେ ଓଡ଼ିଆ ଭାଷା, ସାହିତ୍ୟ ପଦଦଳିତ ହେବାକୁ ଲାଗିଲା । ଏପରି ଏକ ସନ୍ଧିକ୍ଷଣରେ ଆଧୁନିକ ଓଡ଼ିଶାର ଦକ୍ଷିଣ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଭୂଲୁଣ୍ଠିତ ହେବା ସହ ଅଣଓଡ଼ିଆଙ୍କର ଈର୍ଷା ଓ ଅସୂୟାର

ଶିକାର ହେଲେ ଓଡ଼ିଆମାନେ । ଏଠି 'ଉପାନ୍ତ' ନାମକ ବହୁଳ ବ୍ୟବହୃତ ଶବ୍ଦଟିର ସାମାନ୍ୟ ବ୍ୟାଖ୍ୟା କରିବା ଉଚିତ ମନେହୁଏ । ଉତ୍କଳ ସମ୍ମିଳନୀ ୧୯୦୩ରେ ଗଠିତ ହେବାପରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ଦାବି ଉପସ୍ଥାପନ କରାଯାଇଥିଲା । ସେହି ଦାବିରେ ଯେଉଁ ଅଞ୍ଚଳ ନୂତନ ଓଡ଼ିଶା ପ୍ରଦେଶରେ ଅନ୍ତର୍ଭୁକ୍ତ କରିବାକୁ ପ୍ରସ୍ତାବ ଦିଆଯାଇଥିଲା ସେ ସମସ୍ତ ଅଞ୍ଚଳ ନୂତନ ଓଡ଼ିଶାରେ ନ ମିଶି ଆଂଶିକଭାବେ ମିଶ୍ରଣ ହୋଇଥିଲା । ଏପରି ହେବା ଦ୍ୱାରା ନୂତନ ଓଡ଼ିଶା ପ୍ରଦେଶର ନିର୍ଣ୍ଣିତ ଭୌଗୋଳିକ ସୀମାର ଅପର ପାର୍ଶ୍ୱରେ, ଦାବିଭୁକ୍ତ ଯେଉଁ ଅଞ୍ଚଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ରହିଗଲା, ସେଗୁଡ଼ିକୁ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ କୁହାଗଲା । ବିଚ୍ଛିନ୍ନାଞ୍ଚଳକୁ ଲାଗି ନବଗଠିତ ଓଡ଼ିଶା ଭିତରେ ଥିବା ଅଞ୍ଚଳକୁ ଉପାନ୍ତ ଅଞ୍ଚଳର ଆଖ୍ୟା ଦିଆଗଲା । ଆଧୁନିକ ଓଡ଼ିଶା ଓ ବିଚ୍ଛିନ୍ନାଞ୍ଚଳ ବାହାରେ ରହିଯାଇଥିବା ଓଡ଼ିଆମାନେ ପ୍ରବାସୀ ଓଡ଼ିଆ ଭାବେ ପରିଚିତ । ୧୯୩୬ ଏପ୍ରିଲ ୧ ତାରିଖରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଭାବେ ଜନ୍ମନେବା ଠାରୁ ଏହିପରି ଭାବରେ 'ଉପାନ୍ତ ଅଞ୍ଚଳ', 'ବିଚ୍ଛିନ୍ନାଞ୍ଚଳ' ଓ 'ପ୍ରବାସୀ ଓଡ଼ିଆ' ଶବ୍ଦ ପ୍ରୟୋଗ କରାଯାଉଅଛି ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଥିଲା ଓଡ଼ିଆଙ୍କ ପାଇଁ ଏକ ସନ୍ଧିକ୍ଷଣ । ଏହି ସମୟରେ ସବୁଦିଗରୁ ଓଡ଼ିଆ ଭାଷାପ୍ରତି ବିପଦ ଘନେଇ ଆସିଥିଲା । ଆଧୁନିକ ଓଡ଼ିଶାର ଦକ୍ଷିଣ ବିଚ୍ଛିନ୍ନାଞ୍ଚଳ ସବୁଠାରୁ ଅଧିକ ବିପଦର ସମ୍ମୁଖୀନ ହୋଇଥିଲା । ବିଦେଶୀଙ୍କ ସହ ଯୁଦ୍ଧ ବିଗ୍ରହ ବେଳେ ଯେଉଁ କେତେକ ସାରସ୍ୱତ ସାଧକଙ୍କ ଅବିରତ ଲେଖନୀ ଚାଳନା ଓଡ଼ିଆ ଭାଷା ସାହିତ୍ୟକୁ ବଞ୍ଚାଇ ରଖି ସାରସ୍ୱତ କ୍ଷେତ୍ରକୁ ସମୃଦ୍ଧ କରିବା ସହ ଓଡ଼ିଆ ଜାତିକୁ ଏକ ମହାନ୍ ବିପଦରୁ ରକ୍ଷା କରିଥିଲା, ତାହା ପୁଣି ବିପଦଗ୍ରସ୍ତ ହେଲା ଇଂରେଜମାନଙ୍କ ନିରଙ୍କୁଶ ଶାସନ ଜାହିର ହେବା ପରେ । ୧୮୩୫ ସାଲରୁ ଅବସ୍ଥା କ୍ରମେ କ୍ରମେ ଅଧିକରୁ ଅଧିକ ଜଟିଳ ହେବାକୁ ଲାଗିଲା । ମାନ୍ଦ୍ରାସ ଅଧୀନରେ ରହି ଦକ୍ଷିଣାଞ୍ଚଳର ତେଲୁଗୁ ଭାଷାଭାଷୀଙ୍କ ଦ୍ୱାରା ଦଳିତଦଳାନ୍ତ ହେଉଥିବା ବେଳେ ସମ୍ବଲପୁର ଅଞ୍ଚଳରେ ହିନ୍ଦୀକୁ ଜବରଦସ୍ତ ପ୍ରଚଳନ କରାଗଲା । ବଙ୍ଗାଳୀମାନେ କହିଲେ, 'ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନଏ' । ଏପରି ଭାବରେ ଭାଷା ସର୍ବତ୍ର ଅବହେଳା ଓ ଅସୂୟାର ଶିକାର ହେଲା । ଦକ୍ଷିଣାଞ୍ଚଳରେ ଓଡ଼ିଆମାନଙ୍କ ଏହି ଦୁର୍ଦ୍ଦିନ ବେଳେ କେତେକ କ୍ଷଣଜନ୍ମା ଓଡ଼ିଆଙ୍କର ଆବିର୍ଭାବ ଓଡ଼ିଆ ଜାତିକୁ ପୁନର୍ବାର ଏକ ମହାନ୍ ବିପର୍ଯ୍ୟୟରୁ ରକ୍ଷା କରିଦେଇଥିବା ମନେହୁଏ । ସେହି କ୍ଷଣଜନ୍ମାମାନଙ୍କ ମଧ୍ୟରେ ଆପନ୍ନା ପରିଛା ଅନ୍ୟତମ ।

ଆପନ୍ନା ପରିଛାଙ୍କ ଜନ୍ମ ୧୮୭୮ ମଇ ମାସ ୨୨ ତାରିଖରେ ବୋଲି ବିଷ୍ଣୁଚରଣ

ମହାନ୍ତି 'ପାରଳା ପ୍ରତିଭା' ପୁସ୍ତକରେ ଉଲ୍ଲେଖ କରିଅଛନ୍ତି । କିନ୍ତୁ ତାଙ୍କ ପରିବର୍ତ୍ତୀ ସମସ୍ତ ଆଲୋଚକ ଆପନ୍ନାଙ୍କର ଜନ୍ମ ୧୮୭୯ ସାଲ ବୋଲି ଦର୍ଶାଇଛନ୍ତି । ଜାତକ ଏବଂ ସ୍କୁଲ ପ୍ରମାଣ ପତ୍ର ଅନୁପଲବ୍ଧ ହେଉଥିବାରୁ ପ୍ରକୃତ ଜନ୍ମ ସମୟ ନିର୍ଣ୍ଣୟ କରିବା ଏକ କଷ୍ଟସାଧ ବ୍ୟାପାର । ତଥାପି ଅନୁସନ୍ଧାନରୁ ଜଣାଯାଏ ଯେ ୧୯୧୫ ଜାନୁୟାରୀ ୮ ତାରିଖରେ ପାରଳାଖେମୁଣ୍ଡି ସବ୍‌ରେଜିଷ୍ଟ୍ରାରଙ୍କ ସମ୍ମୁଖରେ ପୁରୀ ରାଧାକାନ୍ତ ମଠର ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀ (ଗୁରୁ ବଳଭଦ୍ର ଦାସ) ଗଞ୍ଜାମ ଜିଲ୍ଲାରେ ତାଙ୍କ ମାଲିକନାରେ ଥିବା ସମସ୍ତ ମଠ, ମନ୍ଦିର ଓ ସମ୍ପତ୍ତିର ପରିଚାଳନା କରିବାକୁ ଆପନ୍ନା ପରିଚ୍ଛାଙ୍କ ନାମରେ ଏକ କ୍ଷମତାପତ୍ର ଲେଖିଦେଇଥିଲେ । ଏହି ପଞ୍ଜୀକୃତ ଦଲିଲର କ୍ରମାଙ୍କ ୨, ଭାଗ ନଂ ୬, ପୁସ୍ତକ ନଂ ୪ ର ପୃଷ୍ଠା ୪୭୮ ଅଟେ । ଏଥିରେ ଆପନ୍ନା ପରିଚ୍ଛାଙ୍କର ବୟସ ୩୬ ବର୍ଷ ବୋଲି ଉଲ୍ଲେଖ କରାଯାଇଅଛି । ନିୟମ ଅନୁସାରେ ଜଣେ ବ୍ୟକ୍ତି ଯେତିକି ବର୍ଷ ସମ୍ପୂର୍ଣ୍ଣ କରିଥିବ ତାହାର ବୟସ ସେତିକି ବୋଲି ହିଁ ଉଲ୍ଲେଖ କରାଯିବ ସରକାରୀ କାଗଜ ପତ୍ରରେ । ୧୮୭୯କୁ ଜନ୍ମ ବର୍ଷ ଭାବେ ହିସାବ କଲେ ଦଲିଲ ସମ୍ପାଦନ ସମୟକୁ ୩୬ ବର୍ଷ ସମ୍ପୂର୍ଣ୍ଣ ହେଉନାହିଁ; କିନ୍ତୁ ୧୮୭୮ ସାଲଠୁଁ ହିସାବ କଲେ ୩୬ ବର୍ଷ ପୂର୍ଣ୍ଣ ହେଉଅଛି । ସୁତରାଂ ବିଷ୍ଣୁ ମହାନ୍ତିଙ୍କ କହିବା ଅନୁସାରେ ଆପନ୍ନା ପରିଚ୍ଛାଙ୍କର ଜନ୍ମ ତା.୨୨.୫.୧୮୭୮ ହିଁ ହେବା କଥା । କିନ୍ତୁ ଆପନ୍ନା ତାଙ୍କ ଦିନଲିପିରେ ୧୬.୨.୧୯୧୩ରେ ଉଲ୍ଲେଖ କରିଛନ୍ତି ଯେ ତାଙ୍କୁ ସେହି ଦିନ ୩୪ ବର୍ଷ ପୂର୍ଣ୍ଣ ହେଲା । ଅର୍ଥାତ୍ ଏହି ଦିନରୁ ୩୪ ବର୍ଷ ପୂର୍ବେ ୧୬.୨.୧୮୭୯ରେ ସେ ଭୂମିଷ୍ଠ ହୋଇଥିଲେ ।

ଆପନ୍ନାଙ୍କ ମାତାଙ୍କ ନାମ ରତ୍ନମଣି ଓ ପିତାଙ୍କ ନାମ ଲକ୍ଷ୍ମୀନାରାୟଣ ପରିଚ୍ଛା । ବତ୍ସ(ସ) ଗୋତ୍ରୀୟ ଯଜୁର୍ବେଦାନ୍ତର୍ଗତ ଏକ ସମ୍ଭ୍ରାନ୍ତ ଲୌକିକ ବ୍ରାହ୍ମଣ (ସ୍ଥାନୀୟ ଭାବେ ହଳୁଆ) ପରିବାରରେ ପାରଳାଖେମୁଣ୍ଡି ସହରର ରାଜଗୁରୁ ସାହିରେ ଆପନ୍ନା ପରିଚ୍ଛା ଭୂମିଷ୍ଠ ହୋଇଥିଲେ । ସେତେବେଳେ ପିତା ଲକ୍ଷ୍ମୀନାରାୟଣ ପରିଚ୍ଛା ଥିଲେ ପରିଚ୍ଛା (ରସିକରାଜ) ମଠର ଅଧିକାରୀ । ମାତା ରତ୍ନମଣୀ ଜଣେ ସୁଗୃହିଣୀ । ଲକ୍ଷ୍ମୀନାରାୟଣ ତିନିପୁତ୍ର ଓ ଏକମାତ୍ର କନ୍ୟାର ଜନକ । ତିନି ପୁତ୍ରଙ୍କ ମଧ୍ୟରେ ଆପନ୍ନା ଥିଲେ ସର୍ବକନିଷ୍ଠ । ତାଙ୍କର ଏକ ମାତ୍ର ଭଗିନୀଙ୍କର ତା.୫.୯.୧୯୦୮ ରିଖରେ ଆପନ୍ନାଙ୍କ ଜୀବିତାବସ୍ଥାରେ ଦେହାନ୍ତ ହୋଇଯାଇଥିଲା । ଆପନ୍ନା ଥିଲେ ଅତ୍ୟନ୍ତ ଶାନ୍ତ, ସୌମ୍ୟ ଓ ବପୁବନ୍ତ । ବାଲ୍ୟକାଳରୁ ବିଦ୍ୟାପ୍ରତି ତାଙ୍କର ଗଭୀର ଆଗ୍ରହ ରହିଥିଲା । ପ୍ରାରମ୍ଭିକ ଶିକ୍ଷା ପାଇଁ ନିଜ ସାହିର ଉପରମୁଣ୍ଡ ଚାଟଶାଳୀରେ ତାଙ୍କୁ ଭର୍ତ୍ତି କରାଯାଇଥିଲା । ଚାଟଶାଳୀ ଶିକ୍ଷାପରେ ଉଚ୍ଚ ପ୍ରାଥମିକ ତଥା ମାଧମିକ ଶିକ୍ଷା ପାଇଁ ସେ ସ୍ଥାନୀୟ ମଧ ଇଂରେଜୀ ବିଦ୍ୟାଳୟରେ

ଯୋଗ ଦେଇଥିଲେ । ଆପନ୍ନାଙ୍କ ଜନ୍ମବର୍ଷ ଅର୍ଥାତ୍ ୧୮୭୮ରେ ପାରଳାଖେମୁଣ୍ଡିରେ ମ.ଇଂ. ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ପାରଳାରେ ବର୍ତ୍ତମାନ ଥିବା ମହାରାଜାଙ୍କ ଉଚ୍ଚ ବିଦ୍ୟାଳୟଟି ଉପରୋକ୍ତ ମ.ଇଂ. ବିଦ୍ୟାଳୟର ପରିବର୍ଦ୍ଧିତ ରୂପ । ସେ ସେତେବେଳେ ପ୍ରଚଳିତ ଥିବା ଏସ୍.ଏସ୍.ଏଲ୍.ସି (secondary school leaving certificate) ପର୍ଯ୍ୟନ୍ତ ଶିକ୍ଷାଲାଭ କରିଥିବା ଅନୁମିତ ହୁଏ । ଏ ସମ୍ପର୍କରେ କାହା ପାଖରେ କୌଣସି ପ୍ରକାର ପ୍ରାମାଣିକ ତଥ୍ୟ ନାହିଁ । କେବଳ କେତେକ ଶୁଣା କଥାରେ ଜଣେ ଯାହା ପ୍ରକାଶ କରିଦେଇଛନ୍ତି, ପରବର୍ତ୍ତୀ ଲେଖକମାନେ ତାହା ଦୋହରାଇଛନ୍ତି ମାତ୍ର । କେତେକ ଆଲୋଚକ ଆପନ୍ନା ପରିଚ୍ଛାଙ୍କ ଶିକ୍ଷାଗତ ଯୋଗ୍ୟତା ମାଟ୍ରିକ୍ ବୋଲି ଉଲ୍ଲେଖ କରିଛନ୍ତି । ଅନ୍ୟ କେତେକ ତାଙ୍କ ଯୋଗ୍ୟତା ମଧ୍ୟ ଇଂରାଜୀ ଅର୍ଥାତ୍ ସପ୍ତମ ଶ୍ରେଣୀ ବୋଲି ଦର୍ଶାଇଅଛନ୍ତି । ଆମ ଅନୁସନ୍ଧାନରୁ ଜଣାଯାଏ ଯେ ଆପନ୍ନା ପରିଚ୍ଛା ଅବୈତନିକ ବେଞ୍ଚ ମାଜିଷ୍ଟ୍ରେଟ୍ ଭାବେ ନିଯୁକ୍ତି ପାଇ କିଛି ବର୍ଷ କାର୍ଯ୍ୟ କରିଥିଲେ । ସେ କାଳରେ ଏସ୍.ଏସ୍.ଏଲ୍.ସି. (ଅର୍ଥାତ୍ ପରବର୍ତ୍ତୀ କାଳର ମାଟ୍ରିକ ସହ ସମାନ) ଯୋଗ୍ୟତା ଥିବା ବ୍ୟକ୍ତିଙ୍କୁ ସେପରି ମର୍ଯ୍ୟାଦାବନ୍ତ ପଦରେ ନିଯୁକ୍ତି ଦିଆଯାଉଥିଲା । ତେଣୁ ତାଙ୍କ ଶିକ୍ଷାଗତ ଯୋଗ୍ୟତା ଏସ୍.ଏସ୍.ଏଲ୍.ସି. ବୋଲି କୁହାଯାଇପାରେ ।

ପାରଳାଖେମୁଣ୍ଡିରେ ଆପନ୍ନା ପରିଚ୍ଛାଙ୍କ ପରିବାରର ଆଦି ପୁରୁଷ କାଳିଆ ପଣ୍ଡା (ପରେ ପରିଚ୍ଛା) । ଏମାନେ ମାଧ୍ୱ ଗୌଡୀୟ ବୈଷ୍ଣବ ଦୀକ୍ଷା ଗ୍ରହଣ କରି ଶୁଦ୍ଧପୂତ ଜୀବନ ଯାପନ କରିଆସୁଥିବାରୁ ଆପନ୍ନାଙ୍କ ଚରିତ୍ରରେ ତା'ର ଗଭୀର ପ୍ରଭାବ ପଡ଼ିଥିଲା । ତେଣୁ, ସେ ପିଲାଦିନରୁ ଶାନ୍ତ, ସୌମ୍ୟ ଓ ନମ୍ର ସ୍ୱଭାବର ଥିଲେ । ସାଧାରଣତଃ ବିତ୍ତଶାଳୀ ପରିବାରର ସନ୍ତାନସନ୍ତତି ବିବେକହୀନ ହୋଇ ନାନା କୁକାର୍ଯ୍ୟ କରନ୍ତି । ସେଥିପାଇଁ ତ କୁହାଯାଇଛି – "ଯୌବନ ଧନ ସମ୍ପତ୍ତି ପ୍ରଭୁତ୍ୱମବିବେକିତା ଏକୈକମପ୍ୟନର୍ଥାୟ କିମୁଯତ୍ର ଚତୁଷ୍ଟୟମ୍ ।" କିନ୍ତୁ ପାରିବାରିକ ପରିବେଶ ତାଙ୍କୁ ଏକ ସନ୍ଥତୁଲ୍ୟ ଜୀବନ ପ୍ରଣାଳୀ ବାଛି ନେବାକୁ ପ୍ରେରଣା ଯୋଗାଇଥିଲା । ସେ ସଂସାରର ଅସାର କାର୍ଯ୍ୟ ପ୍ରତି ଘୃଣା କରିବା ସହ ସ୍ୱୀୟ ବଂଶର ଆଭିଜାତିକ ପରମ୍ପରା ଓ ରୁଚି ପ୍ରତି ଆଗ୍ରହ ପ୍ରକାଶ କରୁଥିଲେ । ସେତେବେଳର ପ୍ରଚଳିତ ପ୍ରଥାନୁଯାୟୀ ସେ ବାଲ୍ୟବିବାହ କରିଥିଲେ । ବୈଦିକ ରୀତିରେ ତାଙ୍କର ବିବାହ ସମ୍ପନ୍ନ ହୋଇଥିଲା ପାରଳାଖେମୁଣ୍ଡିସ୍ଥ ବଡ ବ୍ରାହ୍ମଣ ସାହିର ସୁଭଦ୍ରା ଦେବୀଙ୍କ ସହିତ ।

ବୈଷ୍ଣବ ସାହିତ୍ୟ ଅଧ୍ୟୟନ, ଭଜନ, କୀର୍ତ୍ତନ, ରାଧାକୃଷ୍ଣ ପ୍ରଣୟ ଆଧାରୀତ ସାହିତ୍ୟ ପଠନ, ପାଠନ ସହ ଛାତ୍ରାବସ୍ଥାରୁ ସାଂସ୍କୃତିକ କାର୍ଯ୍ୟପ୍ରତି ତାଙ୍କର ବିଶେଷ ରୁଚି ରହିଥିଲା ।

ନିଜର ପାରିବାରିକ ମଠ ଥିଲା ତାଙ୍କର ବାଲ୍ୟ ତଥା ପୌଗଣ୍ଡର ସାଧନାକ୍ଷେତ୍ର । ସେ ଚାହିଁଥିଲେ ଉଚ୍ଚ ରାଜକାର୍ଯ୍ୟରେ ସବୈତନିକ ଅଧିକାରୀ ଭାବେ ଯୋଗଦେଇ ପାରିଥାନ୍ତେ । କିନ୍ତୁ ତାଙ୍କର ସ୍ୱାଧୀନଚେତା ମନୋବୃତ୍ତି ତାଙ୍କୁ ସେଥିପାଇଁ ନିରୁତ୍ସାହିତ କରିଥିଲା । ତାତ୍‌କାଳିକ ସମୟରେ ଓଡ଼ିଆଙ୍କର ଦୟନୀୟ ଅବସ୍ଥା ମର୍ମେ ମର୍ମେ ଅନୁଭବ କରିଥିଲେ ସେ । ଏହି ମର୍ମବେଦନା ତାଙ୍କୁ ପ୍ରରୋଚିତ କରିଥିଲା ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ତଥା ଉନ୍ନତି ପାଇଁ ନିଜକୁ ଉତ୍ସର୍ଗ କରିଦେବାକୁ । ପିତା ଲକ୍ଷ୍ମୀନାରାୟଣଙ୍କ ଦେହାନ୍ତ ହେଲା ୧୯୦୩ରେ । କିନ୍ତୁ ତା' ପୂର୍ବରୁ ତାଙ୍କ ପାରିବାରିକ-ପାରିବେଶିକ ସ୍ଥିତି ଆପନ୍ନାଙ୍କୁ ବାଧ କରିଥିଲା ପରିଚ୍ଛା (ରସିକରାଜ) ମଠର ଦାୟିତ୍ୱ ବହନ କରିବାକୁ । ତିନି ଭାଇଙ୍କ ମଧ୍ୟରେ ଆପନ୍ନା ସର୍ବକନିଷ୍ଠ ହେଲେ ମଧ୍ୟ ତାଙ୍କର ଧୀମତ୍ତା ଓ ଶିକ୍ଷାକୁ ବିଚାରକୁ ନେଇ ତାଙ୍କର ଦୁଇ ଜ୍ୟେଷ୍ଠ ଭ୍ରାତା ୧୮୯୮ ଖ୍ରୀଷ୍ଟାବ୍ଦରେ ଆପନ୍ନାଙ୍କ ନାମରେ ଏକ କ୍ଷମତାପତ୍ର ସମ୍ପାଦନ କରିଦେଇ ମଠର ସମସ୍ତ ଦାୟିତ୍ୱ ତାଙ୍କୁ ନ୍ୟସ୍ତ କରିଦେଇଥିଲେ । ଉକ୍ତ କ୍ଷମତା ପତ୍ରଟି ପାରଳାଖେମୁଣ୍ଡି ସବ୍‌ରେଜିଷ୍ଟ୍ରାରଙ୍କ ଇଜ୍‌ଲାସରେ ପଂଜୀକୃତ ହୋଇଅଛି । ଆପନ୍ନା ପରିଚ୍ଛା ରସିକରାଜ ମଠର ମୁଖ୍ୟ ପରିଚାଳକ ଦାୟିତ୍ୱ ନେବାଠାରୁ ଏହା କ୍ରମେ କ୍ରମେ ଓଡ଼ିଆ ଜାତିର ଏକ ସାଂସ୍କୃତିକ ପୀଠ ଭାବରେ ଗଢ଼ି ଉଠିଲା । ଅବହେଳିତ ଓଡ଼ିଆଜାତିର ଅଭ୍ୟୁତ୍‌ଥାନ ପାଇଁ ଆପନ୍ନା ପରିଚ୍ଛା ନିଜକୁ ବାଜି ଲଗାଇ ଦେଇଥିଲେ । ୧୮୯୮ରୁ ୧୯୨୮ ପର୍ଯ୍ୟନ୍ତ ଦୀର୍ଘ ୩୦ ବର୍ଷ ପରିଚ୍ଛା ମଠ ଓଡ଼ିଆ ଜାତି ଉଦ୍ଦେଶ୍ୟରେ ସମର୍ପିତ ହୋଇଥିବା ପରବର୍ତ୍ତୀ ଆଲୋଚନାରୁ ସ୍ପଷ୍ଟ ହେବ ।

ଆପନ୍ନା ପରିଚ୍ଛା ତାଙ୍କ ବଂଶର ପାରଳାଖେମୁଣ୍ଡି ଶାଖାର ପଞ୍ଚମ ପୁରୁଷର ସର୍ବକନିଷ୍ଠ ସନ୍ତାନ । ତାଙ୍କ ବଂଶବଲ୍ଲରୀଟି ଏହିପରି —



## ପରିଚ୍ଛା ମଠ ଓ ଅନ୍ୟାନ୍ୟ ମଠ ପରିଚାଳନା :

ପରିଚ୍ଛା ମଠ ଥିଲା ଏକ ବିତ୍ତଶାଳୀ ମଠ । ଏହାର ଭୂସମ୍ପତ୍ତିର ପରିମାଣ ପ୍ରାୟ ଏକ ହଜାର ଏକର । ଏପରି ଏକ ବିଶାଳ ମଠର ଅଧିକାରୀ ଭାବେ ପରିଚ୍ଛା ପରିବାର ଏକ ବିଭବଶାଳୀ ଜମିଦାରର ମର୍ଯ୍ୟାଦା ପାଉଥିଲେ । ସାଧୁ, ସଂଭ୍ରାନ୍ତ, ଶିକ୍ଷିତ ଓ ମାର୍ଜିତ ସ୍ୱଭାବ ସମ୍ପନ୍ନ ଆପନ୍ନା ପରିଚ୍ଛା ଉକ୍ତ ମଠର ଦାୟିତ୍ୱ ବହନ କଲାବେଳକୁ ତାଙ୍କର ବୟସ ମାତ୍ର ୨୦ ବର୍ଷ । ଆପନ୍ନା ମଠ ଦାୟିତ୍ୱ ନେବା ଦ୍ୱାରା ପରିଚ୍ଛା ପରିବାରର ଖ୍ୟାତି ବୃଦ୍ଧି ପାଇବାରେ ଲାଗିଲା । କହିବାକୁ ଗଲେ ପାରଳାଖେମୁଣ୍ଡିର ରାଜା ଏବଂ ତାଙ୍କ ଦୀକ୍ଷା ଗୁରୁଙ୍କ ପରେ ଆପନ୍ନା ପରିଚ୍ଛା ସମାଜର ସକଳ ବର୍ଗର ଲୋକଙ୍କ ଦ୍ୱାରା ଜଣେ ଅତି ମର୍ଯ୍ୟାଦାବନ୍ତ ବ୍ୟକ୍ତି ଭାବେ ଗଣ୍ୟ ହେବାକୁ ଲାଗିଲେ ।

ଆପନ୍ନା ପରିଚ୍ଛା ୧୮୯୮ରେ ପରିଚ୍ଛା ମଠ ଦାୟିତ୍ୱ ବହନ କରିଥିଲେ ନିଜ ଜ୍ୟେଷ୍ଠ ଭ୍ରାତାମାନଙ୍କ ଅନୁରୋଧରେ । ତାଙ୍କ ଉଦ୍ୟମରେ ମଠର ଆୟ ବୃଦ୍ଧି ପାଇ ବାର୍ଷିକ ପ୍ରାୟ ୯୬୦୪୦ ଟଙ୍କା ସ୍ପର୍ଶ କରିଥିବା ବିଭିନ୍ନ ଆଲୋଚକ ଯାହା ଏଥିପୂର୍ବରୁ ପ୍ରକାଶ କରିଛନ୍ତି ଆମେ ମଧ ସେଥିସହ ଏକମତ । ବିଂଶ ଶତାବ୍ଦୀର ଆଦ୍ୟ ଚରଣରେ ପାରଳାଖେମୁଣ୍ଡି ଜମିଦାରିର ଧନୀକ ବ୍ୟକ୍ତି ଭାବରେ ରାଜାଙ୍କର ସ୍ଥାନ ଥିଲା ୧ମ ଓ ୨ୟ ଧନୀ ଭାବେ ଗଣ୍ୟ ହେଉଥିଲା ରାଜାଙ୍କ ଦୀକ୍ଷା ଗୁରୁଙ୍କ ପାରଳାସ୍ଥିତ ବଡ ରାଧାକାନ୍ତ ମଠ । ତୃତୀୟ ଧନୀ ଭାବେ ପରିଚିତ ହେଉଥିଲା ଆପନ୍ନା ପରିଚ୍ଛାଙ୍କ ରସିକରାଜ ମଠ ।

ଆପନ୍ନା ପରିଚ୍ଛାଙ୍କ କର୍ମନିଷ୍ଠା ହେତୁ ପରିଚ୍ଛା ମଠ କ୍ରମୋନ୍ନତି ଲାଭ କରି ସେଥିର ଆୟ ବିଶେଷ ଭାବେ ବୃଦ୍ଧିପ୍ରାପ୍ତ ହେଲା ଏବଂ ମଠପ୍ରତି ସାଧାରଣ ଲୋକଙ୍କ ବିଶ୍ୱାସ ବୃଦ୍ଧି ପାଉଥିବା ଖବର ବଡ ରାଧାକାନ୍ତ ମଠର ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀଙ୍କୁ ପ୍ରଭାବିତ କଲା । ୧୯୧୫ ଇଂରାଜୀ ନବବର୍ଷର ପ୍ରଥମ ଦିନ ସେ ସ୍ଥିର କଲେ ତାଙ୍କ ଅଧୀନସ୍ଥ ଗଞ୍ଜାମ ଜିଲ୍ଲାର ଥିବା ସମସ୍ତ ମଠର ପରିଚାଳନା ଦାୟିତ୍ୱ ଆପନ୍ନା ପରିଚ୍ଛାଙ୍କୁ ହସ୍ତାନ୍ତର କରିଦେବେ । ଏଥିପାଇଁ ଆପନ୍ନାଙ୍କ ସହ ଆଲୋଚନା କରିବା ପରେ ମହନ୍ତ ମହାଶୟ ତାଙ୍କ ନାମରେ ଏକ କ୍ଷମତା ପତ୍ର ଲେଖିଦେଲେ । ଏହି କ୍ଷମତାପତ୍ରଟି ସେହି ବର୍ଷ ଜାନୁଆରୀ ୮ ତାରିଖରେ ଭାଗ ନଂ ୬ ବହି ନଂ ୪ ପୃଷ୍ଠା ନଂ ୪୭୮ ଦଲିଲ ନଂ୨ରେ ପାରଳାଖେମୁଣ୍ଡି ସବ୍‌ରେଜିଷ୍ଟ୍ରାରଙ୍କ ସମ୍ମୁଖରେ ପଞ୍ଜୀକୃତ ହୋଇଥିଲା । ମହନ୍ତ ମହାରାଜାଙ୍କ ବ୍ୟକ୍ତିଗତ ମାଲିକନା ତଥା ତାଙ୍କ ଅଧୀନରେ ମଠ ମାଲିକାନାରେ ତତ୍‌କାଳୀନ ଟେକେଲି, ପାରଳାଖେମୁଣ୍ଡି ଓ ବ୍ରହ୍ମପୁର ତାଲୁକାରେ ଥିବା ମୋଟ ଆଠ ଗୋଟି ମଠ ସହ

ଯେତେକ ମନ୍ଦିର, ଭୂସମ୍ପତ୍ତି, କୋଠାବାଡ଼ି, ଜଳାଶୟ, ଜଙ୍ଗଲ ଓ ବଗାଏତ ଆଦି ଥିଲା ସେଗୁଡ଼ିକ ମଧ୍ୟରେ ଟେକେଲି ରାଧାକାନ୍ତ ମଠ, ମୁଖଲିଙ୍ଗମ୍ ମଠ, କରାପଲ୍ଲୀ ମଠ, ନିମିଗାଁ ମଠ, ତରଳାଗଡ ମଠ, ମହାଦେଇପୁର ମଠ (ବର୍ତ୍ତମାନ ଆନ୍ଧ୍ରରେ ଅଛି) ଏବଂ ପୁରୁଷୋତ୍ତମପୁର ଓ ସାବେଳିଆ ମଠ (ବର୍ତ୍ତମାନ ଗଞ୍ଜାମ ଜିଲ୍ଲାରେ ଅଛି) - ଏ ସମସ୍ତ ପରିଚାଳନା କରିବାକୁ ମହନ୍ତ ମହାରାଜ ସମ୍ପୂର୍ଣ୍ଣ କ୍ଷମତା ଆପନ୍ନା ପରିଚ୍ଛାଙ୍କୁ ଉପରୋକ୍ତ କ୍ଷମତାପତ୍ର ଦ୍ୱାରା ଅର୍ପଣ କରି ଦେଇଥିଲେ । ଏହି କ୍ଷମତା ପତ୍ରରୁ ବୁଝି ହେଉଛି, ଆପନ୍ନା ପରିଚ୍ଛାଙ୍କ ସଚ୍ଚୋଟତା ଓ କର୍ମ ଦକ୍ଷତା ଉପରେ ମହନ୍ତ ମହାରାଜାଙ୍କର କେତେ ଭରସା ଥିଲା । ୧୯୧୫ ଜାନୁଆରୀ ୨୦ ତାରିଖ ଦିନ ଆପନ୍ନା ପରିଚ୍ଛା ବଡ ରାଧାକାନ୍ତ ଓ ଅନ୍ୟାନ୍ୟ ମଠ ପରିଚାଳନା କାର୍ଯ୍ୟ ଆରମ୍ଭ କରିଥିବା ତାଙ୍କ ଦିନଲିପିରୁ ସୂଚନା ମିଳୁଛି । ବିନା କୌଣସି ପାରିଶ୍ରମିକରେ ସେ ଏ ଗୁରୁ ଦାୟିତ୍ୱ ତୁଲାଇଥିବା ଅନେକ ଆଲୋଚକ ମତ ଦେଇଛନ୍ତି । ଏ ସଂପର୍କରେ ନିର୍ଦ୍ଦିଷ୍ଟ ସୂଚନା ମିଳୁ ନାହିଁ । କିନ୍ତୁ କେତେକ ଆନୁଷଙ୍ଗିକ ଘଟଣାରୁ ପ୍ରତୀୟମାନ ହୁଏ ଯେ ସେ ବିନା ପାରିଶ୍ରମିକରେ ଉପରୋକ୍ତ କାର୍ଯ୍ୟ ନିର୍ବାହ କରୁଥିଲେ । ତାଙ୍କ ଦିନଲିପିରେ ତା.୨୦.୧.୧୯୧୫ରେ ସେ ଲେଖିଛନ୍ତି "ମୁଁ ବଡ ମଠର ଅଧିକାରୀ କାର୍ଯ୍ୟ ଆରମ୍ଭ କରିଅଛି । ବଳଭଦ୍ର କାର୍ଯ୍ୟାଳୟର ତିନି ଫର୍ମ କାର୍ଯ୍ୟ ୪୦ ଟଙ୍କାରେ ନିଯୁକ୍ତ ହୋଇ କାର୍ଯ୍ୟ କରୁଅଛି ।" ଯେହେତୁ ବଳଭଦ୍ର ଦାସଙ୍କ ଦରମା କଥା ସେ ଉଲ୍ଲେଖ କରିଛନ୍ତି ନିଜେ ପାରିଶ୍ରମିକ ନବାର ଥିଲେ ଅବଶ୍ୟ ତାହା ସେ ଉଲ୍ଲେଖ କରିଥାନ୍ତେ । ଏଥିରୁ ଅନୁମାନ କରିହେଉଛି ଯେ ସେ ବିଭିନ୍ନ ମଠ ପରିଚାଳନା ପାଇଁ କୌଣସି ପାରିଶ୍ରମିକ ଦାବି କରିନାହାନ୍ତି କିମ୍ବା ନେଇନାହାନ୍ତି ।

ଅନ୍ୟାନ୍ୟ ମଠ ମନ୍ଦିର ମଧ୍ୟରେ ଆପନ୍ନା ପରିଚ୍ଛା ପରିଚାଳନା କରିଥିବା ଦୁଇଟି ପ୍ରମୁଖ ଅନୁଷ୍ଠାନ ହେଲା ଅଧୁନା ଆନ୍ଧ୍ର ପ୍ରଦେଶରେ ଥିବା ଟେକେଲି ରାଧାକାନ୍ତ ମଠ ଓ ମୁଖଲିଙ୍ଗମ୍ଠାରେ ଥିବା ମୁଖଲିଙ୍ଗେଶ୍ୱର । ଉକ୍ତ ଟେକେଲି ମଠର ପ୍ରତିଷ୍ଠାତା ହେଉଛନ୍ତି ପ୍ରିୟାବତୀ ନାମ୍ନୀ ଜଣେ ନର୍ତ୍ତକୀ । ଟେକେଲୀର ଜମିଦାର ପଦ୍ମନାଭ ଦେଓଙ୍କର ୭ ଜଣ ରକ୍ଷିତାଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମା । "ପଦ୍ମନାଭ ବହୁ ରମଣୀଙ୍କୁ ବିବାହ କରି ଅବା ରକ୍ଷିତା ରୂପେ ଗ୍ରହଣ କରି ନିଜେ କୃଷ୍ଣ ସାଜି ରାସକ୍ରୀଡା କରୁଥିଲେ ।" ତେବେ ଉକ୍ତ ମଠର ପ୍ରତିଷ୍ଠାତା ଓ ପୃଷ୍ଠପୋଷକଙ୍କ ସାମାଜିକ ସ୍ଥିତି ଯାହା ହୋଇଥାଉନା କାହିଁକି ସେମାନଙ୍କ ଦେହାନ୍ତ ହେବାର ବହୁ ବର୍ଷପରେ ସେହି ମଠର ପରିଚାଳନା ଦାୟିତ୍ୱ ଆପନ୍ନା ପରିଚ୍ଛାଙ୍କ ଉପରେ ନ୍ୟସ୍ତ କରାଯାଇଥିଲା ଓ ସେହି ସମୟରୁ ଏ ଯାବତ୍ ଉକ୍ତ ମଠ ତା'ର ପରମ୍ପରା ଅକ୍ଷୁଣ୍ଣ ରଖିଆସିଛି ।

ପରିଚ୍ଛାଙ୍କ ପରିଚାଳନାଧୀନ ଥିବା ତତ୍କାଳୀନ ଦକ୍ଷିଣ ଓଡ଼ିଶାର ପ୍ରମୁଖ ଶୈବପୀଠ ମୁଖଲିଙ୍ଗମ୍ । ଏହା ଆଧୁନିକ ଆନ୍ଧ୍ର ପ୍ରଦେଶରେ ପାରଳାଖେମୁଣ୍ଡିର ଦକ୍ଷିଣକୁ ପ୍ରାୟ ୨୦ କି.ମି. ଦୂରରେ ଅବସ୍ଥିତ । ଏଠାରେ ଅବସ୍ଥିତ ମୁଖଲିଙ୍ଗ ମୁଖ୍ୟତଃ ଶୈବପୀଠ ହେଲେ ସୁଦ୍ଧା ଏହା ବୌଦ୍ଧ, ଶୈବ ଓ ବୈଷ୍ଣବ ପରମ୍ପରାର ଏକ ମିଳନ ପୀଠ । ଏ ସୂଚନା ମିଳୁଛି ଏଠାରେ ଖୋଦିତ ବୈଷ୍ଣବ ମୂର୍ତ୍ତି ସମେତ ଅଧିଷ୍ଠିତ ଶିବ ଲିଙ୍ଗ ପୂଜନରୁ । ମହୁଲ ବୃକ୍ଷରୁ ଲିଙ୍ଗ ଉତ୍ପତ୍ତି ହୋଇଥିବାରୁ ଲିଙ୍ଗଙ୍କର ନାମକରଣ ମଧୁଲିଙ୍ଗ କରାଯାଇଛି । ଲିଙ୍ଗଙ୍କର ସମ୍ମୁଖ ଭାଗ ମୁଖାକୃତି ହୋଇଥିବାରୁ ଏହା ମୁଖଲିଙ୍ଗ ବା ମୁଖଲିଙ୍ଗେଶ୍ୱର ନାମରେ ଖ୍ୟାତ । ଏହା ଭାରତର ଏକ ପ୍ରମୁଖ ଶୈବ କ୍ଷେତ୍ର । ଏହାର ଐତିହାସିକ ପୃଷ୍ଠଭୂମି ମଧ୍ୟ ରହିଛି । ମୁଖଲିଙ୍ଗମ୍ ଏକଦା କଳିଙ୍ଗର ରାଜଧାନୀ ଥିଲା । ପରବର୍ତ୍ତୀ କାଳରେ ପାରଳା ରାଜ୍ୟର ଏହା ଅନ୍ତର୍ଭୁକ୍ତ ଥିଲା । ଅନନ୍ତବର୍ମା ଚୋଡଗଙ୍ଗ ଦେବ ଉତ୍କଳ ଜୟ କରିବା ପରେ ତାଙ୍କ ରାଜଧାନୀ ମୁଖଲିଙ୍ଗମରୁ ବିଡାନାସୀ (କଟକ)କୁ ସ୍ଥାନାନ୍ତର କରିଦେଇଥିଲେ । ମୁଖଲିଙ୍ଗମ୍‌ଠାରେ ସୁବର୍ଣ୍ଣ ବୃଷ୍ଟି ହୋଇଥିବାର ପ୍ରବାଦ ଅଛି । ସେଠାରେ ପୂର୍ବେ ସୁବର୍ଣ୍ଣ କଣିକାମାନ ଭୂପୃଷ୍ଠରୁ ମିଳୁଥିଲା । ପାରଳାର ବଡ ରାଧାକାନ୍ତ ମଠ ଓ ଟେକେଲି ରାଧାକାନ୍ତ ମଠ ସହ ଉକ୍ତ ଗୁରୁତ୍ୱପୂର୍ଣ୍ଣ ମୁଖଲିଙ୍ଗ ପୀଠର ପରିଚାଳନା ଦାୟିତ୍ୱ ଲାଭ କରିବା ଆପନ୍ନା ପରିଚ୍ଛାଙ୍କ ପକ୍ଷେ ଏକ ଅତ୍ୟନ୍ତ ଗୌରବାବହ ଘଟଣା । ଏକାଦିକ୍ରମେ ଏତେଗୁଡିଏ ମଠ ମନ୍ଦିର ଓ ସେମାନଙ୍କର ମାଲିକାନାରେ ଥିବା ସ୍ଥାବରାସ୍ଥାବର ସମ୍ପତ୍ତିର ପରିଚାଳନା ବିନାପାରିଶ୍ରମିକରେ କରିବା ପାଇଁ ଆପନ୍ନା ପରିଚ୍ଛାଙ୍କୁ କେତେ କଠୋର ପରିଶ୍ରମ କରିବାକୁ ପଡିଥିବ, ତାହା ଅନୁମେୟ । ଧର୍ମାଚରଣ ପ୍ରତି ନିଷ୍ଠା ଓ ଅନୁରାଗ ବିନା ଏପରି କାର୍ଯ୍ୟ ସମ୍ପାଦନ କରିବା କଳ୍ପନା କରାଯାଇନପାରେ । କେବଳ ସେତିକି ନୁହେଁ । "ମଠସ୍ଥୁ ଛାତ୍ର ନିଳୟଃ" ଉକ୍ତିକୁ ଆପନ୍ନା ଅକ୍ଷରେ ଅକ୍ଷରେ ପାଳନ କରିଥିବା ତାଙ୍କ କାର୍ଯ୍ୟାବଳୀ ପ୍ରମାଣିତ କରୁଛି । ପରିଚ୍ଛା ମଠ ସମେତ ଅନ୍ୟାନ୍ୟ ଯେତେ ମଠର ପରିଚାଳନା ସହ ଆପନ୍ନା ସଂଶ୍ଳିଷ୍ଟ ଥିଲେ, ସେ ସମସ୍ତ ଅନୁଷ୍ଠାନରେ ଗରିବ ମେଧାବୀ ଛାତ୍ରମାନଙ୍କ ପାଇଁ, ମାଗଣାରେ ବାସଗ୍ରାସର ବ୍ୟବସ୍ଥା କରାଉଥିଲେ ।

ଏ ଲେଖକର ପିତା ନୀଳକଣ୍ଠ ମହାପାତ୍ର ଓ ତାହାଙ୍କ ସଢୁ ଧରାକୋଟ ଗଡର ହରିବନ୍ଧୁ ମିଶ୍ର ପାରଳାଖେମୁଣ୍ଡି ମହାରାଜାଙ୍କ ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ । ସେତେବେଳେ ଆପନ୍ନା ପରିଚ୍ଛାଙ୍କ ସହଯୋଗ ପାଇ ବଡରାଧାକାନ୍ତ ମଠରେ ମାଗଣା ଭୋଜନର ସୁବିଧା ପାଉଥିବା ମୁଁ ପୂର୍ବରୁ କେବଳ ଶୁଣିଥିଲି । କିନ୍ତୁ ଏ ପୁସ୍ତକ ଲେଖିବା ବେଳେ ପରିଚ୍ଛାଙ୍କ ଗୃହରୁ ମୋର ପିତା ଓ ମଉସାଙ୍କ ସ୍ୱହସ୍ତ ଲିଖିତ ଏ ସମ୍ପର୍କିତ ଦରଖାସ୍ତ

ଦୁଇଟି ଓ ସେଥିରେ ଆପନ୍ନାଙ୍କ ସୁପାରିଶ ସହ ସ୍ୱାକ୍ଷର ଦେଖି ମୋର ବିସ୍ମୟର ସୀମା ରହିଲା ନାହିଁ । ସେହି ଦରଖାସ୍ତ ଦୁଇଟି ମୋ ପାଖରେ ସୁରକ୍ଷିତ ଅଛି । ପରିଚ୍ଛାଙ୍କ ସାହାଯ୍ୟ ପାଇ ମୋର ପିତା ପାରଳାଖେମୁଣ୍ଡି ରାଜାଙ୍କ ହାଇସ୍କୁଲରୁ ୧୯୨୭ରେ ମାଟ୍ରିକ (ସେତେବେଳର ଏସ.ଏସ.ଏଲ.ସି.) ପାସ୍ କରିଥିଲେ । ଏବଂ ପରେ ରାଜାଙ୍କ କଲେଜରେ ମଧ୍ୟ ଅଧ୍ୟୟନ କରିଥିଲେ । ପରିଚ୍ଛାଙ୍କ ସହଯୋଗରେ ବଡ ରାଧାକାନ୍ତ ମଠରୁ ସାହାଯ୍ୟ ନ ପାଇଥିଲେ ମୋ ପିତା ଓ ତାହାଙ୍କ ସତୀର୍ଥଙ୍କ ପକ୍ଷେ ଉଚ୍ଚଶିକ୍ଷା ଲାଭ କରିବା ସମ୍ଭବ ହୋଇ ନଥାନ୍ତା । ଏପରି ଅନେକ ଉଦାହରଣ ଅଛି । ତେବେ ଏ ସମ୍ପର୍କରେ ଆଉ ଏକ ନିର୍ଦ୍ଦିଷ୍ଟ ଉଦାହରଣ ଦେବା ସମୀଚୀନ ମନେହୁଏ । ଆପନ୍ନା ପରିଚ୍ଛାଙ୍କର ଦେହାନ୍ତ ହେଲା ୧୯୩୯ ଜୁଲାଇ ମାସ ୨୪ ତାରିଖରେ । ଏ ଦୁଃଖଦ ଖବରଟି ପତ୍ରପତ୍ରିକାମାନଙ୍କରେ ପ୍ରଚାରିତ ହୋଇଥିଲା । ଆପନ୍ନାଙ୍କ ସଂସ୍ପର୍ଶରେ ଆସିଥିବା ବହୁ ବିଶିଷ୍ଟ ବ୍ୟକ୍ତି ଶୋକବାର୍ତ୍ତାମାନ ପ୍ରେରଣ କରିଥିଲେ । ଆପନ୍ନାଙ୍କ ସାହାଯ୍ୟ ପାଇ ଉଚ୍ଚ ଶିକ୍ଷା ଲାଭ କରିଥିବା ଯେଉଁ କେତେକ ବ୍ୟକ୍ତି ସେମାନଙ୍କର ଅନୁଭୂତି ବର୍ଣ୍ଣନା କରି ଆପନ୍ନାଙ୍କ ଜ୍ୟେଷ୍ଠ ପୁତ୍ରଙ୍କ ନିକଟକୁ ଶୋକବାର୍ତ୍ତାମାନ ପଠାଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଗଞ୍ଜାମ ବଡଗଡର ଆନନ୍ଦ ମିଶ୍ର ନାମକ ଜଣେ ବ୍ୟକ୍ତି । ତାଙ୍କ ଶୋକବାର୍ତ୍ତା କି ହୃଦୟସ୍ପର୍ଶୀ ନିମ୍ନଲିଖିତ ଉଦ୍ଧୃତିରୁ ଜାଣିହୁଏ ।

"ସେ ୧୯୧୭-୧୮ ସାଲର କଥା । ଟିକାଲିର ଗୋପସୁନ୍ଦର ଗନ୍ତାୟତ, ଗୋପସୁନ୍ଦର ସାବତ ଓ ମୁଁ ଆପଣଙ୍କ ମଠରେ ପ୍ରସାଦ ପାଇ ଅଧ୍ୟୟନ କରିବା ପାଇଁ ସାହସୀ ହୋଇଥିଲୁ । ମୁଁ ସେହି ସମୟରେ ଦୀନ ଦରିଦ୍ରଭାବେ ରହି ପଢ଼ାର ଆଶା ଛାଡିଦେଇ ଗ୍ରାମକୁ ବାହାରିଯିବା କଥା ଥିଲା । କିନ୍ତୁ ଆପଣଙ୍କ ପିତା ମୋର ଏ ଦରିଦ୍ର ଅବସ୍ଥା ଦେଖି ସ୍ୱତଃପ୍ରବୃତ୍ତଭାବେ ତାହାଙ୍କ ମଠରେ ମୋତେ ସ୍ଥାନଦେଇ ରଖିଲେ । ତାହାଙ୍କ କୃପାଦୃଷ୍ଟି ମୋ ଉପରେ ପଡ଼ିନଥିଲେ ମୁଁ ଆଜି ଯେ ନିତାନ୍ତ ଦୀନହୀନ ଅବସ୍ଥାରେ ଥାଆନ୍ତି ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।"

ପରିଚ୍ଛା ମଠ ଅଧ୍ୟୟନ, ଅଧ୍ୟାପନ, ପଠନ ପାଠନ, ସମାଜସେବା, କଳା, ସଂସ୍କୃତି, ଅତିଥି ସତ୍କାର, ସ୍ୱାଧୀନତା ସଂଗ୍ରାମ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ, ଭାଷା, ସାହିତ୍ୟର ସୁରକ୍ଷା ଓ ଭୂସଂସ୍କାର ତଥା ଅନ୍ୟାନ୍ୟ ଜନ ହିତକର କ୍ଷେତ୍ରରେ ସଦାସର୍ବଦା ନିଯୋଜିତ ଥିଲା । ମଠର ସ୍ୱତ୍ୱାଧିକାରୀ ତଥା ପରିଚାଳକ ଆପନ୍ନା ପରିଚ୍ଛାଙ୍କ ବ୍ୟକ୍ତିଗତ ଉଦ୍ୟମ ଓ କର୍ମନିଷ୍ଠା ଯୋଗୁଁ ଏହା ସମ୍ଭବ ହେଉଥିଲା । ଏଥିପାଇଁ ମଠକୁ ଅଜସ୍ର ଅର୍ଥ ବ୍ୟୟ କରିବାକୁ ପଡୁଥିଲା । ଓଡ଼ିଶାର ପ୍ରତ୍ୟେକ ମଠ ଯଦି ଏପରି ସାମାଜିକ ଉନ୍ନତିରେ ନିଯୋଜିତ

ହୋଇଥାନ୍ତେ ତା'ହେଲେ ସେଗୁଡ଼ିକର ପ୍ରତିଷ୍ଠାତାମାନଙ୍କର ଉଦ୍ଦେଶ୍ୟ ଅବଶ୍ୟ ସିଦ୍ଧି ହୋଇଥାନ୍ତା । ଆପନ୍ନା ପରିଚ୍ଛା ସ୍କୁଲ ଶିକ୍ଷା ଶେଷ କରିବା ପରେ, ସନ ୧୮୯୮ରେ, ତାଙ୍କୁ ପରିଚ୍ଛା ମଠର ପରିଚାଳନା ଭାର ଅର୍ପଣ କରାଯାଇଥିଲା । ଏଥିପାଇଁ ତିନିଭାଇଙ୍କ ମଧ୍ୟରେ ପିତାଙ୍କ ସ୍ୱୀକୃତି ସହ ଏକ ଚୁକ୍ତିପତ୍ର ସମ୍ପାଦିତ ହୋଇ ଏହା ପଞ୍ଜୀକୃତ ମଧ୍ୟ ହୋଇଥିଲା । ଉକ୍ତ ଚୁକ୍ତି ଭିତ୍ତିରେ ଆପନ୍ନା ୧୮୯୮ ରୁ ୧୯୨୮ ଯାଏଁ ଦୀର୍ଘ ୩୦ ବର୍ଷ କାଳ ନିରଙ୍କୁଶ ଭାବରେ ନ୍ୟାୟ, ନିଷ୍ଠା ଓ ସ୍ୱଚ୍ଛତାର ସହ ମଠ ପରିଚାଳନା କରିଆସିଥିବା ଏକ ଅବିସମ୍ବାଦିତ ସତ୍ୟ । ଇତ୍ୟବସରରେ ବାର୍ଦ୍ଧକ୍ୟରେ ପିତା ଲକ୍ଷ୍ମୀନାରାୟଣଙ୍କ ମୃତ୍ୟୁ ହୋଇଯାଇଥିଲା ୧୯୦୩ରେ । ତଥାପି ଭାଇ ଭାଇ ମଧ୍ୟରେ ଉତ୍ତମ ବୁଝାମଣା ଓ ଆପନ୍ନା ପରିଚ୍ଛାଙ୍କ ପରିଚାଳନା ଦକ୍ଷତା ଯୋଗୁଁ ଏତେକାଳ ଯାଏଁ କୌଣସି ବିରୋଧର ସ୍ୱର ଶୁଭି ନଥିଲା । ୧୯୨୮ରେ ପ୍ରଥମ ଥର ପାଇଁ ଜ୍ୟେଷ୍ଠଭ୍ରାତା ନୀଳମଣି ମଠ ପରିଚାଳନା ନିଜେ କରିବା ପାଇଁ ମନସ୍ଥ କଲେ । ଏବଂ ମଠ ପରିଚାଳନାରେ ହସ୍ତକ୍ଷେପ କରିବା ଆରମ୍ଭ କଲେ । ଭାଇ ଭାଇ ମଧ୍ୟରେ ଏହିଠାରୁ ଆରମ୍ଭ ହେଲା ଦ୍ୱନ୍ଦ୍ୱ । କଥା କୋର୍ଟ କଚିରି ଯାଏଁ ଗଲା । ମଠ ପରିଚାଳନାର ଭାର ନୀଳମଣି ପାଇଲେ । ୧୯୩୧ ବେଳକୁ ନୀଳମଣି ମଠ ପରିଚାଳନା କରୁଥିଲେ । ଏତେବେଳେ ଏକ ମୋକଦ୍ଦମା କୋର୍ଟରେ ଦାଏର ହୋଇଥିଲା । ମୋକଦ୍ଦମା ଓ ମଠ ପରିଚାଳନାକୁ ନେଇ ପରିଚ୍ଛା ପରିବାର ଦ୍ୱିଧା ବିଭକ୍ତ ହୋଇଗଲେ । ଏକ ପକ୍ଷରେ ଆପନ୍ନା ପରିଚ୍ଛା ଓ ତାଙ୍କ ଉପର ଭାଇ ଏବଂ ଅନ୍ୟ ପକ୍ଷରେ ଜ୍ୟେଷ୍ଠଭ୍ରାତା ନୀଳମଣି ପରିଚ୍ଛା । ପରିଚ୍ଛା ପରିବାରର ସୁନାର ସଂସାର ଏଣିକି ଚୂନା ହେବାକୁ ଆରମ୍ଭ କଲା । ସୃଷ୍ଟି ହେଲା, ଅବିଶ୍ୱାସ ଓ ଅସୂୟାର ବାତାବରଣ । ପରିଚ୍ଛା ମଠ ତା'ର ପୂର୍ବଶ୍ରୀ ହରାଇବା ଆରମ୍ଭ କଲା । ଏଥିପାଇଁ କିଏ ଦାୟୀ ସେଥିର ବ୍ୟବଚ୍ଛେଦ ବର୍ତ୍ତମାନ କରିବା ନିରର୍ଥକ ।

## ବେଞ୍ଚ୍ ମାଜିଷ୍ଟ୍ରେଟ୍ ଦାୟିତ୍ୱ :

ଶାସନ ପଦ୍ଧତି ଓ ସେଥିର ସ୍ୱଚ୍ଛତା ପାଇଁ ଇଂରେଜମାନେ ସମଗ୍ର ପୃଥିବୀରେ ବନ୍ଦନୀୟ । ଏବେ ମଧ୍ୟ ଭାରତପରି ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରରେ ତର୍କ ଦୃଷ୍ଟେ ବ୍ରିଟିଶ୍ ଲୋକସଭାର ନଜିର ଉପସ୍ଥାପନ କରାଯାଏ । ଇଂରେଜମାନେ ଏ ଦେଶକୁ ଦଖଲ କଲାପରେ, ଯେତେ ଯାହା ଦଣ୍ଡବିଧାନ କରିଛନ୍ତି, (ସେମାନଙ୍କର ସ୍ଥିତି ରକ୍ଷା ଜଡ଼ିତ ଘଟଣା ବ୍ୟତୀତ) ଅନ୍ୟ କୌଣସିଟି ବିନା ବିଚାରରେ ହୋଇନାହିଁ । ଏକଶହ ପଚାଶ ବର୍ଷ ପୂର୍ବେ ସେମାନେ ପ୍ରଣୟନ କରିଥିବା ଦେବାନି ଓ ଦଣ୍ଡବିଧି ଉଭୟ ଆଇନ

ଏ ଯାଏ ଆମ ଦେଶରେ ଚାଲିଆସିଛି । ପ୍ରଥମେ ଇଷ୍ଟ ଇଣ୍ଡିଆ କମ୍ପାନି ଓ ପରେ ତା' ପ୍ରତିବଦଳରେ ଇଂରେଜ ସରକାର କର୍ତ୍ତୃକ ଶାସନ ବ୍ୟବସ୍ଥା ଲାଗୁ ହୋଇଥିଲା ଆମ ଦେଶରେ । ଏବଂ ଇଂରେଜ ସରକାର ଭାରତର ନ୍ୟାୟିକ ବ୍ୟବସ୍ଥାରେ ଅନେକ ପ୍ରାଶାସନିକ ସଂସ୍କାର ଆଣିଥିଲେ । ଏହି ପରିପ୍ରେକ୍ଷୀରେ ବିଭିନ୍ନ ମୋକଦ୍ଦମାର ବିଚାର ପାଇଁ ବେଞ୍ଚମାନ ଗଠନ କରାଯାଉଥିଲା । ପ୍ରତି ବେଞ୍ଚରେ ରହୁଥିଲେ ଆଇନ ଜ୍ଞାନ ଥିବା ଜଣେ ସରକାରୀ ଅଧିକାରୀ । ଆବଶ୍ୟକତାନୁଯାୟୀ ଏକ ବା ଏକାଧିକ ବେସରକାରୀ ବ୍ୟକ୍ତିଙ୍କୁ ସଦସ୍ୟ ଭାବେ ଉକ୍ତ ବେଞ୍ଚକୁ ମନୋନୀତ କରାଯାଉଥିଲା । ଶିକ୍ଷିତ, ମର୍ଯ୍ୟାଦାବନ୍ତ ଓ ନିଷ୍ଠାପର, ନିରପେକ୍ଷ ଜନସେବୀମାନଙ୍କୁ ହିଁ ଏହି ମର୍ଯ୍ୟାଦାବନ୍ତ ନିଯୁକ୍ତି ମିଳୁଥିଲା । ପରିଚ୍ଛା ମଠର ସୁନାମ ବୃଦ୍ଧି ହେବା ସହ ସେଥିର ପରିଚାଳକ ଆପନ୍ନା ପରିଚ୍ଛା ତାଙ୍କର ନିଷ୍ଠା ଓ ନିରପେକ୍ଷତା ପାଇଁ ସେହି ସମୟରେ ଜଣେ ଅତ୍ୟନ୍ତ ଲୋକାଦୃତ ବ୍ୟକ୍ତି ଥିଲେ । ସୁତରାଂ ଏ ସମସ୍ତ କଥା ବିଚାରକୁ ନେଲେ ମାନ୍ଦ୍ରାସ ସରକାର ଆପନ୍ନା ପରିଚ୍ଛାଙ୍କୁ ପାରଳାଖେମୁଣ୍ଡି ଅଞ୍ଚଳର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ଭାବରେ ସ୍ୱୀକାର କରି ଆସୁଥିଲେ । ଏପରି କି କ୍ଷୁଦ୍ର ଆଗ୍ନେୟାସ୍ତ୍ର (ପିସ୍ତଲ ଆଦି) ରଖିବା ପାଇଁ ଥିବା କଟକଣାରୁ ଆପନ୍ନା ପରିଚ୍ଛା ମୁକ୍ତ ଥିଲେ । ଏହା ଜଣେ ଲୋକର ବିଶ୍ୱସନୀୟତା ପ୍ରତି ସ୍ୱୀକୃତି ନୁହେଁ କି ?



ବେଞ୍ଚ ମାଜିଷ୍ଟ୍ରେଟ୍ ଆପନ୍ନା ପରିଚ୍ଛା (୩ୟ ଧାଡ଼ି (ଠିଆ) ବାମରୁ ୨ୟ)

ଆପନ୍ନାଙ୍କୁ ବେଞ୍ଚ ମାଜିଷ୍ଟ୍ରେଟ ଭାବେ ନିଯୁକ୍ତି ଦେବାକୁ ସରକାର ଏକ ପତ୍ର ତାଙ୍କ ନିକଟକୁ ପ୍ରେରଣ କରିଥିଲେ ତା.୨୩.୮.୧୯୧୪ରିଖରେ । ଆପନ୍ନା ଏହି ନିଯୁକ୍ତିକୁ ସ୍ୱୀକାର କରି କାର୍ଯ୍ୟ କରିଥିବା ତାଙ୍କ ଦିନଲିପିରୁ ସ୍ପଷ୍ଟ ହୁଏ । ଏଠାରେ ସ୍ମରଣଯୋଗ୍ୟ ଯେ, ଓଡ଼ିଆମାନଙ୍କ ମଧ୍ୟରୁ ଯୋଗ୍ୟ ବ୍ୟକ୍ତିଙ୍କୁ ବେଞ୍ଚ ମାଜିଷ୍ଟ୍ରେଟ ଭାବେ ନିଯୁକ୍ତି ଦେବା ପାଇଁ ପାରଳାଖେମୁଣ୍ଡିର ଉତ୍କଳ ହିତୈଷିଣୀ ସମାଜ ପକ୍ଷରୁ ମାଡ୍ରାସ ସରକାରଙ୍କ ନିକଟରେ ଦାବି କରାଯାଇଥିଲା । ମାଡ୍ରାସ ସରକାର ହିତୈଷିଣୀ ସମାଜର ଉକ୍ତ ଦାବି ମାନିନେଇ ଆପନ୍ନାଙ୍କୁ ଉପର୍ଯ୍ୟୁକ୍ତ ମର୍ଯ୍ୟାଦାପୂର୍ଣ୍ଣ ପଦରେ ନିଯୁକ୍ତି ଦେଇଥିବା ଓଡ଼ିଆ ଜାତି ପାଇଁ ଥିଲା ଏକ ଆଶ୍ୱାସନାର ବିଷୟ । ଏହାକୁ ଏକ ଜାତୀୟ ସେବା ମନେକରି ଆପନ୍ନା ପରିଚ୍ଛା ସରକାରୀ ନିଷ୍ପତ୍ତି ପ୍ରତି ସମ୍ମାନ ଜଣାଇ ୧୯୧୪ ଏପ୍ରିଲ ମାସ ଠାରୁ ୧୯୧୯ ସେପ୍ଟେମ୍ବର ୬ ତାରିଖ ପର୍ଯ୍ୟନ୍ତ ଦୀର୍ଘ ପାଞ୍ଚବର୍ଷରୁ ଅଧିକ କାଳ ବେଞ୍ଚ ମାଜିଷ୍ଟ୍ରେଟ ଦାୟିତ୍ୱ ନିର୍ବାହ କରିଥିଲେ । ଉକ୍ତ ଦାୟିତ୍ୱପୂର୍ଣ୍ଣ ତଥା ଧରାବନ୍ଧା କାର୍ଯ୍ୟ ସେ ଅବୈତନିକ ଭାବେ ତୁଲାଇଥିଲେ । ତାଙ୍କ କାର୍ଯ୍ୟାବଳୀର ସମୀକ୍ଷା କଲେ ଜଣାଯାଏ ଯେ ସେ ବେଞ୍ଚ ମାଜିଷ୍ଟ୍ରେଟ ଭାବେ ଆଉ ପୁନର୍ନିଯୁକ୍ତି ଅଭିଳାଷ ନରଖି ଅନ୍ୟାନ୍ୟ ସମାଜସେବା କାର୍ଯ୍ୟରେ ମନୋନିବେଶ କରିଥିଲେ ।

## ଓଡ଼ିଆଙ୍କର ବୌଦ୍ଧିକ ବିକାଶ ଓ ଆପନ୍ନା ପରିଚ୍ଛା

ଇଂରେଜ ଶାସନବେଳେ ଅଣଓଡ଼ିଆଙ୍କ ବିଶେଷ ପ୍ରାଦୁର୍ଭାବ ଯୋଗୁଁ ଓଡ଼ିଆମାନଙ୍କ ସ୍ୱାର୍ଥ ସକଳ କ୍ଷେତ୍ରରେ ଦୟନୀୟ ହୋଇପଡ଼ିଥିଲା । କବିଚନ୍ଦ୍ର ରଘୁନାଥ ପରିଚ୍ଛା, ଗୋପାଳକୃଷ୍ଣ ପଟ୍ଟନାୟକ ଓ ଗୌରହରି ପରିଚ୍ଛାଙ୍କ ପରି କିଛି ନାଟ୍ୟକାର, ସଙ୍ଗୀତକାର ଓ ସାହିତ୍ୟିକଙ୍କ ଏକନିଷ୍ଠ ସାରସ୍ୱତ ସାଧନା ଓଡ଼ିଆମାନଙ୍କର ବୌଦ୍ଧିକ ଅଧୋଗତିକୁ ରୋକିବା ସହ ସ୍ଥିତି ରକ୍ଷା କରିବାରେ ସହାୟ ହୋଇଥିଲା । କିନ୍ତୁ ପ୍ରାୟତଃ ୧୮୮୫ ପର୍ଯ୍ୟନ୍ତ ସରକାରୀ ଉଦାସୀନତା ସଙ୍ଗକୁ ଅଣଓଡ଼ିଆମାନଙ୍କ ଓଡ଼ିଆ ବିରୋଧୀ ନୀତିକୁ ପ୍ରତିରୋଧ କଲାଭଳି ପାରଳାଖେମୁଣ୍ଡିରେ କୌଣସି ସାଙ୍ଗଠନିକ କାର୍ଯ୍ୟାରମ୍ଭ ହୋଇନଥିଲା କହିଲେ ଚଳେ । ୧୮୮୫ରେ ଉତ୍କଳ ହିତୈଷିଣୀ ସମାଜର ପ୍ରତିଷ୍ଠା ଏ ଦିଗରେ ପ୍ରଥମ ପଦକ୍ଷେପ ବୋଲି କୁହାଯାଇପାରେ । ଶ୍ୟାମସୁନ୍ଦର ରାଜଗୁରୁ, ଆପନ୍ନା ପଣ୍ଡା, ଭବକୃଷ୍ଣ ଦ୍ୱୈପାୟନ ରାଓ ଓ ଗଙ୍ଗାଧର ଖାଡଙ୍ଗାଙ୍କ ଉଦ୍ୟମ ତଥା ପଦ୍ମନାଭ ଦେବଙ୍କ ପ୍ରୋତ୍ସାହନ ଦ୍ୱାରା ଏହା ପ୍ରତିଷ୍ଠିତ ହୋଇଥିଲା । ପରେ ପରେ ପାରଳାରେ ଗଢ଼ିଉଠିଲା ଉତ୍କଳ ଜ୍ଞାନ ବିବର୍ଦ୍ଧିନୀ ସଭା, ୟଙ୍ଗ୍ ଉତ୍କଳ ଆସୋସିଏସନର ଶାଖା ଓ ଅନ୍ୟାନ୍ୟ ଅନେକ କ୍ଷୁଦ୍ର କ୍ଷୁଦ୍ର ସଂଗଠନ ।

ଏସବୁ ଅନୁଷ୍ଠାନ କିଛିବର୍ଷ କାର୍ଯ୍ୟକରିବା ଅବସରରେ ଆପନ୍ନା ପରିଚ୍ଛା ଛାତ୍ରାବସ୍ଥାରୁ ଏଗୁଡ଼ିକ ସହ ଯୋଡିହୋଇ ଯାଇଥିଲେ । ପଦ୍ମନାଭ ଗଜପତି ଓ ଶ୍ୟାମସୁନ୍ଦର ରାଜଗୁରୁଙ୍କ ନେତୃତ୍ୱରେ, ଉତ୍କଳ ସମ୍ମିଳନୀର ଜନ୍ମଜାତକ ଲେଖା ହେଲା ଦିନୁ, ପାରଳାଖେମୁଣ୍ଡି ସେଥିରେ ସଂଶ୍ଳିଷ୍ଟ ହୋଇଥିଲା । ସମୟକ୍ରମେ ଆପନ୍ନା ପରିଚ୍ଛା ଉପର୍ଯ୍ୟୁକ୍ତ ସମସ୍ତ ଅନୁଷ୍ଠାନରେ ନିଜକୁ ସାମିଲ କରିବା ସହ ତନ୍ମଧ୍ୟରୁ ଅଧିକାଂଶ ଅନୁଷ୍ଠାନର କର୍ମକର୍ତ୍ତା ଦାୟିତ୍ୱ ମଧ୍ୟ ବହନ କରିଥିଲେ । ୟଙ୍ଗ ଉତ୍କଳ ସମ୍ମିଳନୀର କମିଟି ସଦସ୍ୟ ହେବା ସହ ଉତ୍କଳ ହିତୈଷିଣୀର ସହ ସଂପାଦକ ଭାବେ ୧୯୧୪ ମଇ ମାସ ୨୫ ତାରିଖଠାରୁ କାର୍ଯ୍ୟ କରି ନିଜର ସାଂଗଠନିକ ଦକ୍ଷତାର ପରିଚୟ ଦେଇଥିଲେ । ୟଙ୍ଗ୍ ଉତ୍କଳ ଆସୋସିଏସନ ସେତେବେଳେ ଉତ୍କଳ ସମ୍ମିଳନୀର ଏକ ଅଙ୍ଗୀଭୂତ ଅନୁଷ୍ଠାନ ଭାବେ କାର୍ଯ୍ୟ କରୁଥିଲା । ଉତ୍କଳ ହିତୈଷିଣୀ ସମାଜ ଓଡ଼ିଆ ଭାଷା, ସଂସ୍କୃତି ଓ ଓଡ଼ିଆ ସ୍ୱାର୍ଥ ପରିରକ୍ଷଣ କ୍ଷେତ୍ରରେ ଗଂଜାମର ସର୍ବଶ୍ରେଷ୍ଠ ଓ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ ଭାବେ ସେତେବେଳେ ପରିଗଣିତ ହେଉଥିଲା । ତେଣୁ, ଉପରୋକ୍ତ ଦୁଇ ଅନୁଷ୍ଠାନର କର୍ମକର୍ତ୍ତା ଦାୟିତ୍ୱ ତୁଲାଇବା ଆପନ୍ନାଙ୍କ ପାଇଁ ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏପରିକି ଗଂଜାମ ଓଡ଼ିଆଙ୍କର ସ୍ୱାର୍ଥ ପ୍ରଶ୍ନ ଇଂଲଣ୍ଡରେ ଉଠିବା ମାତ୍ରେ ସଂପୃକ୍ତ କର୍ତ୍ତୃପକ୍ଷଙ୍କ ସ୍ମରଣକୁ ଉତ୍କଳ ହିତୈଷିଣୀର ନାମ ହିଁ ଆସୁଥିବା ଇଂରେଜ ଅଧିକାରୀମାନେ ବିଭିନ୍ନ ବିବରଣୀରେ ଲିପିବଦ୍ଧ କରିଯାଇଛନ୍ତି । ଓଡ଼ିଆ ଅଧିକାରୀମାନେ କିପରି ଅଧିକରୁ ଅଧିକ ନିଯୁକ୍ତି ପାଇବେ, ଓଡ଼ିଆ ଭାଷାକୁ କିପରି ସରକାରୀ ଦପ୍ତରମାନଙ୍କରେ ପୁନର୍ବାହେଲ କରାଯିବ, ଓଡ଼ିଆ ସ୍ୱାର୍ଥ ରକ୍ଷା ପାଇଁ କିପରି ରେଳ ସଂଯୋଗର ବ୍ୟବସ୍ଥା ହେବା ଆବଶ୍ୟକ, ଏପରିକି ରେଳଗାଡ଼ିମାନଙ୍କରେ ଓ ଓଡ଼ିଆ ଅଂଚଳରେ ଥିବା ରେଳ ଷ୍ଟେସନ ଗୁଡ଼ିକର ନାମ କିପରି ଓଡ଼ିଆରେ ଲେଖାଯିବ, ସେ ସମସ୍ତ ବିଷୟରେ ଉତ୍କଳ ହିତୈଷିଣୀ ଦାବି ଉପସ୍ଥାପିତ କରୁଥିଲା । ଉତ୍କଳ ହିତୈଷିଣୀର କର୍ମକର୍ତ୍ତା ଭାବେ ଆପନ୍ନା ପରିଚ୍ଛା ଏ ସମସ୍ତ କାର୍ଯ୍ୟରେ ଅତ୍ୟନ୍ତ ସକ୍ରିୟ ଥିଲେ । ତାଙ୍କ ପ୍ରଚେଷ୍ଟା ଉତ୍କଳ ହିତୈଷିଣୀ ସମାଜର କାର୍ଯ୍ୟ ନିଷ୍ପାଦନରେ ବିଶେଷ ସହାୟକ ହେବା ସହ ଉପରୋକ୍ତ ଦାବିଗୁଡ଼ିକ ହାସଲ କରିବାରେ ମଧ୍ୟ ବିଶେଷ ଫଳପ୍ରଦ ହେଉଥିଲା । ଶ୍ୟାମସୁନ୍ଦର ରାଜଗୁରୁଙ୍କ ଦେହାବସାନ ପରଠାରୁ ପାରଳାଖେମୁଣ୍ଡିର ସକଳ କ୍ଷେତ୍ରରେ ଆପନ୍ନା ପରିଚ୍ଛାଙ୍କ ଗୁରୁତ୍ୱ ବିଶେଷ ଭାବେ ବୃଦ୍ଧି ପାଇଥିଲା । ସେ ଉତ୍କଳ ହିତୈଷିଣୀ ସମାଜର ସହସଂପାଦକ ତଥା ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସଫଳତାର ସହ ସମାହିତ କରିଯାଇଛନ୍ତି । ପାରଳାଖେମୁଣ୍ଡିରେ ଅଣଓଡ଼ିଆଙ୍କ ପ୍ରଭାବ ହେତୁ ସବ୍‌ରେଜିଷ୍ଟ୍ରାରଙ୍କ ପରି ଏକ ଗୁରୁତ୍ୱପୂର୍ଣ୍ଣ ଅଧିକାରୀ ପଦବୀ ସଦାସର୍ବଦା ତେଲୁଗୁ ଭାଷାଭାଷୀଙ୍କ କବଳିତ ରହି ଆସିଥିଲା । କିନ୍ତୁ ଆପନ୍ନା ପରିଚ୍ଛା ଏ ନେଇ ନିବନ୍ଧନ

ମହାନିରୀକ୍ଷକଙ୍କ ସହ ବାରମ୍ବାର ସାକ୍ଷାତ ଆଲୋଚନା କରିବା ଦ୍ୱାରା ଉକ୍ତ ପଦବୀରେ ଓଡ଼ିଆ ଅଧିକାରୀଙ୍କୁ ଅଧିଷ୍ଠିତ କରାଯାଇଥିଲା । ଅନେକ କାର୍ଯ୍ୟ ମଧ୍ୟରେ ଏହା ଏକ ଉଦାହରଣ ମାତ୍ର । ନାଟକରେ ନୂତନତା ସୃଷ୍ଟି ଲକ୍ଷରେ ସେ ଏକାଧିକବାର କଲିକତା ଯାଇ ସେଠାରେ Alfred Theatre ଓ Star Theatre ଦେଖି ଆସିଛନ୍ତି । କଲିକତା ଓ ପାରଳାର ସାଂପ୍ରତିକ ନାଟକ ଉପରେ ତୁଳନାତ୍ମକ ଆଲୋଚନା କରିଛନ୍ତି ।

ଜୈନ ଦର୍ଶନ ପ୍ରତି ଆପନ୍ନା ପରିଛାଙ୍କର ବିଶେଷ ଆଗ୍ରହ ଥିଲା । ସେ ୧୯୦୭ ଡିସେମ୍ବର ୩୦ ତାରିଖରେ ପରେଶନାଥ ମନ୍ଦିରରେ ଅନୁଷ୍ଠିତ ଏକାଦଶ ଜୈନଶ୍ୱେତାମ୍ବର ସମ୍ମିଳନୀରେ ଯୋଗ ଦେଇଥିଲେ । କୃଷ୍ଣ ଚେତନାର ପରିପ୍ରସାର ପାଇଁ ଆପନ୍ନାଙ୍କ ନେତୃତ୍ୱରେ ରାଜ୍ୟ ବାହାରୁ ପ୍ରଖ୍ୟାତ ପ୍ରବଚକମାନେ ଆସି ପାରଳାଖେମୁଣ୍ଡିରେ ବାରମ୍ବାର ଉଦ୍‌ବୋଧନ ଦେଉଥିଲେ । ଏହି କ୍ରମରେ କୃଷ୍ଣଚେତନାର ପ୍ରଖ୍ୟାତ ପ୍ରବଚକ ପ୍ରେମାନନ୍ଦ ଭାରତୀଙ୍କର ୧୯୧୩ ମାର୍ଚ୍ଚ ୮ ତାରିଖରେ ପାରଳାଖେମୁଣ୍ଡିକୁ ଆଗମନ ଘଟିଥିଲା ।

ପାରଳାଖେମୁଣ୍ଡିର ବିକାଶ ପାଇଁ ଆପନ୍ନା ପରିଛା ପାରଳା ପୌର ପରିଷଦରେ ଦୀର୍ଘକାଳଯାଏଁ ସଦସ୍ୟ ଥିଲେ । କିନ୍ତୁ ଜାତୀୟ କଂଗ୍ରେସ କର୍ଯ୍ୟରେ ସମୟ ଦେବା ଉଦ୍ଦେଶ୍ୟରେ ସେ ମ୍ୟୁନିସିପାଲିଟି ସଦସ୍ୟ ପଦରୁ ତା୧୦.୧୨.୧୯୨୧ରିଖରେ ସ୍ୱେଚ୍ଛାକୃତଭାବେ ଅବ୍ୟାହତି ନେଇଥିଲେ ।

ସତ୍ୟବାଦୀ ବନ ବିଦ୍ୟାଳୟ ପାଇଁ ଛାତ୍ର ସଂଗ୍ରହ ତଥା ପାଣ୍ଠି ସଂଗ୍ରହ କରିବା ସହ ବିଭିନ୍ନ ବିଶିଷ୍ଟ ବ୍ୟକ୍ତିଙ୍କ ସ୍ମୃତି ରକ୍ଷା ପାଇଁ ଆପନ୍ନା ସର୍ବଦା ତତ୍ପର ଥିଲେ । ସମାଜସେବୀ ନରସିଂହ ଦାସଙ୍କ ପାଇଁ ପାରଳାଖେମୁଣ୍ଡିରେ ଗଢ଼ା ହୋଇଥିବା ସ୍ମୃତି କମିଟିର ସେ ସମ୍ପାଦକ ଥିଲେ । ତେତେବେଳେ ଗଞ୍ଜାମରେ ନରସିଂହ ଦାସ ନାମରେ ଦୁଇଜଣ ଅତିବିଶିଷ୍ଟ ସମାଜସେବୀ ଥିଲେ । ସେ ମଧ୍ୟରୁ ଜଣେ ବୁଗୁଡ଼ାର ଓ ଅନ୍ୟ ଜଣକ ପାରଳାର ।

ଉତ୍କଳ ଭାଷା ବିବର୍ଦ୍ଧିନୀ ସଭା ନାମରେ ଏକ ଅନୁଷ୍ଠାନ ପାରଳାରେ ଜନ୍ମ ନେଇଥିବା କଥା ପୂର୍ବରୁ ଆଲୋଚନା କରାଯାଇଛି । ଏହି ଅନୁଷ୍ଠାନକୁ କେହି କେହି ଉତ୍କଳ ଜ୍ଞାନ ବିବର୍ଦ୍ଧିନୀ ସଭା ଭାବେ ଉଲ୍ଲେଖ କରନ୍ତି । ଏହି ସାରସ୍ୱତ ଅନୁଷ୍ଠାନଟି ଶିକ୍ଷାପ୍ରସାର ଓ ଓଡ଼ିଆମାନଙ୍କର ଜ୍ଞାନ ବିବର୍ଦ୍ଧନ ପାଇଁ ଉଦ୍ଦିଷ୍ଟ ଥିଲା । ଗରିବ-ମେଧାବୀ ଛାତ୍ରମାନଙ୍କୁ ଏହା ସ୍କୁଲ ଫି ପାଇଁ ଅନୁଦାନ ଦେଉଥିଲା । ନିୟମିତ ଭାବରେ ଏଥିରେ ପ୍ରବନ୍ଧ, ଉପନ୍ୟାସ, ନାଟକ ଓ ବିଜ୍ଞାନ-ଜ୍ଞାନ ସମ୍ପର୍କରେ ଆଲୋଚନା ସଭାମାନ କରାଯାଉଥିଲା । ଓଡ଼ିଆ ଭାଷାର ସ୍ୱରୂପ, ଏହାର ଗଠନ, ଭାଷା ଓ ଲିପିତାତ୍ତ୍ୱିକ ବିଷୟ

ବିଜଡିତ ସମସ୍ୟା ସମ୍ପର୍କରେ ଏ ଅନୁଷ୍ଠାନ ମାଧ୍ୟମରେ ମତ ବିନିମୟ କରାଯାଉଥିଲା । ଯେଉଁ ଶିଷ୍ଟ ବିଶିଷ୍ଟ ବିଦ୍ୱାନ୍‌ମାନେ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ସେମାନଙ୍କ ମଧ୍ୟରେ ପୁରୀ ରାଧାକାନ୍ତ ମଠର ମହନ୍ତ ଗୋସ୍ୱାମୀ ରାଧାକୃଷ୍ଣ ଦାସ, ଆପନ୍ନା ପରିଚ୍ଛା, ଯୁଗଳ ପାଣିଗ୍ରାହୀ, କୃପାସିନ୍ଧୁ ଦାସ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଓଡ଼ିଆ ଯୁକ୍ତାକ୍ଷର ଲୋପକରି ସରଳୀକରଣ କରିବା ପାଇଁ ବିଭିନ୍ନ ପଦକ୍ଷେପ ଏହି ଅନୁଷ୍ଠାନ ନେଉଥିଲା । ଶତାଧିକ ବର୍ଷ ପୂର୍ବେ ପାରଳାଖେମୁଣ୍ଡିରେ ଏପରି ଭାଷା ଓ ଲିପି ସଂସ୍କାରବାଦ ମୁଣ୍ଡ ଟେକିଥିବା ଜାଣି ବିସ୍ମିତ ହେବାକୁ ହୁଏ । ଏ ସବୁର ମୂଳମୁଣ୍ଡି ଥିଲେ ଆପନ୍ନା ପରିଚ୍ଛା । ଯାହା ବର୍ତ୍ତମାନ ଓଡ଼ିଆ ଭାଷା ପ୍ରତିଷ୍ଠାନ କରିବାକୁ ସାହସ କରିନାହିଁ, ତାହା ପାରଳାଖେମୁଣ୍ଡିରେ ୧୦୦ ବର୍ଷ ପୂର୍ବେ କରାଯାଉଥିଲା । ଏଥିପାଇଁ ଆପନ୍ନା ପରିଚ୍ଛାଙ୍କର ଯେତେ ପ୍ରଶଂସା କଲେ ମଧ୍ୟ ତାହା ତାଙ୍କ କାର୍ଯ୍ୟର ତଉଲରେ କମ୍ ହେବ ବୋଲି ଆମେ ବିଚାର କରୁ । କେବଳ ସେତିକି ନୁହେଁ, ଭରତ ମୁନିଙ୍କ ନାଟ୍ୟ ଶାସ୍ତ୍ର ସମ୍ପର୍କରେ ମଧ୍ୟ ଉତ୍କଳ ଜ୍ଞାନ ବିବର୍ଦ୍ଧିନୀ ସଭା ଆଲୋଚନା କରୁଥିଲା । ନାଟକରୁ ସୂତ୍ରଧର ଉଠାଇଦେବା ପାଇଁ ନିଷ୍ପତ୍ତି ନେବାରେ ଏହି ସଂଗଠନ ଓଡ଼ିଶାରେ ପ୍ରଥମ । ଏହି ନିଷ୍ପତ୍ତି ପାରଳାର ଲେଖକମାନେ ତୁରନ୍ତ କାର୍ଯ୍ୟକାରୀ କରିଥିଲେ । ଏ କାର୍ଯ୍ୟରେ ମଧ୍ୟ ଆପନ୍ନା ପରିଚ୍ଛାଙ୍କ ଭୂମିକା ଥିଲା ଅଗ୍ରଗଣ୍ୟ । ପାରଳାଖେମୁଣ୍ଡିଠାରେ ଏକ ପ୍ରାର୍ଥନା ସମାଜ ସଂଗଠିତ କରି ଲୋକଙ୍କୁ ଭକ୍ତି ଗୀତର ମହତ୍ତ୍ୱ ବୁଝାଇବାରେ ଆପନ୍ନା ପରିଚ୍ଛାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ ।

ପରଳାଖେମୁଣ୍ଡିରେ ଉଚ୍ଚ ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ଥାପନ ହେବା ଦିନଠାରୁ ସେଗୁଡ଼ିକରେ କାର୍ଯ୍ୟରତ ଶିକ୍ଷକ ଓ ଅଧ୍ୟାପକ ଥିଲେ ଅଧିକନ୍ତୁ ତେଲୁଗୁ । ପ୍ରଶାସନ ଉପରେ ସେମାନଙ୍କର ଅତ୍ୟଧିକ ବ୍ୟକ୍ତିଗତ ପ୍ରଭାବ ଥିଲା । ସେମାନଙ୍କ ଅସୂୟା ହେତୁ ଓଡ଼ିଆମାନେ ନିଜକୁ ହୀନମାନ ମନେକରୁଥିଲେ । ଅନେକ ସମୟରେ ଓଡ଼ିଆମାନେ ନ୍ୟାଯ୍ୟ ପ୍ରାପ୍ୟରୁ ମଧ୍ୟ ବଂଚିତ ହେଉଥିଲେ । ଆପନ୍ନା ପରିଚ୍ଛାଙ୍କ ଉଦ୍ୟମରେ ତା.୨୦.୭.୧୯୧୪ ରିଖରେ ଉତ୍କଳ ବିଦ୍ୟାବିବର୍ଦ୍ଧିନୀ ସଭାର ଏକ ପ୍ରତିନିଧି ଦଳ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସାକ୍ଷାତ କରି ଛାତ୍ରବୃତ୍ତି ମଂଜୁରୀ କ୍ଷେତ୍ରରେ ମେଧାବୀ ଓଡ଼ିଆ ଛାତ୍ରମାନେ ଅବହେଳାର ଶିକାର ହେଉଥିବା ବିଷୟ ଜଣାଇବା ସହ ସଂପୃକ୍ତ ବୃତ୍ତି ମଂଜୁରୀ ପାଇଁ ଉଦ୍ଦିଷ୍ଟ ପରିଷଦରେ ଜଣେ ଓଡ଼ିଆ ପାରିଷଦଙ୍କୁ ରଖିବା ପାଇଁ ପ୍ରସ୍ତାବ ଦେଇଥିଲେ । ମହାରାଜା ଉକ୍ତ ପ୍ରସ୍ତାବ ପ୍ରତି ନିଜର ସମ୍ମତି ପ୍ରଦାନ କରିଥିଲେ । ମେଧାବୀ ଓଡ଼ିଆ ଛାତ୍ରମାନଙ୍କ ଶିକ୍ଷା ପାଇଁ ଏହି ରାଜାନୁଗ୍ରହ ପ୍ରାପ୍ତ ବୃତ୍ତି ବିଶେଷ ସହାୟକ

ହୋଇଥିଲା । ଏକଥାକୁ ସ୍ୱୀକାର କରି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ପରି ଅନେକ ବିଶିଷ୍ଟ ବ୍ୟକ୍ତି ଟୀକା ଟିପ୍ପଣୀ କରିଯାଇଛନ୍ତି । ଗଞ୍ଜାମ ଜିଲ୍ଲା ସମେତ ସମଗ୍ର ପାରଳା ରାଜ୍ୟରେ ଥିବା ମଠ ମନ୍ଦିରଗୁଡ଼ିକର ବିକାଶ ପାଇଁ ମାଡ୍ରାସ ଦେବୋତ୍ତର ବିଭାଗ ପକ୍ଷରୁ ଯେଉଁ ଆଇନଗତ ପ୍ରତିବନ୍ଧକମାନ ରହିଥିଲା ତା' ବିରୁଦ୍ଧରେ ଆନ୍ଦୋଳନର ପ୍ରବକ୍ତା ଥିଲେ ଆପନ୍ନା ପରିଚ୍ଛା । ଏଥିପାଇଁ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ସଭା ସମ୍ମିଳନୀ ଓ ସ୍ମାରକପତ୍ର ଆପନ୍ନା ପ୍ରସ୍ତୁତ କରୁଥିଲେ । ଏଥିପାଇଁ ତାଙ୍କୁ ବାରମ୍ବାର ମାଡ୍ରାସ ଯିବାକୁ ପଡୁଥିଲା ।

## ଉତ୍କଳ ସମ୍ମିଳନୀ ଓ ଦେଶ ମିଶ୍ରଣ ଆନ୍ଦୋଳନରେ ଆପନ୍ନା ପରିଚ୍ଛା

ଖଲ୍ଲିକୋଟ ରାଜାଙ୍କ ରମ୍ଭା ରାଜପ୍ରାସାଦ ପରିସରରେ ଏବେ ମଧ୍ୟ ଏକ ମୁକ୍ତ ମଂଚ ଦେଖିବାକୁ ମିଳେ । ମଧୁବାବୁଙ୍କ ଭାଷାରେ ଏହି ମଂଚ ଓଡ଼ିଆ ଜାତିର ଯଜ୍ଞପୀଠ । ଏଠାରେ ତା.୧୩.୧.୧୯୦୨ରିଖ ଦିନ ହରିହର ମର୍ଦ୍ଦରାଜଙ୍କ ଆହ୍ୱାନରେ ଅନୁଷ୍ଠିତ ହୋଇଥିଲା ଏକ ଆଲୋଚନା ସଭା । ଓଡ଼ିଶାର ଅନେକ ରାଜା ମହାରାଜାଙ୍କ ସମେତ ମଧୁବାବୁ ପ୍ରଭୃତି ଓଡ଼ିଆ ନେତାମାନେ ଏଥିରେ ଯୋଗଦେଇଥିଲେ । ଏ ସଭାରେ ମଧୁବାବୁଙ୍କ ପ୍ରସ୍ତାବ ପ୍ରକାରେ ଗଞ୍ଜାମ ସମ୍ମିଳନୀ କରିବାକୁ ସ୍ଥିର ହେଲା । ଏଥିର ଆୟୋଜନ କରିବା ପାଇଁ ଗଞ୍ଜାମ ଜାତୀୟ ସମ୍ମିଳନୀ ନାମକ ଏକ ସଂଗଠନ ଜନ୍ମଲାଭ କଲା । ଏହି ସଂଗଠନ କର୍ତ୍ତୃକ ଆୟୋଜନରେ ବ୍ରହ୍ମପୁରଠାରେ ଅଳ୍ପଦିନ ବ୍ୟବଧାନରେ ଦୁଇଥର ଗଞ୍ଜାମ ସମ୍ମିଳନୀର ଅଧିବେଶନ ବସିଥିଲା । ୧୯୦୩ ଏପ୍ରିଲ ଅଧିବେଶନରେ ପାରଳାଖେମୁଣ୍ଡିର ଶ୍ୟାମସୁନ୍ଦର ରାଜଗୁରୁ ସଭାପତିତ୍ୱ କରିଥିଲେ । ମଧୁବାବୁଙ୍କ ପ୍ରସ୍ତାବ ଅନୁଯାୟୀ ଗଞ୍ଜାମ ସମ୍ମିଳନୀକୁ ଉତ୍କଳ ସମ୍ମିଳନୀରେ ରୂପାନ୍ତରୀତ କରିବାକୁ ସ୍ଥିର ହେଲା । ଏହାପରେ ସେହି ବର୍ଷ ଡିସେମ୍ବର ମାସରେ ଉତ୍କଳ ସମ୍ମିଳନୀର ୧ମ ଅଧିବେଶନ କଟକ ଇଦ୍‌ଗା ପଡିଆରେ ଥିବା ନଗେନ୍ଦ୍ର ନାଥ ରାୟ ଚୌଧୁରୀଙ୍କ ଏକ ଖୋଲା ସ୍ଥାନରେ ଅନୁଷ୍ଠିତ ହେଲା । ବହୁ ସଂଖ୍ୟକ ରାଜା, ମହାରାଜା, ସରକାରୀ ଅଧିକାରୀ, ଓଡ଼ିଆ ନେତା ଓ ଯୁବକ ଏଥିରେ ଯୋଗଦାନ କରିଥିଲେ । କିନ୍ତୁ ପାରଳାଖେମୁଣ୍ଡିରୁ ରାଜା କିମ୍ବା ରାଜଭ୍ରାତା ଏଥିରେ କୌଣସି କାରଣରୁ ଯୋଗଦେଇ ନଥିଲେ । ତେବେ ରାଜଭ୍ରାତ ପଦ୍ମନାଭ ଦେବ ଏକ ବାର୍ତ୍ତା ପ୍ରେରଣ କରି ସମ୍ମିଳନୀର ସଫଳତା କାମନା କରିଥିଲେ । ପଦ୍ମନାଭ ଦେବଙ୍କ ଓଡ଼ିଆ ଭାଷା ପ୍ରତି ଥିବା ଅନୁରାଗ ଓ ଓଡ଼ିଆ ପ୍ରୀତି ପ୍ରତି କାହାରି ସନ୍ଦେହ ନଥିଲା । ତେଣୁ ତାଙ୍କ ଅନୁପସ୍ଥିତିରେ ମଧ୍ୟ ସମ୍ମିଳନୀ ଗଠନ କରିଥିବା ବିଭିନ୍ନ ସ୍ଥାୟୀ ସମିତିରେ ତାଙ୍କୁ ସଦସ୍ୟ ଭାବେ ନିଆଯାଇଥିଲା ।

ଗଞ୍ଜାମରୁ ସର୍ବାଧିକ ପ୍ରତିନିଧି ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଯୋଗ ଦେଇଥିବା ଜଣାଯାଏ । କାରଣ ଗଞ୍ଜାମ ସେତେବେଳେ ମୂଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ମାଡ୍ରାସ୍ ଅଧୀନରେ ରହିଥିବାରୁ ସେଠାର ଓଡ଼ିଆମାନେ ନାନାଭାବେ ନିର୍ଯ୍ୟାତିତ ହେଉଥିଲେ । ସୁତରାଂ ଓଡ଼ିଆ ଜାତୀୟତାକୁ ନେଇ ଗଞ୍ଜାମବାସୀ ଅଧିକ ସଚେତନ ହେବା ସ୍ୱାଭାବିକ । ଏଠାରେ ସ୍ମରଣଯୋଗ୍ୟ ଯେ ପାରଳାଖେମୁଣ୍ଡି ତେତେବେଳେ ମାଡ୍ରାସ ଅଧୀନ ଗଞ୍ଜାମର ଅନ୍ତର୍ଭୁକ୍ତ ଥିଲା ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ବୟଃକ୍ରମେ ୧୯୧୩ ଏପ୍ରିଲ ୨୬, ତାଙ୍କ ଜନ୍ମ ତିଥିରେ ରାଜ୍ୟାଭିଷିକ୍ତ ହେଲେ । ସେହିବର୍ଷ ଡିସେମ୍ବର ୩୦ରେ ଉତ୍କଳ ସମ୍ମିଳନୀର ୯ମ ଅଧିବେଶନ ପୁରୀଠାରେ ହେଲା । ପାରଳାଖେମୁଣ୍ଡିର ପ୍ରତିନିଧି ଭାବେ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ଆପନ୍ନା ପରିଚ୍ଛା ଏଥିରେ ଯୋଗଦେଇଥିଲେ । ଏ ହେଉଛନ୍ତି ସେହି ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଯିଏ କି ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ୧ମ ମନ୍ତ୍ରିମଣ୍ଡଳରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ପରେ ସ୍ଥାନ ପାଇଥିଲେ । ପୁରୀର ଅଧିବେଶନ ବେଳେ ଗୋରାଚ୍ଛନ୍ଦ ଓ ଆପନ୍ନା ପରିଚ୍ଛା ପରସ୍ପର ଆଲୋଚନା କରି ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ପାରଳାଖେମୁଣ୍ଡିରେ କରିବା ପାଇଁ ସ୍ଥିର କଲେ । ଏଥିପାଇଁ ଯେଉଁ ବିଧିବଦ୍ଧ ପ୍ରସ୍ତାବ ଆଗତ କରାଗଲା ସେଥିର ପ୍ରସ୍ତାବକ ଥିଲେ ଗୋରାଚ୍ଛନ୍ଦ ପଟ୍ଟନାୟକ ଓ ସମର୍ଥକ ଥିଲେ ଆପନ୍ନା ପରିଚ୍ଛା । ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଏହିଠାରୁ ଆପନ୍ନା ପରିଚ୍ଛାଙ୍କ ଘନିଷ୍ଠତା ଆରମ୍ଭ ହୁଏ ଉତ୍କଳ ସମ୍ମିଳନୀ ସହ । ଏବଂ ସେ ଗଞ୍ଜାମର ଓଡ଼ିଶା ସହ ମିଶ୍ରଣ କାର୍ଯ୍ୟରେ ଲାଗିପଡନ୍ତି । ଆସ୍କାର ହରିହର ପଣ୍ଡାଙ୍କର ସେତେବେଳେ ଗଞ୍ଜାମରେ ଖୁବ୍ ପ୍ରଭାବ ଥିଲା । ଉତ୍କଳ ସମ୍ମିଳନୀର ବିଭିନ୍ନ କାର୍ଯ୍ୟ କରିବା ଅବସରରେ ଆପନ୍ନା ପରିଚ୍ଛା ହରିହର ପଣ୍ଡାଙ୍କ ସମ୍ପର୍କରେ ଆସନ୍ତି । ଗଞ୍ଜାମର ଓଡ଼ିଶା ସହ ମିଶ୍ରଣ ପାଇଁ ଆପନ୍ନା ହରିହର ପଣ୍ଡାଙ୍କୁ ୧୯୧୪ ଫେବୃୟାରୀ ୧୪ ତାରିଖରେ ଏକ ପତ୍ର ଦେଇଥିଲେ । ଏଥିରୁ ସୂଚନା ମିଳୁଛି ଯେ ପାରଳାଖେମୁଣ୍ଡିରେ ଉତ୍କଳ ମ୍ମିଳନୀର ୧୦ମ ଅଧିବେଶନ ହେବା ପୂର୍ବରୁ ଦେଶ ମିଶ୍ରଣ ଆନ୍ଦୋଳନ ଦକ୍ଷିଣାଞ୍ଚଳରେ ଆରମ୍ଭ ହୋଇଯାଇଥିଲା ଓ ଆପନ୍ନା ପରିଚ୍ଛା ସେ ଦିଗରେ ଜଣେ ଆଗୁଆ ବ୍ୟକ୍ତି ଥିଲେ ।

ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ବସାଇବା ସବୁ ଦୃଷ୍ଟିରୁ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା । କାରଣ ଓଡ଼ିଶାର ଗଜପତିଙ୍କ ବିଶାଳ ଉତ୍କଳ ବିଖଣ୍ଡିତ ହୋଇ ସେତେବେଳକୁ ସେମାନଙ୍କ ଗର୍ବ ଗଞ୍ଜନ ହୋଇସାରିଥିଲା । ତଳଲିଖିତ ରାଜ

ପ୍ରଶସ୍ତି, ଯାହା ସେମାନେ ଯୁଗ ଯୁଗ ଧରି ପ୍ରକାଶ କରିଆସୁଥିଲେ, ତାହା ଗୁରୁତ୍ୱ ହରାଇ ବସିଥିଲା ।

"କର୍ଣ୍ଣଟୋଜ୍ଜାସ ସିଂହଃ କଳବରଗଜୟୀ ମାଳବଧ୍ୱଂଶଶୀଳଃ
ଙ୍ଗଘାଳୋ ଗୌଡମର୍ଦ୍ଦୀ ଭ୍ରମରବରନୃପୋ ଧ୍ୱସ୍ତ ଦିଲ୍ଲୀନ୍ଦ୍ର ଗର୍ବଃ ।
ସଂଗ୍ରାମେ ଦ୍ରଷ୍ଟୁମେନଂ ପ୍ରତିଭଟ ସୁଭଟାଃ କେବଳନ୍ତେ ବଳନ୍ତେ
ଯେଷାଂ ସ୍ୟାନ୍ନାକନାରୀକୁଚ କଳଶତଟୀ କୁଙ୍କୁମାସଙ୍ଗ ରଙ୍ଗଃ ।"

ଏତେ ପ୍ରତାପଶାଳୀ ଉତ୍କଳ ଗଜପତିଙ୍କ ବିଶାଳ ସାମ୍ରାଜ୍ୟ ସଂକୁଚିତ ହୋଇ ଏକ କ୍ଷୁଦ୍ର ରାଜ୍ୟରେ ପରିଣତ ହୋଇଯାଇଥିଲା । ଏହାର ଦକ୍ଷିଣ ସୀମା ଛତ୍ରଗଡଠାରେ ଅଟକି ରହିଥିଲା । ସେହିପରି ଯେଉଁ ପାରଳାଖେମୁଣ୍ଡିର ସୀମା ଏକଦା ଉତ୍ତରକୁ ଛତ୍ରଗଡ ଘାଟି ଓ ଦକ୍ଷିଣକୁ ଗୋଦାବରୀ ଯାଏ ବ୍ୟାପିଥିଲା, ସେ ବିଶାଳ ରାଜ୍ୟର ସୀମା ମଧ୍ୟ ସଂକୁଚିତ ହୋଇ ଏକ ସାଧାରଣ ଜମିଦାରିର ପରିଚୟ ନେଇ ମାଡ୍ରାସ ଅଧୀନରେ ଶାସିତ ହେଉଥିଲା ।

ଇଂରେଜ ଶାସନ ବିରୁଦ୍ଧରେ ଶତ ସମ୍ବସର ସଂଗ୍ରାମ କରି ଗଞ୍ଜାମବାସୀଙ୍କୁ (ପାରଳା ସମେତ) ଶାସକ ଇଂରେଜମାନଙ୍କ ଆକ୍ରୋଶ ଓ ସେମାନଙ୍କ ଅନୁଗାମୀ ଅଣଓଡ଼ିଆଙ୍କର ଈର୍ଷା ଓ ଅସୂୟାର ଶିକାର ହେବାକୁ ପଡ଼ିଥିଲା । ସକଳ କ୍ଷେତ୍ରରେ ଓଡ଼ିଆମାନେ ଅବହେଳା, ଉଦାସୀନତା ଓ ଆକ୍ରୋଶ ଜନିତ କାରଣରୁ ନିଜକୁ ହୀନମାନ ମନେକରୁଥିବା ସତ୍ତ୍ୱେ କୌଣସି ପ୍ରତିକାର କରିବା ସେମାନଙ୍କ ପକ୍ଷେ ଅସମ୍ଭବ ମନେ ହେଉଥିଲା । ସବୁଠାରୁ କ୍ଷତିଗ୍ରସ୍ତ ଓଡ଼ିଆ ଭାଷାର ସୁରକ୍ଷା ଓ ଅର୍ଥନୀତିକ ଦୂରବସ୍ଥାରୁ ମୁକ୍ତି – ଏ ଦୁଇ ପ୍ରସଙ୍ଗ ଓଡ଼ିଆମାନଙ୍କ ପାଇଁ ହୋଇଥିଲା ଚିନ୍ତାର କାରଣ । ଗାଁ କାର୍ଯ୍ୟକରଣଙ୍କ କାଗଜପତ୍ରଠାରୁ କୋର୍ଟ କଚେରୀ ପର୍ଯ୍ୟନ୍ତ ସବୁଠି ତେଲୁଗୁ ଭାଷାର ପ୍ରଚଳନ କରି ଦିଆଗଲା । ଲୋକଙ୍କୁ ହାରିଗୁହାରି ତେଲୁଗୁ ଭାଷାରେ କରିବାକୁ ଏକ ରକମ ବାଧ୍ୟ କରାଯାଉଥିଲା । ଓଡ଼ିଆ ଭାଷା ବୁଝି ନପାରି ଇଂରେଜ ଅଧିକାରୀମାନେ ସେମାନଙ୍କ ଅଧୀନସ୍ଥ ଅଣଓଡ଼ିଆ କର୍ମଚାରୀମାନଙ୍କ ପରାମର୍ଶରେ କାର୍ଯ୍ୟ କରୁଥିଲେ । ଅଣଓଡ଼ିଆଙ୍କ କୁପରାମର୍ଶ ହେତୁ ଓଡ଼ିଆମାନଙ୍କ ସ୍ୱାର୍ଥ ବରାବର ବ୍ୟାହତ ହେବାକୁ ଲାଗିଲା ଓ ସେମାନଙ୍କ ଅର୍ଥନୀତିକ ଦୂରବସ୍ଥା ବଢ଼ି ଚାଲିଲା । ଅବହେଳା ହେତୁ ଗଂଜାମ ଭୂମି ବାରମ୍ବାର ମରୁଡିକୁ ସାମ୍ନା କରିବାକୁ ପଡିଲା । ଓଡ଼ିଆମାନେ ଆଉ ବଂଚି ରହିବାର ରାହା ପାଇଲେ ନାହିଁ । ନାହିଁ ନଥିବା ଦୁର୍ଭିକ୍ଷର ଶିକାର ହେଲେ ସେମାନେ । ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ

ଏପରି ଏକ ପୃଷ୍ଠଭୂମିରେ ପାରଳାରେ ଅନୁଷ୍ଠିତ ହେବାକୁ ଥିବାରୁ ଗଂଜାମ ତଥା ପାରଳାବାସୀ ଏଥିପାଇଁ ସର୍ବାଧିକ ଆଗ୍ରହ ପ୍ରକାଶ କଲେ । ମାଡ୍ରାସ ଅଧୀନରେ ସେତେବେଳେ ଶାସିତ ହେଉଥିବା ସମସ୍ତ ଓଡ଼ିଆଙ୍କ ପାଇଁ ଉତ୍କଳ ସମ୍ମିଳନୀର ପ୍ରସ୍ତାବିତ ୧୦ମ ଅଧିବେଶନ ସୃଷ୍ଟିକୋଲା ଆଶାର ବୈତରଣୀ ।

ତେବେ ଓଡ଼ିଆଙ୍କ ଭାଗ୍ୟାକାଶରେ ସେତେବେଳକୁ ଅମାବାସ୍ୟା ତିଥିରେ କୃଷ୍ଣ ଚନ୍ଦ୍ରୋଦୟ ହୋଇ ସାରିଥିଲା । ମାଡ୍ରାସ ନ୍ୟୁଇଙ୍ଗ୍‌ଟନ୍ କଲେଜରେ ଶିକ୍ଷା ସମାପ୍ତ କଲାପରେ ପାରଳା-ରାଜକୁଳ-ତିଳକ-ଗଙ୍ଗବଂଶାବତଂସ-ଓଡ଼ିଶାର ଭାବି କୀର୍ତ୍ତି କିରୀଟ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ୧୯୧୩ ଏପ୍ରିଲ ୨୬ ତାରିଖରୁ ପାରଳାଖେମୁଣ୍ଡିରେ ରାଜସିଂହାସନାଭିସିକ୍ତ ହୋଇସାରିଥିଲେ । ସେ ତାଙ୍କ ପୂର୍ବସୂରି ଗଜାଧୀଶ ଚୋଡଗଙ୍ଗ ଦେବଙ୍କ ଅମିତବଳ ଓ ଐଶ୍ୱର୍ଯ୍ୟ ସଂପର୍କରେ ଅବଶ୍ୟ ଅବହିତ ଥିଲେ । ଚୋଡଗଙ୍ଗ ଦେବ ଯେ କି କଳିଙ୍ଗ ଓ ଉତ୍କଳର ପୁନଃମିଶ୍ରଣ ଘଟାଇଥିଲେ ତାହାଙ୍କ ବିକ୍ରମ କିପରି ଥିଲା, ତଳଲିଖିତ ଏକ ସଂସ୍କୃତ ପ୍ରଶସ୍ତି ପତ୍ରର ଅନୁବାଦରୁ ତାହା ଆକଳନୀୟ ।

"ଯେପରି ନାରାୟଣଙ୍କର ଲକ୍ଷ୍ମୀ ଏବଂ ଚନ୍ଦ୍ରଙ୍କର ରୋହିଣୀ, ସେହିପରି ରାଜରାଜଙ୍କର ଜ୍ୟେଷ୍ଠ ମହିଷୀ ରାଜସୁନ୍ଦରୀ ।

ପର୍ବତ ପକ୍ଷଚ୍ଛେଦ ନିମିତ୍ତ ସ୍ୱର୍ଗରେ ଇନ୍ଦ୍ରଙ୍କଠାରୁ ବଜ୍ର ବାହାରିଲା ପରି ଉକ୍ତ ମହିଷୀଙ୍କ ଗର୍ଭରେ ତାହାଙ୍କ ଠାରୁ ଚୋଡଗଙ୍ଗ ଜାତ ହେଲେ । ନିଶ୍ଚୟ ସରସ୍ୱତୀ ଏହାଙ୍କର ଧାତ୍ରୀ ଥିଲେ । ଏହି ଆର୍ଯ୍ୟ ଶିଶୁ ଚୋଡଗଙ୍ଗ ଅତି ଶୈଶବରେ ସେହି ସାରସ୍ୱତ ପୟଃ ପାନ କରିନଥିଲେ ତାଙ୍କର ବେଦ ବେଦାଙ୍ଗରେ ସେପରି ପ୍ରବେଶ, ଶାସ୍ତ୍ରରେ ସେପରି ନୈପୁଣ୍ୟ, ସେପରି ଆଶ୍ଚର୍ଯ୍ୟ କବିତ୍ୱ ପ୍ରତିଭା ଏବଂ ସୁକୁମାର ଶିଳ୍ପ ତାଦୃଶ ପରିପକ୍ୱତା କିପରି ହେଲା ।

ଯେ ଦିକ୍ପାଳମାନଙ୍କ ବ୍ୟତୀତ ପୃଥିବୀର ସମସ୍ତ ରାଜାଙ୍କୁ ନିଜର ଅଧୀନ କରିଥିଲେ ଏବଂ ତାହାଙ୍କର ପାଦଦ୍ୱୟ ଶତ୍ରୁ ରାଜାମାନଙ୍କ ଚୂର୍ଣ୍ଣରତ୍ନଦ୍ୟୁତିରେ ଦ୍ୟୋତିତ ହେଉଥିଲା, ଚୋଡଗଙ୍ଗଙ୍କ ପକ୍ଷରେ ଏହା କି ବା ପ୍ରଶଂସା ? ଯେଣୁ ଏହି ପୂର୍ଣ୍ଣଚନ୍ଦ୍ର ତାହା ସବୁ ଦେଖି କାଳେ ମୋତେ ଶତ୍ରୁ ରାଜାର ଶ୍ୱେତଛତ୍ର ମନେକରି ହରଣ କରିବେ, ଏହି ଭୟରେ ନିଜର ଅଙ୍ଗବୃଦ୍ଧିକି ସୁଦ୍ଧା ତ୍ୟାଗ କରିଅଛି ।

ଯେପରି ବୟସ୍କ ଲୋକ ନିରପେକ୍ଷ ଭାବରେ ତା'ର ପରିଣିତା ସ୍ତ୍ରୀଠାରୁ କର ଗ୍ରହଣ କରେ, ସେପରି ଚୋଡଗଙ୍ଗ ଦେବ ତଦାନୀନ୍ତନ ବୀରପୁରୁଷମାନଙ୍କୁ ଅପେକ୍ଷା ନକରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ରାଜ୍ୟରୁ କର ଗ୍ରହଣ କରୁଥିଲେ । ........"

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ରାଜପଣ ଆରମ୍ଭ କଲେ ତା.୨୬.୪.୧୯୧୩ରିଖରେ । ବୋଧହୁଏ, ସେ ସେଦିନ ସଂକଳ୍ପ କରିଥିଲେ, ତାଙ୍କ ପୂର୍ବସୂରିଙ୍କ ପଦାଙ୍କ ଅନୁସରଣ କରି ବିଖଣ୍ଡିତ ଉତ୍କଳକୁ ପୁଣି ଯୋଡିଦେବେ, ଯାହାକି ତାଙ୍କ ପରବର୍ତ୍ତୀ କାର୍ଯ୍ୟକଳାପରୁ ପ୍ରମାଣିତ ହେଲା । ପାରଳାରେ ହେବାକୁ ଥିବା ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ତାଙ୍କ ସଂକଳ୍ପ ସାକାର କରିବାକୁ ଆଣିଦେଲା ଅପୂର୍ବ ସୁଯୋଗ । ଏ ସୁଯୋଗର ବାର୍ତ୍ତାବହ ଥିଲେ ଆପନ୍ନା ପରିଚ୍ଛା । ପୁରୀ ଅଧିବେଶନର ନିଷ୍ପତ୍ତି ସଂପର୍କରେ ଆପନ୍ନା ସ୍ୱୟଂ ମହାରାଜାଙ୍କୁ ସାକ୍ଷାତ କରି ଜଣାଇଥିଲେ । ଏଥିରେ ମହାରାଜାଙ୍କ ଉତ୍ସାହର ସୀମା ରହିଲା ନାହିଁ । ସେ ସମ୍ମିଳନୀର ସର୍ବ ସଫଳତା ପାଇଁ ତନ-ମନ-ଧନ ଅକାତରେ ଅଜାଡି ଦେବାକୁ ମନ ସ୍ଥିର କରିନେଲେ । ଆପନ୍ନା ଏଥିର ପ୍ରଧାନ ସୂତ୍ରଧର ଥିବା ତାଙ୍କର ବିରୋଧୀ ବ୍ୟକ୍ତିଙ୍କୁ ଜଣାଥିଲା । ସେମାନଙ୍କର ନବୀନ ମହାରାଜାଙ୍କ ସହ ଘନିଷ୍ଠ ସମ୍ବନ୍ଧ ଥିଲା । ସେମାନେ ତା.୨୨.୪.୧୯୧୪ ରିଖରେ ମହାରାଜାଙ୍କୁ ସାକ୍ଷାତ କରି ପାରଳାଖେମୁଣ୍ଡିରେ ହେବାକୁ ଥିବା ସମ୍ମିଳନୀର ୧୦ମ ଅଧିବେଶନ ସଂପର୍କରେ କିଛି ନକାରାତ୍ମକ ଉଦ୍ୟମ କରିଥିଲେ । କିନ୍ତୁ ମହାରାଜାଙ୍କର ସମ୍ମିଳନୀ ପ୍ରତି ପୂର୍ଣ୍ଣ ଆସ୍ଥା ଥିବା ଜାଣିପାରି ସେମାନେ ପ୍ରସ୍ତାବ ସହ ଏକମତ ହୋଇ ଫେରିବା ବ୍ୟତୀତ ଗତ୍ୟନ୍ତର ନଥିଲା ।

ସମ୍ମିଳନୀର ପାରଳା ଅଧିବେଶନ ସଂପର୍କରେ ଆପନ୍ନା ପରିଚ୍ଛାଙ୍କର ମହାରାଜାଙ୍କ ସହ  ସାକ୍ଷାତ ଆଲୋଚନା ତା.୭.୪.୧୯୧୪ରେ ହୋଇଥିବା ଆପନ୍ନାଙ୍କ ଦିନଲିପିରେ ଲେଖାଅଛି । ସେଦିନ ଆଲୋଚନା ବେଳେ ୧୦ମ ଅଧିବେଶନର ରୂପରେଖ ସମ୍ପର୍କରେ ପ୍ରାରମ୍ଭିକ ଆଲୋଚନା ହୋଇଥିଲା । ଏଠି ଉଲ୍ଲେଖଯୋଗ୍ୟ ଯେ ଆପନ୍ନା ପରିଚ୍ଛା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସମ୍ମିଳନୀର ୧୦ମ ଅଧିବେଶନ ସଂପର୍କରେ ଆଗୁଆ ସୂଚନା ନ ଦେଇଥିଲେ ପରିସ୍ଥିତି କ'ଣ ହୋଇଥାନ୍ତା ଭଗବାନ ଜାଣନ୍ତି ।  ଦୁଷ୍ଟ ଶକ୍ତି ହୁଏତ ନିଜର ନକାରାତ୍ମକ ଭାବନାକୁ ସାକାର କରିବାକୁ ସମର୍ଥ ହୋଇଥାନ୍ତେ; ଯାହାକି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନକୁ ପ୍ରଭାବିତ କରିଦେଇଥାନ୍ତା ।

୧୯୧୪, ନଭେମ୍ବର ମାସରେ ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ପାଇଁ ଆୟୋଜନ ଆରମ୍ଭ ହେଲା । ଆପନ୍ନା ପରିଚ୍ଛା ଏଥିପାଇଁ ସର୍ବାନ୍ତଃକରଣରେ ଲାଗିପଡିଥିଲେ । ବାଳିକା ବିଦ୍ୟାଳୟକୁ ଯାଇ ସମ୍ମିଳନୀ ନିମନ୍ତେ ପ୍ରାରମ୍ଭିକ ସଂଗୀତ ଅଭ୍ୟାସ କରାଇବା ଠାରୁ ପ୍ରତିନିଧି ତାଲିକା ପ୍ରସ୍ତୁତ କରିବା ପର୍ଯ୍ୟନ୍ତ ବିଭିନ୍ନ କାର୍ଯ୍ୟର ଏକ ସମ୍ପୂର୍ଣ୍ଣ ଖସଡା ସେ ପ୍ରସ୍ତୁତ କରିଥିବା ତାଙ୍କ ଆନୁସଙ୍ଗିକ କାର୍ଯ୍ୟର ପର୍ଯ୍ୟାଲୋଚନା କଲେ

ଜଣାଯାଉଛି । ଏଥିପାଇଁ ସେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଇଷ୍ଟେଟ ମ୍ୟାନେଜର ଓ ମହାରାଜାଙ୍କ ଦୀକ୍ଷାଗୁରୁ ପୁରୀ ରାଧାକାନ୍ତ ମଠର ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀଙ୍କ ସହ ବାରମ୍ବାର ସମ୍ପର୍କ ରକ୍ଷା କରୁଥିଲେ । ଏଠାରେ ସ୍ମରଣଯୋଗ୍ୟ ଯେ ୧୦ମ ଅଧିବେଶନ ପାଇଁ ଏକ ଅଭ୍ୟର୍ଥନା ସମିତି ଗଠନ କରାଯାଇଥିଲା । ଏଥିରେ ସଭାପତି ଥିଲେ ରାଧାକୃଷ୍ଣ ଦାସ ଗୋସ୍ୱାମୀ । ରାଜ ଦରବାରର ଜଣେ ବିଶ୍ୱସ୍ତ ଉଚ୍ଚାଧିକାରୀ ନିତ୍ୟାନନ୍ଦ ପଟ୍ଟନାୟକ ସମ୍ପାଦକ ମନୋନୀତ ହୋଇଥିଲେ । ତେବେ ଏସବୁ କେବଳ ଔପଚାରିକତା ଦୃଷ୍ଟିରୁ କରାଯାଇଥିବା ମନେହୁଏ । ସମ୍ମିଳନୀକୁ ଯୋଜନା ମୁତାବକ ରୂପ ଦେବାର ଅସଲ ବିନ୍ଧାଣି ଥିଲେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଓ ସକଳ କାର୍ଯ୍ୟର କ୍ଷେତ୍ର ନିର୍ବାହୀ ଥିଲେ ଆପନ୍ନା ପରିଚ୍ଛା । ଆପନ୍ନା ପରିଚ୍ଛା ତାଙ୍କ ଦିନଲିପିରେ ସମ୍ମିଳନୀର ଏହି ୧୦ମ ଅଧିବେଶନ ସମ୍ପର୍କୀୟ ଦୈନନ୍ଦିନ ଘଟଣାର ସ୍ପଷ୍ଟ ଉଲ୍ଲେଖ କରିଯାଇଛନ୍ତି ଯେଉଁଥିରୁ ପ୍ରତିଭାତ ହେଉଛି ଯେ ଏ ଦିହେଁ ହିଁ ସବୁକଥା କରୁଥିଲେ ବା କରାଉଥିଲେ ।

ମହାରାଜା ୧୯୧୪, ନଭେମ୍ବର ୨୬ ତାରିଖରେ ଗୁଣ୍ଡିଝବାଡିକୁ ବିଜେହେଲେ । ଏଠାରେ ସମ୍ମିଳନୀ କରିବା ପାଇଁ ଶୁଭଖୁଣ୍ଟି ସ୍ଥାପନ କରାଗଲା । ଆପନ୍ନା ଏଥିପାଇଁ ମହାରାଜା ଓ ଇଷ୍ଟେଟ ଇଂଜିନିୟର, ମ୍ୟାନେଜର ଓ ମହନ୍ତ ଗୋସ୍ୱାମୀଙ୍କ ସହ ସମନ୍ୱୟ ରକ୍ଷା କରି ସକଳ ଆୟୋଜନ କରିଥିଲେ । ଶୁଭଖୁଣ୍ଟି ସ୍ଥାପନ ସହ ଆପନ୍ନା ପରିଚ୍ଛାଙ୍କ ଦାୟିତ୍ୱ ବଢ଼ିବାକୁ ଲାଗିଲା । ତା' ପରଦିନ ମହାରାଜା ଓ ତାଙ୍କ ଆଧ୍ୟାତ୍ମିକ ଗୁରୁଦେବ ରାଧାକାନ୍ତ ମଠର ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀଙ୍କ ପରାମର୍ଶ ପ୍ରକାରେ ସମ୍ମିଳନୀ ମଣ୍ଡପର ନକ୍ସା ପ୍ରସ୍ତୁତି କାର୍ଯ୍ୟାରମ୍ଭ ହେଲା । ଆପନ୍ନା ପରିଚ୍ଛା ନକ୍ସା ପ୍ରସ୍ତୁତି ଶେଷକରି ମହାରାଜାଙ୍କ ଅନୁମତି ନେଲେ । ଇଷ୍ଟେଟ ମ୍ୟାନେଜରଙ୍କ ସହ ସେ ଗୁଣ୍ଡିଝବାଡିକୁ ଯାଇ ନିରୂପିତ ସ୍ଥାନରେ ନକ୍ସା ମୁତାବକ କୀଳାମାରି ମଣ୍ଡପ ନିର୍ମାଣ କାର୍ଯ୍ୟ ଆରମ୍ଭ କରାଇଥିଲେ । ଡିସେମ୍ବର, ୧ ତାରିଖରେ ଛାମୁଣ୍ଡିଆ କାର୍ଯ୍ୟ ଆରମ୍ଭ ହେଲା । ଏ କାର୍ଯ୍ୟର ମଧ ତତ୍ତ୍ୱାବଧାରକ ଥିଲେ ଆପନ୍ନା ପରିଚ୍ଛା । ଛାମୁଣ୍ଡିଆ ନିର୍ମାଣଠାରୁ ନିମନ୍ତ୍ରଣ ପତ୍ର ମୁଦ୍ରଣ ପର୍ଯ୍ୟନ୍ତ ସକଳକାର୍ଯ୍ୟ ନିର୍ବାହ ଆପନ୍ନାଙ୍କ ସହଯୋଗ ବା ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚାଲିଥିଲା । ଡିସେମ୍ବର ୭ରେ ଆରମ୍ଭ ହେଲା ସମ୍ମିଳନୀ ମଣ୍ଡପର ମଣ୍ଡଣି କାର୍ଯ୍ୟ । ଉକ୍ତ ଅଧିବେଶନକୁ ସଫଳ କରିବାକୁ ଆପନ୍ନା ସବୁ ମନେ ଲାଗିପଡିଥିଲେ । ଅତିଥିମାନଙ୍କ ରହଣି ପାଇଁ ଆବଶ୍ୟକୀୟ ବ୍ୟବସ୍ଥା କରିବା, ମହାରାଜା ଅତିଥିଶାଳା ପାଇଁ ଚିହ୍ନିତ କରିଥିବା ବସାଘରମାନଙ୍କରେ ସମସ୍ତ ଉପଯୋଗୀ ସାଜସରଞ୍ଜାମର ବ୍ୟବସ୍ଥା, ସମ୍ମିଳନୀ ଅବସରରେ ଅତିଥିମାନଙ୍କ ମନୋରଞ୍ଜନ ନିମନ୍ତେ ମଂଚନାଟକ ଆୟୋଜନ ଓ ସେଥିପାଇଁ ରଂଗୀନ

ପରଦା କଲିକତାରୁ ଅଣାଇବା ଇତ୍ୟାଦି ସମସ୍ତକାର୍ଯ୍ୟ ସୁନିଶ୍ଚିତ କରିବା ଭାର ଆପନ୍ନାଙ୍କ ଉପରେ ନ୍ୟସ୍ତ ଥିଲା । ମହାରଜାଙ୍କ ନିର୍ଦ୍ଦେଶ ଓ ମହନ୍ତ ମହାରାଜାଙ୍କ ପରାମର୍ଶ ପ୍ରକାରେ ଆପନ୍ନା ପରିଚ୍ଛା ଉକ୍ତ ସମସ୍ତ କାର୍ଯ୍ୟ ସୁରୁଗୁରୂପେ ଆୟୋଜନ କରିଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଅର୍ଥ, ଅଭିଳାଷ ଓ ଆଦେଶ ଦ୍ୱାରା ଆପନ୍ନା ପରିଚ୍ଛା ସମସ୍ତ କାର୍ଯ୍ୟ ନିର୍ବାହ କରିଥିବା ତାଙ୍କ ଦିନଲିପିରୁ ଜଣାଯାଏ ।

ପରିଶେଷରେ ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ଦୁଇ ଦିନ ପାଇଁ ଗୁଣ୍ଡିଚାବାଡି ମଠ ସମ୍ମୁଖରେ ଥିବା ପଡିଆରେ ଡିସେମ୍ବର ୨୫ ଓ ୨୬ ଦୁଇ ଦିନ ପାଇଁ କରିବା ନିମନ୍ତେ ସମସ୍ତ ଆୟୋଜନ ଶେଷ ହେଲା । ସମ୍ମିଳନୀରେ ଯୋଗଦେବାକୁ ବାହାରୁ ଆସୁଥିବା ପ୍ରତିନିଧିମାନଙ୍କ ପାଇଁ ମହାରାଜା ସ୍ୱତନ୍ତ୍ର ରେଳଗାଡ଼ିର ବ୍ୟବସ୍ଥା କରିଥିଲେ । ଅଧୁନା ଆନ୍ଧ୍ର ପ୍ରଦେଶରେ ଥିବା ନୂଆପଡା ରେଳ ଷ୍ଟେସନରେ ପଦାର୍ପଣ କରିବାକୁ ଥିବା ପ୍ରତିନିଧିମାନଙ୍କୁ ସେଠାରୁ ପାରଳା ଆଣିବା ପାଇଁ ଏକ ସ୍ୱତନ୍ତ୍ର ରେଳଗାଡ଼ିର ବ୍ୟବସ୍ଥା ହୋଇଥିଲା । ଅତିଥି/ ପ୍ରତିନିଧିମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇ ନୂଆପଡାରୁ ସେମାନଙ୍କର ଅନୁଗମନ କରିବା ଦାୟିତ୍ୱ ମହାରାଜା ଆପନ୍ନା ପରିଚ୍ଛାଙ୍କୁ ଦେଇଥିଲେ । ସାଥିରେ ଜଣେ ପାଇକ ଓ ସ୍ୱେଚ୍ଛାସେବକଙ୍କୁ ନେଇ ଡିସେମ୍ବର ୨୫ ତାରିଖରେ ଆପନ୍ନା ନୂଆପଡା ରେଳଷ୍ଟେସନରେ ଉପସ୍ଥିତ ହୋଇଥିଲେ । ପୂର୍ବଦିନ ଅତିକମ୍ ସଂଖ୍ୟକ ପ୍ରତିନିଧି ପହଞ୍ଚିଥିବା ଆପନ୍ନା ଉଲ୍ଲେଖ କରିଛନ୍ତି । କିନ୍ତୁ ୨୫ ତାରିଖ ଦିନ ୩୦୦ ପ୍ରତିନିଧି ନୂଆପଡାଠାରେ ପହଞ୍ଚିଥିଲେ । ସେଠାରେ ରାଜାଙ୍କ ପକ୍ଷରୁ ଆପନ୍ନାଙ୍କ ନେତୃତ୍ୱରେ ସମସ୍ତ ଅତିଥିଙ୍କୁ ଭବ୍ୟ ସ୍ୱାଗତ ସମ୍ବର୍ଦ୍ଧନା ଦିଆଗଲା । ପୂର୍ବରୁ ପ୍ରସ୍ତୁତ ଥିବା ଏକ ସ୍ୱତନ୍ତ୍ର ରେଳରେ ପାରଳାଖେମୁଣ୍ଡି ରେଳଷ୍ଟେସନ ପର୍ଯ୍ୟନ୍ତ ଆପନ୍ନା ସେମାନଙ୍କର ଅନୁଗମନ କରିଥିଲେ । ଟେକେଲି ରେଳଷ୍ଟେସନଠାରୁ ସେଠିକାର ଯୁବରାଜ ଆପନ୍ନାଙ୍କୁ ସହଯୋଗ ଦେଇଥିଲେ । ରେଳଗାଡ଼ି ଅତିଥିମାନଙ୍କ ସହ ପାରଳାଖେମୁଣ୍ଡିରେ ପହଞ୍ଚିବା ବେଳକୁ ସେଠାରେ ସ୍ୱୟଂ ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଅଭ୍ୟର୍ଥନା ସମିତିର ସଭାପତି ରାଧାକୃଷ୍ଣ ଦାସ ଗୋସ୍ୱାମୀ ଓ ଜନସାଧାରଣ ବହୁ ସଂଖ୍ୟାରେ ସେଠାରେ ଉପସ୍ଥିତ ଥିଲେ । ମହାରାଜା ସମସ୍ତଙ୍କୁ ସ୍ୱାଗତ ପୂର୍ବକ ଘୋଡାଗାଡି, ବଳଦଗାଡି, କାହାକୁ ବା ନିଜର ମଟରଗାଡି ଯୋଗେ ଉଦ୍ଦିଷ୍ଟ ଅତିଥିଶାଳାକୁ ପଠାଇବା ଘଟନା ସମାଗତ ଅତିଥିମାନଙ୍କୁ ଆଚମ୍ବିତ କରିଦେଇଥିଲା । ଏଠାରେ ବି ଆପନ୍ନା ପରିଚ୍ଛା ଥିଲେ ପ୍ରଧାନ ସଂଯୋଜକ ।

ଓଡ଼ିଆ ଭାଷାଭାଷୀ ଅଂଚଳକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଦାବି ପ୍ରଥମଥର ପାଇଁ, ଉତ୍କଳ ସମ୍ମିଳନୀରେ ଏହି ପାରଳା ଅଧିବେଶନରେ ନିର୍ଦ୍ଧାରିତ

ହୋଇଥିଲା । ଏହାର ପ୍ରଧାନ ଉଦ୍ୟୋକ୍ତା ଥିଲେ କୃଷ୍ଣଚନ୍ଦ୍ର ଗଜପତି । ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, ଖୋର୍ଦ୍ଧାଠାରୁ ସମ୍ବଲପୁରକୁ ସିଧାସଳଖ ରେଳ ସଂଯୋଗ, ବିଶାଖାପାଟଣା ମାଳାଞ୍ଚଳ ଓ ଜୟପୁରକୁ ନେଇ ଏକ ଜିଲ୍ଲା ଗଠନ ଇତ୍ୟାଦି ଓଡ଼ିଆଙ୍କର ଗୁରୁତ୍ୱପୂର୍ଣ୍ଣ ଦାବି ଗୁଡ଼ିକ ଏହି ଅଧିବେଶନରୁ ଜନ୍ମ ନେଇଥିଲା । ସମ୍ମିଳନୀର ୧୦ମ ଅଧିବେଶନକୁ ପାରଳାଖେମୁଣ୍ଡିକୁ ଆହ୍ୱାନ କରିବା ଓ ସମ୍ମିଳନୀର ସର୍ବସଫଳତା ପାଇଁ ଯେଉଁମାନଙ୍କର ଐକାନ୍ତିକ ପ୍ରଚେଷ୍ଟା, ନିଷ୍ଠାପର କାର୍ଯ୍ୟ, କର୍ମ ପ୍ରବୀଣତା ଯୋଗୁଁ ସମ୍ଭବ ହୋଇଥିଲା ତନ୍ମଧ୍ୟରେ ମହାରାଜା କୃଷ୍ଣଚନ୍ଦ୍ର ତ ଅଗ୍ରଗଣ୍ୟ । ତେବେ, ଦ୍ୱିତୀୟ ବ୍ୟକ୍ତି ଯଦି କେହି ଥାଆନ୍ତି, ସେ ହେଉଛନ୍ତି ପାରଳାଖେମୁଣ୍ଡିର ଆପନ୍ନା ପରିଚ୍ଛା ।

ପାରଳାଖେମୁଣ୍ଡିରେ ଉକ୍ତ ଅଧିବେଶନରେ ସଭାପତିତ୍ୱ କରିବାକୁ ବାମଣ୍ଡା ମହାରାଜାଙ୍କୁ ଅନୁରୋଧ କରିବା ପାଇଁ ଆପନ୍ନା ତା.୭.୪.୧୯୧୪ରେ ମହାରାଜାଙ୍କ ସହ ସମ୍ମିଳନୀ ସମ୍ପର୍କୀୟ ପ୍ରାଥମିକ ଆଲୋଚନା କରିବା ଅବସରରେ ପ୍ରସ୍ତାବ ଦେଇଥିଲେ । ବିକ୍ରମ ଦେବ ବର୍ମା ସେତେବେଳକୁ ଜୟପୁର ରାଜଗାଦି ପାଇନଥାନ୍ତି । କିନ୍ତୁ, ଦୂରଦର୍ଶୀ ମହାରାଜା ଆପନ୍ନାଙ୍କ କଥାକୁ ଏଡାଇ ଦେଇ ବିକ୍ରମ ଦେବ ବର୍ମାଙ୍କୁ ଏଥିପାଇଁ ନିମନ୍ତ୍ରଣ କରିବାକୁ ସ୍ଥିର କରିଥିଲେ । ପରବର୍ତ୍ତୀ କାଳରେ ବିକ୍ରମ ଦେବ ଜୟପୁରର ମହାରାଜା ପଦରେ ଅଭିଷିକ୍ତ ହେଲେ ଓ ସ୍ୱତନ୍ତ୍ର ଓଡ଼ିଶାରେ ଜୟପୁରର ମିଶ୍ରଣ ତାଙ୍କ ସହମତି ହେତୁ ସମ୍ଭବ ହୋଇଥିଲା । ବିକ୍ରମ ଦେବ, ପାରଳା ଅଧିବେଶନ ବେଳେ ସମ୍ମିଳନୀ ସହ ମର୍ଯ୍ୟାଦାବନ୍ତ ଭାବେ ସଂଶ୍ଲିଷ୍ଟ ନ ହୋଇଥିଲେ, ତାଙ୍କ ତେଲଙ୍ଗ ଦେବାନ୍ ପୁଲ୍ଲା ରେଡ୍ଡୀ ଓଡ଼ିଶାରେ ଜୟପୁରର ମିଶ୍ରଣ ପାଇଁ ଯେ କଣ୍ଟା ହୋଇଥାନ୍ତେ, ଏଥିରେ ସନ୍ଦେହ ନାହିଁ । ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଦୂରଦୃଷ୍ଟିର ଏହା ଏକ ପ୍ରକୃଷ୍ଟ ପରିଚୟ ।

ସମ୍ମିଳନୀର ଐତିହାସିକ ପାରଳା ଅଧିବେଶନରେ ରାଜା, ଜମିଦାର, ପଣ୍ଡିତ, କବି ବହୁ ସଂଖ୍ୟାରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ମଧୁସୂଦନ ଦାସ, ବିକ୍ରମ ଦେବ ବର୍ମା, ଫକୀରମୋହନ ସେନାପତି, ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ, ଗୋପବନ୍ଧୁ ଦାସ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ବାଙ୍କିର ଜନୈକ ପଣ୍ଡିତ ଗୋବିନ୍ଦ ରଥ ସମ୍ମିଳନୀରେ ଯୋଗଦେଇ ସେଥିର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ରାମଚନ୍ଦ୍ର ରଥଙ୍କ ନାମରେ "ପାରଳା ସମ୍ମିଳନୀ" ଶିରୋନାମାରେ ଏକ କ୍ଷୁଦ୍ର ପୁସ୍ତିକା ଲେଖିଯାଇଛନ୍ତି । ସେଥିର କାୟଦଂଶ ଏହିପରି —

"ସୂର୍ଯ୍ୟନାରାୟଣ, ପଟ୍ଟନାୟକ ପୁଣ, ଗୁଣଗ୍ରାହୀଙ୍କ ଶିରୋମଣି,
ମହାପାତ୍ର ଗଣେଶ, ଶ୍ରୀ ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ର ପୁଣ ସେ ।

ଦୈତ୍ୟାରି - ପ୍ରସାଦ ଦାସ ନୀଳକଣ୍ଠ, ଶ୍ରୀ ସଦାନନ୍ଦ ଯେ ଗରିଷ୍ଠ,
ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଦୟାନିଧି ତ୍ରିନେତ୍ର ନିତ୍ୟାନନ୍ଦ ଭଣି ସେ ଦଇତ୍ୟାରି ।"

× × × ×

"ପାରଳା ଗଜପତି, ବିକ୍ରମ ଦେବ ଅତି ଯତନେ ଯୋଗଦେଇ ଥିବେ,
ମାନ୍ଧାତା ଗୋରାଚାନ୍ଦ, ଆବର ଗୌରଚନ୍ଦ୍ର, ଆପନ୍ନା ପରୀକ୍ଷାହି ଥିବେ ସେ ।
ହରିହର ପଣ୍ଡା ଏ ଶ୍ରୀ ବ୍ରଜ କିଶୋର, ନୀଳକଣ୍ଠ ମହାପାତ୍ର,
ଶ୍ରୀ ଗୋପୀନାଥ ଗୋବର୍ଦ୍ଧନ ଦାସ ବାବାଜୀ ନିତ୍ୟାନନ୍ଦଙ୍କ ସଙ୍ଗରେ ସେ ହରିହର ।"

ପଣ୍ଡିତ ରଥ ତାଙ୍କ ସମଗ୍ର ବିବରଣୀରେ ପାରଳାଖେମୁଣ୍ଡିର ମାତ୍ର ଚାରିଜଣଙ୍କର ନାମୋଲ୍ଲେଖ କରିଅଛନ୍ତି । ସେମାନେ ହେଲେ – (୧) ମହାରାଜା କୃଷ୍ଣଚନ୍ଦ୍ର ଗଜପତି, (୨) ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ, (୩) ଆପନ୍ନା (ପରୀକ୍ଷା) ପରିଚ୍ଛା ଓ (୪) ନିତ୍ୟାନନ୍ଦ ପଟ୍ଟନାୟକ । ଏତେବଡ ସମ୍ମିଳନୀର ମୁଖ୍ୟାଂଶରେ ମାତ୍ର ୪ ଜଣଙ୍କୁ ଚିହ୍ନିତ କରିଛନ୍ତି ଜଣେ ବହିରାଗତ ଅତିଥି । ଏବଂ ସେହି ୪ ଜଣଙ୍କ ମଧ୍ୟରେ ଆପନ୍ନା ପରିଚ୍ଛା ଅନ୍ୟତମ ଥିବାରୁ ସମ୍ମିଳନୀ ଆୟୋଜନରେ ଆପନ୍ନା ପରିଚ୍ଛାଙ୍କର କେତେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ବାରି ହୁଏ । ଉଲ୍ଲିଖିତ ୪ ଜଣଙ୍କ ମଧ୍ୟରେ ମହାରାଜା ଓ ତାଙ୍କ ଦରବାରର ଜନୈକ ବରିଷ୍ଠ ଅଧିକାରୀ ନିତ୍ୟାନନ୍ଦ ପଟ୍ଟନାୟକଙ୍କୁ ବାଦଦେଲେ ଆଉ ମାତ୍ର ଦୁଇଜଣ ହିଁ ଦୃଷ୍ଟିକୁ ଆସନ୍ତି । ସେ ମଧ୍ୟରୁ ଜଣେ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଯେକି ଓଡ଼ିଶାର ପ୍ରଥମ ୩ ଜଣିଆ ମନ୍ତ୍ରୀ ମଣ୍ଡଳର ଅନ୍ୟତମ ସଦସ୍ୟ ଓ ଅନ୍ୟ ଜଣକ ହେଉଛନ୍ତି ଆପନ୍ନା ପରିଚ୍ଛା । ସମ୍ମିଳନୀ ଆୟୋଜନରେ ଆପନ୍ନା ପରିଚ୍ଛାଙ୍କ ଗୁରୁତ୍ୱ କେତେ ଏହି ଆନୁଷଙ୍ଗିକ ଘଟଣାରୁ ମାପି ହେବ ।

ଅଧିବେଶନର ଦ୍ୱିତୀୟ ପର୍ଯ୍ୟାୟରେ କାର୍ଯ୍ୟ ତଦାରଖ ପାଇଁ କେତେକ କମିଟି ଗଠନ କରାଯାଇଥିଲା । ସେଥିରେ ମଧ ଆପନ୍ନାଙ୍କ ନାମ ପ୍ରସ୍ତାବିତ ହୋଇଥିବା ଦେଖିବାକୁ ମିଳେ । କହିବାକୁ ଗଲେ ରାଜଭ୍ରାତା ପଦ୍ମନାଭ ଦେବ ଓ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଦେହାବସାନ ପରେ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ଆପନ୍ନା ପରିଚ୍ଛା ଦୁଇଜଣ ହିଁ ଦେଶ ମିଶ୍ରଣ ଆନ୍ଦୋଳନରେ ଆଗୁସାର ଥିଲେ । କୃଷ୍ଣଚନ୍ଦ୍ର ଗଜପତି ସେଥିରେ ଯୋଗଦାନ କରିଛନ୍ତି ୧୯୧୪ରୁ । ମହାତ୍ମା ଗାନ୍ଧୀ କଂଗ୍ରେସରେ ବିଳମ୍ବରେ ଯୋଗଦାନ କରି ସବା ଆଗକୁ ଗଲାପରି ଘଟଣା ଦେଶ ମିଶ୍ରଣ ଆନ୍ଦୋଳନ ବେଳେ କୃଷ୍ଣଚନ୍ଦ୍ର ଗଜପତିଙ୍କ କ୍ଷେତ୍ରରେ ଘଟିଛି । ୧୯୧୪ର ପାରଳା ଅଧିବେଶନର ସଫଳତା କୃଷ୍ଣଚନ୍ଦ୍ରଙ୍କୁ ଗଢ଼ି ତୋଳିଥିଲା ଓଡ଼ିଆମାନଙ୍କର ଜଣେ ସର୍ବମାନ୍ୟ ନେତା ରୂପରେ ।

ଭାରତୀୟ ଜାତୀୟ କଂଗ୍ରେସରେ ଆପନ୍ନା ପରିଚ୍ଛାଙ୍କ ଯୋଗଦାନ ସତ୍ତ୍ୱେ ଦେଶ ମିଶ୍ରଣ ଆନ୍ଦୋଳନରେ ସେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ପରେ ଇଂରେଜ କର୍ତ୍ତୃକ ମାଡ୍ରାସ ସରକାରଙ୍କୁ ଅନେକ ଦାବିପତ୍ର/ସ୍ମାରକପତ୍ର ଦିଆଯାଇଥିଲା, ସେଥିରୁ ପ୍ରାୟ ଅଧିକାଂଶ ସ୍ମାରକପତ୍ରରେ ଆପନ୍ନା ପରିଚ୍ଛା ସ୍ୱାକ୍ଷରକାରୀ ଥିଲେ । ଜୟପୁରର ମହାରାଜା ବିକ୍ରମ ଦେବ ବର୍ମାଙ୍କ ସହ ବାରମ୍ବାର ସାକ୍ଷାତ କରି ଦେଶମିଶ୍ରଣ ସମ୍ପର୍କରେ ଆଲୋଚନା କରିଥିବା ସେ ତାଙ୍କ ଦିନଲିପିରେ ଲିପିବଦ୍ଧ କରି ଯାଇଛନ୍ତି । ତା.୧୧.୯.୧୯୨୫ରିଖରେ ଭୁବନାନନ୍ଦ ଦାସ, କନିକାର ରାଜାସାହେବ, ପଣ୍ଡିତ ନୀଳକଣ୍ଠ ଦାସ, ବିଚିତ୍ରାନନ୍ଦ ଦାସ, ଏମ୍.ଏସ୍. ପାଣିଗ୍ରାହୀ ଓ ଜୟପୁରର ଶ୍ରୀ ଗୌରଚନ୍ଦ୍ର ସାମନ୍ତରାୟଙ୍କ ସହ ଆପନ୍ନା ପରିଚ୍ଛା ଏକ ଓଡ଼ିଆ ପ୍ରତିନିଧି ଦଳରେ ଯାଇ 'ହାଉସ ମେମ୍ବର'ଙ୍କ ସଚିବଙ୍କୁ ସାକ୍ଷାତ କରି ଦେଶ ମିଶ୍ରଣ ସପକ୍ଷରେ ତାଙ୍କ ସହାନୁଭୂତି କାମନା କରିଥିଲେ । ଅନ୍ୟ ଏକ ଘଟଣାରେ ତା.୪.୫.୧୯୨୧ ରିଖରେ ମଧ୍ୟ ସେ ପୁରୀଠାରେ ବ୍ରଜସୁନ୍ଦର ଦାସଙ୍କ ନେତୃତ୍ୱରେ ଏକ ଦଶଜଣିଆ ପ୍ରତିନିଧି ଦଳରେ ସାମିଲ ରହି ତତ୍‌କାଳୀନ ଲାଟ ଲର୍ଡ ସିଂହଙ୍କୁ ସାକ୍ଷାତ କରି ଦେଶ ମିଶ୍ରଣ ସପକ୍ଷରେ ଯୁକ୍ତି ଉପସ୍ଥାପନ କରିଥିଲେ ।

ଆପନ୍ନା ପରିଚ୍ଛାଙ୍କ କାର୍ଯ୍ୟକଳାପ ଅନୁଶୀଳନ କଲେ ଜଣାଯାଏ ଯେ ସେ କୌଣସି ବ୍ୟକ୍ତିର ପୂଜାରୀ ନହୋଇ ସର୍ବଦା ନିଷ୍ଠାପରତା ସହ ନୀତି ନିୟମର ଅନୁବର୍ତ୍ତୀ ହେବାକୁ ପସନ୍ଦ କରୁଥିଲେ । ତେବେ ସେ ନିଜର ସ୍ୱାଧୀନ ବିଚାର ଆଧାରରେ ପ୍ରତ୍ୟେକ କାର୍ଯ୍ୟକୁ ତଉଲୁଥିଲେ । ତେଣୁ ସେ ଏକ ପକ୍ଷରେ ଜାତୀୟ କଂଗ୍ରେସର ନୀତି ପାଳନ କରିବାକୁ ଅଙ୍ଗୀକାରବଦ୍ଧ ଥାଇ ଅନ୍ୟ ପକ୍ଷରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବି ହାସଲ କରିବା ପାଇଁ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ମଧ୍ୟ ଅନୁଗମନ କରୁଥିଲେ । ଏପରି କେତେକ ଘଟଣା ମଧ୍ୟ ଅଛି ଯେଉଁଥିରେ ଆପନ୍ନା ପରିଚ୍ଛା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସମର୍ଥନ କରିନାହାନ୍ତି ।

ଆପନ୍ନା ପରିଚ୍ଛାଙ୍କ ସ୍ୱାଧୀନଚେତା ମନୋଭାବ, କର୍ତ୍ତବ୍ୟନିଷ୍ଠା ଓ ଓଡ଼ିଆପ୍ରାଣତା ତାଙ୍କ ପାଇଁ ଜନମାନସରେ ଜଣେ ଆଦର୍ଶ ପୁରୁଷର ଭାବମୂର୍ତ୍ତି ଆଙ୍କି ଦେଇଥିଲା । ଏଥିରେ ଈର୍ଷାନ୍ୱିତ କିଛି ବ୍ୟକ୍ତି ଓର ଉଣ୍ଡି ପାରଳା ମହାରାଜା ଓ ଆପନ୍ନାଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବାକୁ ବାରମ୍ବାର ଚେଷ୍ଟିତ ଥିଲେ । ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନର ଅବ୍ୟବହିତ ପୂର୍ବରୁ ମହାରାଜା ଚାହିଁଥିଲେ 'ମଦର ଇଣ୍ଡିଆ' ଶିରୋନାମାରେ ଏକ ସୁନ୍ଦର ପରଦା ପ୍ରସ୍ତୁତ କରିବାକୁ । ଏଥିପାଇଁ ଆପନ୍ନା ପରିଚ୍ଛାଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ

କରାଯାଇଥିଲା । ସମୟର ସ୍ୱଳ୍ପତା ଓ ସମ୍ମିଳନୀ ସମ୍ପର୍କିତ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ବଶତଃ ଉକ୍ତ ପରଦା ପ୍ରସ୍ତୁତ କରିବାରେ ଆପନ୍ନା ପରିଚ୍ଛା ବିଫଳ ହୋଇଥିଲେ । ଈର୍ଷାଳୁମାନଙ୍କୁ ଏହା ଆଣି ଦେଇଥିଲା ଏକ ଅପୂର୍ବ ସୁଯୋଗ ଆପନ୍ନାଙ୍କ ବିରୁଦ୍ଧରେ ପ୍ରୟୋଗ କରିବା ପାଇଁ । ସେମାନେ ବେଳକାଳ ଉଣ୍ଡି, ଏ ବିଷୟରେ ମହାରାଜାଙ୍କ ଦୃଷ୍ଟି ଆକର୍ଷଣ କରି, ଆପନ୍ନାଙ୍କୁ ଅପଦସ୍ତ କରିବାକୁ ଉଦ୍ୟମ କରି, ନିଜେ ହିଁ ଅପଦସ୍ତ ହୋଇଥିଲେ । ନିଜର ନିଷ୍କଳଙ୍କ ଚରିତ୍ର ଓ ଦୃଢ଼ ମନୋବଳ ତାଙ୍କୁ ସବୁକ୍ଷେତ୍ରରେ ପଥପ୍ରଦର୍ଶକ ହେଉଥିଲା ଓ ସେ ସଫଳତାର ଚରମ ସୋପାନରେ ପହଞ୍ଚି ପାରୁଥିଲେ ।

ଆପନ୍ନା ପରିଚ୍ଛା ଓଡ଼ିଆ ଜାତି ନନ୍ଦିଘୋଷର ଯଦିବା ରଥୀ କିମ୍ବା ସାରଥି ନଥିଲେ ସେ ଯେ ସେଥିରେ ଏକ ଦ୍ରୁତଗାମୀ ଅଶ୍ୱଭାବେ ଯୋଗ୍ଧ ହୋଇଥିଲେ, ତାଙ୍କ କାର୍ଯ୍ୟକଳାପ ଅନୁଶୀଳନ କଲେ ଉପଲବ୍ଧ ହୁଏ ।

## ପଲ୍ଲୀ ସମ୍ମିଳନୀ ଓ ଆପନ୍ନା ପରିଚ୍ଛା

ପାରଳାଖେମୁଣ୍ଡିରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନରେ ପ୍ରାକୃତିକ ଓଡ଼ିଶାର ପଲ୍ଲୀ ଅଞ୍ଚଳରେ ଶିକ୍ଷାପ୍ରସାର ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଥିଲା । ବହୁସଂଖ୍ୟକ ପ୍ରାଥମିକ ଓ ମଧ୍ୟଶ୍ରେଣୀୟ ଶିକ୍ଷା ବିସ୍ତାର ପାଇଁ ବିହିତ ବ୍ୟବସ୍ଥା କରିବାକୁ ସମ୍ମିଳନୀରେ ୧୦ମ ଚିଠା ପ୍ରସ୍ତାବ ଆଗତ କରାଯାଇଥିଲା । ଏହା ପାରଳାଖେମୁଣ୍ଡିର ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଆଗତ କରିଥିବା ବେଳେ ଶ୍ରୀ ବଟକୃଷ୍ଣ ମହାପାତ୍ର, ହନୁମନ୍ତ ରାଓ ପାଠକ ଓ ଆପନ୍ନା ପଣ୍ଡା ସମର୍ଥନ କରିଥିଲେ । ପ୍ରସ୍ତାବଟି ସର୍ବସମ୍ମତି ଲାଭକରି ଗୃହୀତ ହୋଇଥିଲା । ଏ ନିର୍ଦ୍ଧାରଣଟି କାର୍ଯ୍ୟକାରୀ କରିବା ପାଇଁ ବିଭିନ୍ନ ସ୍ଥାନରେ ପଲ୍ଲୀ ସମ୍ମିଳନୀ ଆହ୍ୱାନ କରିବାର ଆବଶ୍ୟକତା ଅନୁଭୂତ ହେଲା । ଏଥିରେ ଆଗୁସାର ହେଲେ ଆପନ୍ନା ପରିଚ୍ଛା । ଆଧୁନିକ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ ଜିଲ୍ଲାରେ ମୁକ୍ତାପୁର ନାମରେ ଏକ ପଲ୍ଲୀ ଗ୍ରାମ ଅଛି । ସେତେବେଳେ ପଲ୍ଲୀ ସମ୍ମିଳନୀ ପାଇଁ ସର୍ବାଗ୍ରେ ଏହି ଗ୍ରାମକୁ ଆପନ୍ନା ମନୋନୀତ କଲେ । ଆପନ୍ନା ପରିଚ୍ଛାଙ୍କ ଦିଗଦର୍ଶନରେ ପଲ୍ଲୀ ସମ୍ମିଳନୀ ସେହି ମୁକ୍ତାପୁର ପଲ୍ଲୀରେ ଆୟୋଜିତ ହେଲା କାରଣ ପାରଳାଖେମୁଣ୍ଡି ସମେତ ଗଞ୍ଜାମ ଦକ୍ଷିଣାଞ୍ଚଳର ଗୁରୁତ୍ୱ ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ପରେ ବୃଦ୍ଧି ପାଇଥିଲା । ତେଣୁ ଏଠାରେ ଓଡ଼ିଆମାନଙ୍କର ବୌଦ୍ଧିକ ବିକାଶ ପାଇଁ ଭାଗବତ ଟୁଙ୍ଗୀ ପରି ଗ୍ରାମ୍ୟ ଅନୁଷ୍ଠାନ ଗଢ଼ିବା ଓ ନୈଶ ବିଦ୍ୟାଳୟ ସ୍ଥାପନ କରିବା ପାଇଁ ପ୍ରଥମେ ପ୍ରୟାସ କରାଗଲା । ଏହାର ସଫଳତା ପଲ୍ଲୀ ସମ୍ମିଳନୀ ଜରିଆରେ ଲୋକ ସାଧାରଣଙ୍କୁ

ସମ୍ପୃକ୍ତ କରାଇବା ଉପରେ ନିର୍ଭରଶୀଳ ଥିଲା । ସୁତରାଂ ଆପନ୍ନା ଏ ଦାୟିତ୍ୱ ନିଜ ଉପରକୁ ନେଇ ମୁକ୍ତାପୁରଠାରେ ପ୍ରଥମ ପଲ୍ଲୀ ସମ୍ମିଳନୀ କରିବା ପାଇଁ ଆଗଭର ହେଲେ । ୧୯୧୬ ଜୁନ୍ ମାସ ଷୋଳ ତାରିଖରେ ଉକ୍ତ ପଲ୍ଲୀରେ ହେଲା ପଲ୍ଲୀ ସମ୍ମିଳନୀ । ଏଥିରେ ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଓ ପଣ୍ଡିତ ଗୋପବନ୍ଧୁ ପ୍ରଭୃତି ସତ୍ୟବାଦୀର ପଞ୍ଚସଖା ଯୋଗଦେଇଥିଲେ । ପଞ୍ଚସଖାଙ୍କ ପ୍ରଣୀତ ଆଦର୍ଶ ଶିକ୍ଷାନୀତି ପ୍ରତି ଆପନ୍ନା ପରିଚ୍ଛାଙ୍କର ଥିଲା ଗଭୀର ଆକର୍ଷଣ । ତେଣୁ ସେ ସେମାନଙ୍କ ପରାମର୍ଶକୁ ଶିରୋଧାର୍ଯ୍ୟ କରି ପଲ୍ଲୀ ସମ୍ମିଳନୀ ଜରିଆରେ ଶୈକ୍ଷିକ ସଂଗଠନ ଗାଁ ଗାଁରେ ଗଠନ କରିବାକୁ ଆଗେଇ ଆସିଥିଲେ ଓ ନିଜ ଅଞ୍ଚଳରୁ ଛାତ୍ରମାନଙ୍କୁ ସତ୍ୟବାଦୀ ବନ ବିଦ୍ୟାଳୟକୁ ପଠାଉଥିଲେ ଶିକ୍ଷାଲାଭ ନିମନ୍ତେ । ସେ ନିଜ ପରିବାରର କେତେକ ପିଲାଙ୍କ ସମେତ ଆସପାଶ ଅଞ୍ଚଳରୁ କେତେକ ଛାତ୍ରଙ୍କୁ ସତ୍ୟବାଦୀ ବନ ବିଦ୍ୟାଳୟକୁ ପ୍ରେରଣ କରିଥିଲେ । ପାରଳା ମହାରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ବିଦ୍ୟାଳୟ ଓ ମହାବିଦ୍ୟାଳୟର ସୁବନ୍ଦୋବସ୍ତ ପାରଳାଖେମୁଣ୍ଡିରେ ଥିବା ସତ୍ତ୍ୱେ ଆପନ୍ନା ପରିଚ୍ଛା ନେତୃତ୍ୱ ନେଇ ପାରଳା ଅଞ୍ଚଳରୁ ଛାତ୍ରମାନଙ୍କୁ ସତ୍ୟବାଦୀ ବନବିଦ୍ୟାଳୟକୁ ପ୍ରେରଣ କରିଥିବା ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ କି ? ତତ୍କାଳୀନ ଗଞ୍ଜାମର ଯେଉଁ ଆଙ୍ଗୁଠି ଗଣିତା ବ୍ୟକ୍ତି ସତ୍ୟବାଦୀ ବନ ବିଦ୍ୟାଳୟକୁ ପ୍ରୋତ୍ସାହନ ଦେଉଥିଲେ ସେମାନଙ୍କ ମଧ୍ୟରେ ଶ୍ରୀବତ୍ସ ପଣ୍ଡା, ନରସିଂହ ଦାସ ଓ ଆପନ୍ନା ପରିଚ୍ଛା ଥିଲେ ଅଗ୍ରଗଣ୍ୟ ।

ମୁକ୍ତାପୁରଠାରେ ପଲ୍ଲୀ ସମ୍ମିଳନୀ ହେବାର ପୂର୍ବଦିନ ପାରଳା ଅଞ୍ଚଳରେ ପ୍ରବଳ ବୃଷ୍ଟିପାତ ହୋଇଥିଲା । ତଥାପି ମୁକ୍ତାପୁର ସମ୍ମିଳନୀକୁ ସଫଳ କରିବା ପାଇଁ ପାରଳାଖେମୁଣ୍ଡି ଅଞ୍ଚଳରୁ ବହୁ ସଂଖ୍ୟକ ପ୍ରତିନିଧି ସେଥିରେ ଯୋଗ ଦେଇଥିଲେ । ପାରଳା ମହାରାଜା ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନକୁ ସଫଳ କରିବା ପାଇଁ ଯେପରି ତନ-ମନ-ଧନ ବାଜି ଲଗାଇଥିଲେ ତଦ୍ରୂପ ଆପନ୍ନା ପରିଚ୍ଛା ନିଜର ତନ-ମନ-ଧନ ବିନିମୟରେ ମୁକ୍ତାପୁର ସମ୍ମିଳନୀକୁ ସଫଳ କରିଥିବାର ଯଥେଷ୍ଟ ପ୍ରମାଣ ଅଛି । ଏଥିରୁ ଜାଣି ହେଉଛି ଆପନ୍ନା ପରିଚ୍ଛାଙ୍କ ହୃଦୟରେ ଜାତି ପ୍ରୀତି କେତେ ପ୍ରବଳ ଥିଲା ଓ ଓଡ଼ିଆ ଜାତିର ବୌଦ୍ଧିକ ବିକାଶ ପାଇଁ ସେ କେତେ ତତ୍ପର ଥିଲେ ।

ପଦ୍ମନାଭ ରଙ୍ଗାଳୟର କଳାକାରଙ୍କ ଗହଣରେ ଆପନ୍ନା ପରିଚ୍ଛା ( ୨ୟ ଧାଡ଼ି (ଠିଆ) ଡାହାଣରୁ ୩ୟ)

## ପଦ୍ମନାଭ ରଙ୍ଗାଳୟର ଇତିବୃତ୍ତ

ଆପନ୍ନା ପରିଚ୍ଛା ଏକ ଗୃହସ୍ଥ ବୈଷ୍ଣବ ପରମ୍ପରାର ଦାୟାଦ । ତେଣୁ ବୈଷ୍ଣବ ଭକ୍ତି ପରମ୍ପରା ସହ ତାଙ୍କର ଘନିଷ୍ଠ ପରିଚୟ ରହିବା ସ୍ୱାଭାବିକ । କିନ୍ତୁ ସେ ଗତାନୁଗତିକ ଭକ୍ତିକାବ୍ୟ ରଚନା ଅପେକ୍ଷା ଭାକ୍ତିକ ନୃତ୍ୟ, ନାଟକ ଓ ରାସଲୀଳା ପ୍ରତି ଅଧିକ ମନୋନିବେଶ କରିଥିବା ତାଙ୍କ ସାରସ୍ୱତ ସୃଷ୍ଟି ଗୁଡ଼ିକ ଅନୁଧ୍ୟାନ କଲେ ଜଣାପଡେ । ଲୀଳା ପରିବେଷଣ ପାଇଁ ନିଜ ଜ୍ୟେଷ୍ଠଭ୍ରାତା ନୀଳମଣି ଓ ସମଧର୍ମୀ କିଛି ସ୍ଥାନୀୟ ଯୁବକଙ୍କୁ ନେଇ ସେ ଗଠନ କଲେ ବୈଷ୍ଣବାନନ୍ଦଦାୟିନୀ ସଭା । ସମସ୍ତଙ୍କ ସହଯୋଗ ଓ ପରିଚ୍ଛା ପରିବାରର ନେତୃତ୍ୱରେ ପାରଳାଖେମୁଣ୍ଡି ରାଜଗୁରୁ ସାହିର ଦକ୍ଷିଣ-ପଶ୍ଚିମ ମୁଣ୍ଡରେ (ବର୍ତ୍ତମାନର ସ୍ଥିତି ଅନୁସାରେ ଦକ୍ଷିଣ ଦିଗରେ) ତାଳ ଗଛର ଖୁଣ୍ଟ ପୋତି ଏକ ଅସ୍ଥାୟୀ ରଙ୍ଗମଞ୍ଚ ନିର୍ମାଣ କରିଥିଲେ । ଲୀଳା ଅଭିନୟ ଉପଯୋଗୀ କରିବା ପାଇଁ ଯେପରି ଆକାର, ପ୍ରକାରର ଏକ ଖୋଲାମଞ୍ଚ ଆବଶ୍ୟକ ଥିଲା ସେପରି ମଞ୍ଚଟିଏ ସେମାନେ ନିର୍ମାଣ କରିଥିଲେ । କେତେକ ଆଲୋଚକଙ୍କ ମତରେ ଏହି ଅସ୍ଥାୟୀ ମଞ୍ଚଟି ପରିଚ୍ଛା ମଠ ପରିସରରେ ନିର୍ମିତ ହୋଇଥିଲା ଏବଂ ପରବର୍ତ୍ତୀ ସମୟରେ ଏହାକୁ ରାଜଗୁରୁ ସାହିର ତାତ୍କାଳିକ ଅବସ୍ଥିତି ଅନୁଯାୟୀ ଉକ୍ତ ସାହିର ପଶ୍ଚିମ ମୁଣ୍ଡକୁ ସ୍ଥାନାନ୍ତର କରାଯାଇଥିଲା । ଏସବୁ କେବଳ ଆନୁମାନିକତା ଓ ତଦୁପରି ପର୍ଯ୍ୟବସିତ ମନ୍ତବ୍ୟ ଛଡା ଆଉ କିଛି ନୁହେଁ ।

୪ ଶିବରାମ ପାତ୍ର ନାମକ ଗଞ୍ଜାମର ଗୁଣୁପଡ଼ା ନିବାସୀ ଜଣେ ଅଧ୍ୟାପକ ପାରଳାଖେମୁଣ୍ଡିକୁ ବହୁତ ଭଲ ପାଉଥିଲେ । ଏହି ଦକ୍ଷିଣାଞ୍ଚଳର ଜନଜୀବନ ତଥା ଶୈକ୍ଷିକ ଅନୁଷ୍ଠାନଗୁଡ଼ିକ ସହ ତାଙ୍କର ଘନିଷ୍ଠ ସମ୍ବନ୍ଧ ଥିଲା । ସେ ଡଃ ସତ୍ୟନାରାୟଣ ରାଜଗୁରୁଙ୍କଠାରୁ ପଦ୍ମନାଭ ରଙ୍ଗାଳୟ ସମ୍ପର୍କରେ ସଂଗ୍ରହ କରିଥିବା ତଥ୍ୟ ଏକ ପ୍ରବନ୍ଧ ମାଧ୍ୟମରେ "ଗଜପତି ଉତ୍ସବ - ୨୦୦୩" ସ୍ମରଣିକାରେ ପ୍ରକାଶ କରିଛନ୍ତି । ସେଥିରେ ସେ ସ୍ପଷ୍ଟଭାବେ ଲେଖିଛନ୍ତି ଯେ ଆରମ୍ଭରୁ ବୈଷ୍ଣବାନନ୍ଦଦାୟିନୀ (ସମାଜ) ସଭାର ରଙ୍ଗମଞ୍ଚଟି ରାଜଗୁରୁ ସାହିର ପଶ୍ଚିମ ମୁଣ୍ଡରେ ନିର୍ମିତ ହୋଇଥିଲା । ଏହି ମଞ୍ଚଟିକୁ ହିଁ ସ୍ଥାୟୀ ରୂପ ଦିଆଯାଇଥିଲା ରାଜା ଗୌରଚନ୍ଦ୍ର ଗଜପତିଙ୍କ ସମୟରେ । ପଦ୍ମନାଭ ଦେବଙ୍କ ପ୍ରଚେଷ୍ଟା ହେତୁ ଏହା ସମ୍ଭବ ହୋଇଥିଲା । ପଦ୍ମନାଭ ରଙ୍ଗାଳୟ, ରାଜପୃଷ୍ଠପୋଷକତା ପାଇବା ପରେ ପାରଳା ଜଙ୍ଗମ ସାହିର ପୂର୍ବ ମୁଣ୍ଡରେ ଥିବା ଛତ୍ରଘରଠାରେ ନିର୍ମାଣ କରାଯାଇଥିବା କେହି କେହି ମତ ଦିଅନ୍ତି । ଆଉ କେତେକଙ୍କ ମତରେ ଏହା ରାଜବାଟୀ ମଧ୍ୟରେ ଥିଲା । ଏସବୁ ଭ୍ରାନ୍ତ ଧାରଣାର ପରିଚାୟକ । ରାଜବାଟୀରେ ନାଟକ ଅଭିନୟ ବେଳେ ବେଳେ ହେଉଥିଲା । କିନ୍ତୁ ପଦ୍ମନାଭ ରଙ୍ଗାଳୟ ସେଠାରେ ନଥିଲା । ରାଜରମଣୀମାନେ ରାଜନଅର ବାହାରକୁ ଆସି ନାଟକ ଦେଖିବା ଜନିତ ଅସୁବିଧା ଉପଲବ୍ଧି କରି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନଅର ମଧ୍ୟରେ ନାଟକ ଅଭିନୟ ବ୍ୟବସ୍ଥା ବେଳେ ବେଳେ କରୁଥିଲେ । ଛତ୍ରଘରଠାରେ ରଙ୍ଗାଳୟର ଚିହ୍ନ ବର୍ଣ୍ଣ ସୁଦ୍ଧା ନାହିଁ । ରଙ୍ଗାଳୟର ଅବସ୍ଥିତି ସମ୍ପର୍କରେ "ପାରଳା ସହର ବର୍ଣ୍ଣନା" (୧୯୩୭ରେ ପ୍ରକାଶିତ) ନାମକ ଏକ କ୍ଷୁଦ୍ର ଗୀତି ପୁସ୍ତିକାର ଟିପ୍ପଣୀ ଏଠାରେ ଉଲ୍ଲେଖଯୋଗ୍ୟ । ଏ ପୁସ୍ତିକାର ଲେଖକ ପାରଳାଖେମୁଣ୍ଡି ବକ୍ସି ସାହିର ମୀନକେତନ ପାଢ଼ୀ ନାମକ ଜଣେ ଶିକ୍ଷକ । ଉକ୍ତ ଟିପ୍ପଣୀଟି ଏହିପରି —

"ଶୁଣ ଭାଇ ଆରେ ପନ୍ଦରା ସାହିରେ
ସାଗ ବିକି ଧାନେ ପୂରାନ୍ତି ମୁଣା (୧୫)
ତହିଁ ନିକଟର ରଙ୍ଗାଳୟ ଘର
ସଦା ଲାଗିଥାଏ ସଙ୍ଗୀତ ଡ୍ରାମା
ଆଉ ପାଶେ ଜାଣ ସୁରମ୍ୟ ଉଦ୍ୟାନ
ଝାମି, ଟଭା, ନଡ଼ିଆ, ପୁଟାଲିମା (୧୬)"

('ପୁଟାଲିମା' ଏକ ତେଲୁଗୁ ଶବ୍ଦ - ଓଡ଼ିଆରେ ଏହାକୁ ବଢ଼େଇ କୁହାଯାଏ)

ରାଜଗୁରୁ ସାହି ବାରିପଟେ ପନ୍ଦରା ସାହି ଥିବାରୁ ପଦ୍ମନାଭ ରଙ୍ଗାଳୟର ଅବସ୍ଥିତି ରାଜଗୁରୁ ସାହିର ଦକ୍ଷିଣ ପଶ୍ଚିମ ମୁଣ୍ଡରେ ଥିବା ନେଇ କୌଣସି ସନ୍ଦେହର ଅବକାଶ ନାହିଁ । 'ପଦ୍ମନାଭ ରଙ୍ଗାଳୟ' ନାମକରଣ ପୂର୍ବରୁ ସମ୍ପୃକ୍ତ ମଞ୍ଚରେ ବୈଷ୍ଣବାନନ୍ଦଦାୟିନୀ ସଭା ନାଟକ ଅଭିନୟ କରୁଥିଲା । ଏହି ଅନୁଷ୍ଠାନ ୧୮୯୫ରେ ସ୍ଥାପିତ ହୋଇଥିବା ସ୍ୱର୍ଗତ ଶିବରାମ ପାତ୍ର ତାଙ୍କର ଉକ୍ତ ପ୍ରବନ୍ଧରେ ଦର୍ଶାଇଛନ୍ତି । ପାରଳାଖେମୁଣ୍ଡିର ଜଣୈକ ଯୁବଲେଖକ ନରସିଂହ ପଟ୍ଟନାୟକ 'ଓଡ଼ିଶାର ପ୍ରଥମ ସ୍ଥାୟୀ ରଙ୍ଗମଞ୍ଚ' ଶିରୋନାମାରେ ତା.୧୫.୧୧.୨୦୦୨ରିଖ ଅନୁପମ ଭାରତରେ ପ୍ରକାଶ କରିଥିବା ଏକ ପ୍ରବନ୍ଧରେ ଦର୍ଶାଇଛନ୍ତି ଯେ ପାରଳାଖେମୁଣ୍ଡିର ରସିକରାଜ ପ୍ରସାଦୈକ ମନୋରଞ୍ଜନ ନାଟକ ଦଳ ନାମରେ ଏକ ନାଟ୍ୟସଂସ୍ଥା ୧୮୯୭ରେ ସ୍ଥାପିତ ହୋଇଥିଲା । ଏହାର ସତ୍ୟତା ଜାଣିବାପାଇଁ ଆପନ୍ନା ପରିଚ୍ଛାଙ୍କ ଦିନଲିପି ପ୍ରଣିଧାନଯୋଗ୍ୟ । ୧୯୦୮ ନଭେମ୍ବର ୭ ତାରିଖରେ ନିଜ ଦିନଲିପିରେ ଆପନ୍ନା ପରିଚ୍ଛା, ବୈଷ୍ଣବାନନ୍ଦ ଦାୟିନୀ ସଭାର ୧୦ମ ବାର୍ଷିକ ଉତ୍ସବ ସେହିଦିନ ଅନୁଷ୍ଠିତ ହୋଇଥିବା ଉଲ୍ଲେଖ କରିଛନ୍ତି । ଆପନ୍ନା ପରିଚ୍ଛା ନିଜେ ଉକ୍ତ ନାଟକ ଦଳର ପ୍ରତିଷ୍ଠାତା ହୋଇଥିବାରୁ ତାଙ୍କ ଉକ୍ତିର ସଠିକତାକୁ ସନ୍ଦେହ କରାଯାଇପାରିବ ନାହିଁ । ୧୯୦୮ରେ ଉକ୍ତ ନାଟକ ଦଳର ୧୦ମ ବାର୍ଷିକ ଉତ୍ସବ ଅନୁଷ୍ଠିତ ହୋଇଥିବାରୁ ତାହା ଗାଣିତିକ ହିସାବରେ ୧୮୯୮ରେ ପ୍ରତିଷ୍ଠିତ ହୋଇଥିବା କଥା ।  କିନ୍ତୁ ପ୍ରତିବର୍ଷ ବାର୍ଷିକ ଉତ୍ସବ ନିଶ୍ଚୟ ହୋଇଥିବ ଏପରି କୁହାଯାଇପାରିବ ନାହିଁ ।  ତେଣୁ ଯୁବଲେଖକ ନରସିଂହ ପଟ୍ଟନାୟକ ନିରୂପଣ କରିଥିବା ୧୮୯୭ ସମ୍ବତ୍ସରରେ ଉକ୍ତ ନାଟକ ଦଳର ପ୍ରତିଷ୍ଠା ହୋଇଥିବା ବିଶ୍ୱାସ୍ୟ ।  ତେବେ ଉପର୍ଯ୍ୟୁକ୍ତ ନାଟକ ଦଳର ନାମ ବୈଷ୍ଣବାନନ୍ଦଦାୟିନୀ ସମାଜ ବା ରସିକରାଜ ପ୍ରସାଦୈକ ନାଟକ ସଂଘ ନହୋଇ ଆପନ୍ନା ପରିଚ୍ଛାଙ୍କ ଉକ୍ତି ପ୍ରକାରେ ଏହାର ନାମ ବୈଷ୍ଣବାନନ୍ଦଦାୟିନୀ ସଭା ବୋଲି ଆମେ ନିର୍ଣ୍ଣୟ କରୁଛୁ ।

'ପଦ୍ମନାଭ ରଙ୍ଗାଳୟ'ର ନାମକରଣ ପୂର୍ବରୁ ବୈଷ୍ଣବାନନ୍ଦଦାୟିନୀ ସଭା କାବ୍ୟରସାଶ୍ରିତ ଲୀଳା ଅଭିନୟ କରୁଥିଲା ।  ଏହି ସମୟର ପ୍ରଖ୍ୟାତ 'ବପଟଲାଲ' କମ୍ପାନୀ ପାରଳାଖେମୁଣ୍ଡି ଆସି ସେହି ରଙ୍ଗମଞ୍ଚରେ ଅନେକ ନାଟକ ପରିବେଷଣ କରିଥିଲେ ।

ବୈଷ୍ଣବାନନ୍ଦଦାୟିନୀ ସଭା ଦ୍ୱାରା ପରିବେଷିତ ସମସ୍ତ ନାଟକର ସଂଯୋଜନା, ନିର୍ଦ୍ଦେଶନା ଓ ପରିଚାଳନା ନିଜେ ଆପନ୍ନା ପରିଚ୍ଛା କରୁଥିଲେ । ପରିଚ୍ଛା ମଠର ପରମ୍ପରା

ମଧ୍ୟ ସେତେବେଳେ ଆପନ୍ନା ପରିଚ୍ଛାଙ୍କ ଉପରେ ୧୮୯୮ରୁ ନ୍ୟସ୍ତ ଥିଲା । ସୁତରାଂ ନାଟକ ଦଳର ପରିଚାଳନା ସହ ପରିଚ୍ଛା ମଠର ପରିଚାଳନା ମଧ୍ୟ ସେତେବେଳେ ଆପନ୍ନା ପରିଚ୍ଛାଙ୍କ ଉପରେ ୧୮୯୮ରୁ ନ୍ୟସ୍ତ ଥିଲା । ଜ୍ୟେଷ୍ଠ ଭ୍ରାତା ନୀଳମଣି ସେତେବେଳେ ଆପନ୍ନା ପରିଚ୍ଛାଙ୍କୁ ନାଟକେ ପରିଚାଳନା କାର୍ଯ୍ୟରେ ସହଯୋଗ କରୁଥିଲେ ।

ବୈଷ୍ଣବାନନ୍ଦଦାୟିନୀ ସଭାର ଲୀଳା ପରିବେଷଣ ବୁଦ୍ଧିଜୀବିମାନଙ୍କ ଦୃଷ୍ଟି ଆକର୍ଷଣ କଲା । ତେଣୁ ପାରଳାଖେମୁଣ୍ଡି ସହରର ବିଶିଷ୍ଟ ବ୍ୟକ୍ତିମାନେ ଏଥିରେ ଯୋଗଦେଲେ । ଶ୍ୟାମସୁନ୍ଦର ରାଜଗୁରୁ, ଆପନ୍ନା ପଣ୍ଡା, ରାଜଭ୍ରାତା ପଦ୍ମନାଭ ଗଜପତି ଓ ରାଜା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଓ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ଶୁଭଦୃଷ୍ଟି ଆପନ୍ନାଙ୍କ ନାଟକଦଳ ପ୍ରତି ଆକର୍ଷିତ ହେଲା । ସେମାନଙ୍କ ମଧ୍ୟରୁ ଶ୍ୟାମସୁନ୍ଦର ରାଜଗୁରୁ, ଗଙ୍ଗାଧର ଖାଡଙ୍ଗା ଓ ଆପନ୍ନା ପଣ୍ଡା ଉକ୍ତ ନାଟକ ଦଳ ସହ ସ୍ୱଇଚ୍ଛାରେ ସାମିଲ ହୋଇଗଲେ । ପଦ୍ମନାଭ ଗଜପତି ଓ ରାଜା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଉଭୟ ନାଟ୍ୟପ୍ରେମୀ । ତେଣୁ ସେମାନଙ୍କର ସାହାଯ୍ୟ ସହାନୁଭୂତି ଉକ୍ତ ନାଟକ ଦଳ ପାଇବାକୁ ଆଉ ବିଳମ୍ବ ହେଲା ନାହିଁ । ଏହି ଅବସରରେ 'ବପଟଲାଲ କମ୍ପାନୀ'ର ଦୁଇଜଣ ଅଭିଜ୍ଞ କଳାକାର କୃଷ୍ଣମୂର୍ତ୍ତି ଓ ରାମମୂର୍ତ୍ତିଙ୍କୁ ପଦ୍ମନାଭ ଦେବ ଡକାଇ ଆଣିଥିଲେ । ସେମାନଙ୍କ ସହଯୋଗରେ ଆପନ୍ନାଙ୍କ ଦଳ ପରିବେଷଣ କରିଆସୁଥିବା ଲୀଳା ଅଭିନୟକୁ ନାଟକାଭିନୟରେ ରୂପାନ୍ତରୀତ କରାଗଲା । ଏଥିପାଇଁ ନିକଟସ୍ଥ ଦେବୀ ମଠରେ ଅଭ୍ୟାସ କରାଯାଇ ପରେ ମଂଚାଭିନୟ କରାଯାଉଥିଲା । ଅସ୍ଥାୟୀ ରଙ୍ଗମଞ୍ଚଟି ଭାଙ୍ଗିରୁଜି ଯିବାରୁ ଗୌରଚନ୍ଦ୍ର ଗଜପତି ତା'ର ନବୀକରଣ କରାଇଥିଲେ । ମଞ୍ଚ ନବୀକରଣ ସହ ନବ ନବ ନାଟ୍ୟ ପ୍ରତିଭା ନାଟକ ଦଳରେ ଯୋଗଦେଲେ । ସେତେ ଦିନ ଯାଏ ରଙ୍ଗମଞ୍ଚର କୌଣସି ନାମକରଣ ହୋଇଥିବାର ପ୍ରମାଣ ମିଳୁନାହିଁ । ନବ ନିର୍ମିତ ନାଟ୍ୟଶାଳାର ନାମକରଣ ଏହି ସମୟରେ 'ପଦ୍ମନାଭ ରଙ୍ଗାଳୟ' କରାଯାଇଥିବା ଜଣାଯାଉଛି । କିନ୍ତୁ ନାଟକ ଦଳର ନାମ ପରିଚ୍ଛା ପରିବାରର ଇଷ୍ଟଦେବତା ରସିକରାଜଙ୍କ ନାମାନୁସାରେ ରସିକରାଜ ପ୍ରସାଦୈକ ସୁଜନ ମନୋରଞ୍ଜନ ନାଟ୍ୟ ସଂଘ ରଖାଗଲା । ଏଣିକି ନବୀକୃତ ରଙ୍ଗମଞ୍ଚରେ ଲୀଳା ପରିବର୍ତ୍ତେ ଆପନ୍ନା ପରିଚ୍ଛାଙ୍କ ସଂଯୋଜନା ଓ ନିର୍ଦ୍ଦେଶନାରେ ନାଟକମାନ ଅଭିନୀତ ହେଲା । ପରିବର୍ତ୍ତିତ ସ୍ଥିତିକୁ ଦୃଷ୍ଟିରେ ରଖି ଉକ୍ତ ରଙ୍ଗାଳୟ ପରିଚାଳନା ପାଇଁ ଏକ ପରିଚାଳନା ସମିତି ଗଠନ କରାଗଲା । ଶ୍ୟାମସୁନ୍ଦର ରାଜଗୁରୁ ହେଲେ ତା'ର ପ୍ରଥମ ସଭାପତି । ସ୍ଥାୟୀ ମଞ୍ଚ ନିର୍ମିତ ହେବାପରେ ସେଥିରେ ରାଜା ଗୌରଚନ୍ଦ୍ର ଗଜପତି, ରାଜଭ୍ରାତା ପଦ୍ମନାଭ

ଦେବ, ଆପନ୍ନା ପରିଛା, ପଣ୍ଡିତ ଗୋପୀନାଥ ନନ୍ଦ ପ୍ରଭୃତିଙ୍କ ନାଟକ ସମେତ ଅନେକ ପ୍ରାଚୀନ ସଂସ୍କୃତ ନାଟକ ମଧ୍ୟ ଅଭିନୀତ ହେଉଥିଲା । ପଦ୍ମନାଭ ଦେବ ୧୯୦୪ରେ ପରଲୋକ ଗମନ କଲେ । ବର୍ଷକ ପରେ ୧୯୦୫ରେ ଗୌରଚନ୍ଦ୍ର ଗଜପତିଙ୍କ ପରଲୋକ ପ୍ରାପ୍ତି ଘଟିଲା । ଏ ଦୁଇ ମନୀଷୀଙ୍କ ପରଲୋକଗତି ରଙ୍ଗାଳୟର ସ୍ଥିତିକୁ ଦୋହଲାଇ ଦେଲା । କାରଣ ସେତେବେଳକୁ କୃଷ୍ଣଚନ୍ଦ୍ର ଗଜପତି ନାବାଳକ । ତେଣୁ ପାରଳାଖେମୁଣ୍ଡି ଜମିଦାରି ତତ୍ତ୍ୱବଧାରକ ପରିଷଦ ଅଧୀନକୁ ଚାଲିଗଲା । ରଙ୍ଗାଳୟ ପାଇଁ ରାଜପ୍ରୋତ୍ସାହନ ହେଲା ସୁଦୂରପରାହତ । ତେବେ ଆଶ୍ୱାସନା ଏତିକି ଯେ ପାରଳାଖେମୁଣ୍ଡିର ଉତ୍କଳ ହିତୈଷିଣୀ ସମାଜର କର୍ମକର୍ତ୍ତାମାନେ ସେହି ସମୟକୁ ପଦ୍ମନାଭ ରଙ୍ଗାଳୟ ସହ କିଏ କେଉଁମତେ ଯୋଡି ହୋଇଯାଇଥିଲେ । ତେଣୁ ରଙ୍ଗାଳୟ "ଢ଼ୋକେ ପିଇ ଦଣ୍ଡେ ଜୀଇଁ" ନ୍ୟାୟରେ କୌଣସି ମତେ ତିଷ୍ଠି ରହିଥିଲା । ଆର୍ଥିକ ଅନଟନ ସତ୍ତ୍ୱେ ନାଟକ ପରିବେଷଣରେ ବିଘଟନ ହୋଇନଥିଲା । ଆପନ୍ନା ପରିଛାଙ୍କ ତ୍ରୁଟିଶୂନ୍ୟ ସଂଯୋଜନା ଓ ନିର୍ଦ୍ଦେଶନାରେ ନାଟକମାନ ପୂର୍ବବତ୍ ମଞ୍ଚସ୍ଥ ହେଉଥିଲା । ମଞ୍ଚର ରକ୍ଷଣାବେକ୍ଷଣ ଜନିତ ଅଭାବ ନାଟକର କୌଣସି ବିଭାବକୁ ନଷ୍ଟ କରିଥିବାର ଦୃଷ୍ଟାନ୍ତ ଦୃଷ୍ଟିଗୋଚର ହୋଇନାହିଁ ।

୧୯୦୯ରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଅକାଳ ବିୟୋଗ ପଦ୍ମନାଭ ରଙ୍ଗାଳୟ ପ୍ରତି ଏକ ଶକ୍ତ ଆଘାତ ଦେଲା । ତଥାପି ଆପନ୍ନା ପରିଛାଙ୍କ ପ୍ରଚେଷ୍ଟାରେ ନିୟମିତ ନାଟକ ପରିବେଷଣ ଦ୍ୱାରା ଟିକଟ ବିକ୍ରିଲବ୍ଧ ପାଣ୍ଠିରେ ରଙ୍ଗାଳୟ ତା'ର ସ୍ଥିତିରକ୍ଷା କରିବାକୁ ସଂଗ୍ରାମ ଅବ୍ୟାହତ ରଖିଥିଲା । ଶ୍ୟାମସୁନ୍ଦର ରାଜଗୁରୁଙ୍କ ଅବର୍ତ୍ତମାନରେ ବଳଭଦ୍ର ଦାସଙ୍କ ଉପରେ ଅସ୍ଥାୟୀ ଭାବେ ରଙ୍ଗାଳୟର ପରିଚାଳକ ଭାର ନ୍ୟସ୍ତ ହେଲା । ଅତ୍ୟଳ୍ପ ସମୟ ବ୍ୟବଧାନରେ ରଙ୍ଗାଳୟର ପରିଚାଳକ ଭାବେ ଆପନ୍ନା ପରିଛା ମନୋନୀତ ହେଲେ । ସେ ଥିଲେ ଜଣେ ଧନାଢ଼୍ୟ ବ୍ୟକ୍ତି । ତେଣୁ ପଦ୍ମନାଭ ରଙ୍ଗାଳୟ ଅଧିକ ରୁଗ୍ଣ ହେବା ପୂର୍ବରୁ ସେ ବ୍ୟକ୍ତିଗତ ଭାବେ ବହୁ ଅର୍ଥିକ ବ୍ୟୟ ବହନ କରି ରଙ୍ଗାଳୟର ଆସବାସପତ୍ରର ନବୀକରଣ, ପ୍ରେକ୍ଷାଳୟ ମରାମତି ଓ ଅନ୍ୟାନ୍ୟ ଜରୁରୀ ଆବଶ୍ୟକତା ପୂରଣ କରିଦେଲେ । ପ୍ରକୃତରେ କେତେ ଅର୍ଥ ଏଥିପାଇଁ ସେ ବ୍ୟୟ କରିଥିଲେ କୌଣସିଠାରେ ତା'ର ଉଲ୍ଲେଖ ନାହିଁ । କିନ୍ତୁ ଏ ବାବଦରେ ତାଙ୍କର ରଙ୍ଗାଳୟଠାରୁ ପ୍ରାପ୍ୟ ଅନାଦାୟ ବରାବର ରହିଥିବାର ଉଲ୍ଲେଖ ଦୃଷ୍ଟିଗୋଚର ହୁଏ । ତେବେ ଯାହାହେଉ, ଆପନ୍ନା ପରିଛାଙ୍କ ବ୍ୟକ୍ତିଗତ ଉଦ୍ୟମରେ ପଦ୍ମନାଭ ରଙ୍ଗାଳୟ ତା'ର ପୂର୍ବଶ୍ରୀ

ଫେରି ପାଇଥିଲା । ପ୍ରତି ନାଟକର ପ୍ରଦର୍ଶନ ପାଇଁ ଟିକଟ ବିକ୍ରୟ କରାଯାଉଥିଲା । ଏଠାରେ ଦିଆଯାଇଥିବା ଟିକଟର ଫଟୋଗୁଡ଼ିକ ତା'ର ନମୁନା ।

| | |
|---|---|
| RASIKARAJ NATAK Co.<br>No<br>Floor 0-4-0<br>Manager. | RASIKARAJ NATAK Co.<br>No<br>Floor 0-4-0<br>Manager. |
| RASIKARAJ NATAK Co.<br>No<br>Bench 0-8-0<br>Manager. | RASIKARAJ NATAK Co.<br>No<br>Bench 0-8-0<br>Manager. |

ଦିନକୁ ଦିନ ରଙ୍ଗାଳୟରେ ଅଧିକରୁ ଅଧିକ ନାଟକ ଅଭିନୀତ ହେଲା । ନାଟକରେ ଅଂଶଗ୍ରହଣ କରୁଥିବା କଳାକାରଙ୍କ ମଧ୍ୟରୁ ଅଧିକାଂଶ ଛାତ୍ର ହୋଇଥିବାରୁ ଏହା ସେମାନଙ୍କ ପାଠ ପଢ଼ାରେ ବ୍ୟାଘାତ ସୃଷ୍ଟି କରୁଥିବାର ଅଭିଯୋଗ ଆପନ୍ନାଙ୍କ ଦୃଷ୍ଟିକୁ ଆସିଲା । ସେ ଏଥିରେ ବିଶେଷ ବ୍ୟଥିତ ହୋଇଥିବା ତାଙ୍କ ଦିନଲିପିରେ ଲିପିବଦ୍ଧ କରିଛନ୍ତି । ଏଥିରେ ସେ ସମ୍ପୂର୍ଣ୍ଣ ଭାଙ୍ଗି ପଡିଥିଲେ ଏପରିକି ରଙ୍ଗାଳୟ ପରିଚାଳନାରୁ ନିବୃତ୍ତ ହେବାକୁ ଅଭିଳାଷ କରିଥିବା ତାଙ୍କ ତା.୧୦.୬.୧୯୧୩ରିଖର ଦିନଲିପିରୁ ସୂଚନା ମିଳେ ।

ଇତ୍ୟବସରରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ମାନ୍ଦ୍ରାସଠାରେ କଲେଜ ଶିକ୍ଷା ଶେଷ ହେଲା । ସେ ଫେରିଆସିଲେ ପାରଳାଖେମୁଣ୍ଡିକୁ । ସେତେବେଳକୁ ପଦ୍ମନାଭ ରଙ୍ଗାଳୟର ସୁନାମ ଥିଲା ଅସୁମାରୀ । ତା'ସହ ଆପନ୍ନା ପରିଚ୍ଛାଙ୍କ ଖ୍ୟାତି ମଧ୍ୟ ବୃଦ୍ଧି ପାଇଥିଲା । କୃଷ୍ଣଚନ୍ଦ୍ର ଗଜପତିଙ୍କ ରାଜ୍ୟାଭିଷେକର ଅବ୍ୟବହିତ କାଳରେ, ଆପନ୍ନାଙ୍କ କିଛି ବିରୋଧୀ ଯେଉଁମାନଙ୍କ ରାଜଦରବାର ସହ ସମ୍ପର୍କ ରହିଥିଲା, ପାରଳାର ଅବସମ୍ଭାବୀ ଗଜପତିଙ୍କୁ ସାକ୍ଷାତ କରିବା ଅବସରରେ ସେମାନେ ଆପନ୍ନାଙ୍କୁ ରାଜତନ୍ତ୍ର ବିରୋଧୀ ବୋଲି ଚିତ୍ରଣ କରିବାକୁ ପଛାଇ ନଥିଲେ । ଆପନ୍ନା ପରିଚ୍ଛା ଲକ୍ଷ୍ମଣ କୁମାର ନାଟକରେ ଦରବାରୀ ଶାସନ ବିରୁଦ୍ଧରେ ସ୍ୱର

ଉତ୍ତୋଳନ କରିଥିବା ବିଷୟ ପ୍ରତି ଭାବୀ ମହାରାଜାଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ସେମାନେ । ଏହାର ଏକମାତ୍ର ଉଦ୍ଦେଶ୍ୟ ଥିଲା କାଳେ ପଦ୍ମନାଭ ରଙ୍ଗାଳୟ ତଥା ନାଟକ ପରିବେଷଣର କୃତିତ୍ୱ ଆପନ୍ନାଙ୍କୁ ମିଳିଯିବ । ସେତେବେଳେ କୃଷ୍ଣଚନ୍ଦ୍ର ଗଜପତିଙ୍କ ବୟସ ୨୧ ବର୍ଷ । ଏପରି କଞ୍ଚା ବୟସରେ ଯୁବକ ସୁଲଭ ଉନ୍ମାଦନା ଓ ରାଜୋଚିତ ଅହଂକାର ତାଙ୍କଠାରୁ ଆଶା କରିବା କଥା । କିନ୍ତୁ ଘରଭଙ୍ଗାମାନଙ୍କ ଅପଚେଷ୍ଟା ସତ୍ତ୍ୱେ ତାଙ୍କଠାରେ ଲେଶମାତ୍ର ପ୍ରତିକ୍ରିୟା ପରିଦୃଷ୍ଟ ହେଲା ନାହିଁ । ବରଂ ସେ ପଦ୍ମନାଭ ରଙ୍ଗାଳୟ ପ୍ରତି ବିଶେଷ ଆଗ୍ରହ ପ୍ରଦର୍ଶନ କରିବା ସହ ଆପନ୍ନା ପରିଚ୍ଛାଙ୍କ ପ୍ରତି ମଧ ଆଦୌ ବିମୁଖ ନଥିଲେ । ସେ ନିଜେ ଥିଲେ ଜଣେ କଳାକାର । ଆପନ୍ନା ପରିଚ୍ଛା ଜଣେ କଳାକାର ଏବଂ ନାଟ୍ୟକାର ଉଭୟ । ତେଣୁ ଦେଶରେ ବା ସମାଜର କୋଣ ଅନୁକୋଣରେ କ'ଣ ଘଟୁଛି ତାହା ନାଟକ ମାଧମରେ ଦର୍ଶାଇ ସମାଜକୁ ସଜାଡିବା ତାଙ୍କର କର୍ତ୍ତବ୍ୟ । ଏଥିରେ କୌଣସି ଦରବାରୀ ଶାସନର ଅସାରତା ପ୍ରଦର୍ଶନ କରିବା ଅର୍ଥ ଦରବାରୀ ଶାସନର ବିରୋଧ କରିବା ନୁହେଁ । ବୋଧହୁଏ ମହାନୁଭବ ଭାବୀ ମହାରାଜା ଏହିକାରଣରୁ କାନକୁହାଙ୍କ କଥାରେ ଗୁରୁତ୍ୱ ଦେଉନଥିଲେ । ରାଜାର ପିତଳକାନ । ସେ କାନ ସବୁ ଶୁଣିବ । ବିଚାରକରି ବିଶ୍ୱାସ କରିବ । ଏଥିର ଅନ୍ୟଥା ରାଜଧର୍ମର ପରିପନ୍ଥୀ ।

କୃଷ୍ଣଚନ୍ଦ୍ର ଗଜପତିଙ୍କ ରାଜ୍ୟାଭିଷେକ ହୁଏ ୨୬.୪.୧୯୧୩ରେ । ତା' ପୂର୍ବରୁ ମହାରାଜାଙ୍କର ବିବାହ ସମ୍ପନ୍ନ ହୋଇସାରିଥିଲା । ବିବାହ ଉପଲକ୍ଷେ ୧୯୧୩ ଫେବୃଆରୀ ମାସରେ ପ୍ରାୟ ପ୍ରତ୍ୟେକ ଦିନ ରଙ୍ଗାଳୟରେ ନାଟକ ହୁଏ । କେଉଁଦିନ 'ଝେରି ଝେରି' ତ କେଉଁଦିନ 'ଉଷା ପରିଣୟ' । ପ୍ରତିଦିନ ଅଲଗା ଅଲଗା ନାଟକ । ଦର୍ଶକଙ୍କ ମଧରେ ଥିଲେ ଖଲ୍ଲିକୋଟ, ବଡଖେମୁଣ୍ଡି, ନନ୍ଦିଗାଁ, ମଂଜୁଷା, ବୁଡ଼ାରସିଂ, ସୁରଙ୍ଗୀ ଓ ଅନ୍ୟାନ୍ୟ ରାଜା/ଜମିଦାରମାନେ । ରାଜା ଜମିଦାରଙ୍କ ସହ ବହିରାଗତ ଅନେକ ବିଶିଷ୍ଟ ବ୍ୟକ୍ତି ଏପରିକି ସଂସ୍କାରକ ଶ୍ରୀବତ୍ସ ପଣ୍ଡାଙ୍କ ମୁଖରୁ ମଧ ନାଟକର ଭୂୟସୀ ପ୍ରଶଂସା ଶୁଣି ମହାରାଜା କୃଷ୍ଣଚନ୍ଦ୍ରଙ୍କ ଏଥିରେ ଉଲ୍ଲାସ ଓ ଉତ୍ସାହର ସୀମା ରହିଲା ନାହିଁ । ନାଟକ ଓ ନାଟକଶାଳା ପ୍ରତି ତାଙ୍କର ସୃଷ୍ଟି ହେଲା ଆଶାତୀତ ଆଗ୍ରହ । ଏତେବେଳକୁ କୃଷ୍ଣଚନ୍ଦ୍ରେ ଗଜପତିଙ୍କ ପିତୃବ୍ୟ ପଦ୍ମନାଭ ଦେବଙ୍କ ନାମରେ ରଙ୍ଗାଳୟର ନାମକରଣ ହୋଇ ସାରିଥାଏ । ତେଣୁ ସେ ଚାହିଁଲେ ଯେ ସେ ନାଟକର ସ୍ୱତ୍ୱାଧିକାର ହାତକୁ ନେବେ, ଯାହାଫଳରେ ନାଟକ ପାଇଁ ବ୍ୟକ୍ତିବିଶେଷଙ୍କଠାରୁ କିଛି କରଜ କରିବା ଦରକାର ହେବ ନାହିଁ । ଅନ୍ୟ ପକ୍ଷରେ ନାଟକଶାଳାର ଆଧୁନିକୀକରଣ କରାଯାଇ ପାରିବ । ସଂପ୍ରତି ପରିଚାଳନା କମିଟିର ନାଟକାଳୟରୁ ଯାହା ପ୍ରାପ୍ୟ ପାଉବାର ଅଛି ସେ ସମସ୍ତ ଦେଇ ନାଟକକୁ ନିଜର ଖାସ ସ୍ୱତ୍ୱାଧିକାରକୁ ନେବାକୁ ମହାରାଜାଙ୍କ ଅଭିଳାଷ

ମନ ମଧ୍ୟରେ ଚଳଚଞ୍ଚଳ ହେଲା । ଏ ଖବର ନାଟକ ପରିଚାଳନା ସମିତି ପାଖରେ ପହଞ୍ଚିବାକୁ ବିଶେଷ ସମୟ ଲାଗିଲା ନାହିଁ । ଏ ବିଷୟରେ ସୂଚନା ପାଇଥିବା ବିଷୟ ଆପନ୍ନା ପରିଚ୍ଛା ୧୯୧୫ ଏପ୍ରିଲ ୨୬ ତାରିଖ ଦିନଲିପିରେ ଲିପିବଦ୍ଧ କରିଛନ୍ତି । ମହାରାଜାଙ୍କ ପକ୍ଷରୁ କଥା ବାହାରେ ପ୍ରଘଟ ହେବା ପୂର୍ବରୁ ସେ ଚେଷ୍ଟା କରିଛନ୍ତି ଜାଣିବା ପାଇଁ ଯେ ପ୍ରସ୍ତାବିତ ପରିବର୍ତ୍ତନ ଦ୍ୱାରା ନାଟକ ଉପରେ ତା'ର କୁପ୍ରଭାବ ପଡିବ କି ? ଏଥିପାଇଁ ସେ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଅନୁଜ ବଳଭଦ୍ର ନନ୍ଦଙ୍କୁ ୧୯୧୫ ମଇ ମାସ ୧୦ ତାରିଖ ଦିନ ଡକାଇ ପରାମର୍ଶ କରିଛନ୍ତି । ନନ୍ଦ ମହାଶୟ ପ୍ରସ୍ତାବ ସପକ୍ଷରେ ପରାମର୍ଶ ଦେଇଥିବା ଆପନ୍ନାଙ୍କ ଦିନଲିପିରୁ ପ୍ରତୀତ ହୁଏ । ଏହାପରେ ଜୁନ୍ ୧୪ ତାରିଖରେ ଇଷ୍ଟେଟ ମ୍ୟାନେଜର ଆପନ୍ନା ପରିଚ୍ଛାଙ୍କୁ ଡକାଇ ତାଙ୍କୁ ମହାରାଜାଙ୍କ ଉପର୍ଯ୍ୟୁକ୍ତ ଅଭିଳାଷ ଜଣାଇଦେଲେ । ଶୁଣିବା ମାତ୍ରେ ଆପନ୍ନାଙ୍କ ମନରେ ସୃଷ୍ଟି ହେଲା ଦୁଃଖର ଜୁଆର । ଆପନ୍ନାଙ୍କ ସହ ସମଦୁଃଖୀ ହେଲେ ନାଟକ ପରିଚାଳନା ସହ ସମ୍ପୃକ୍ତ ଅନ୍ୟତମ ସଦସ୍ୟ ଗୋପୀନାଥ ବେହେରା । ଏଠାରେ ଉଲ୍ଲେଖନୀୟ ଯେ ନାଟକ ଦଳ ଓ ରଙ୍ଗାଳୟ ଉଭୟ ଆପନ୍ନା ପରିଚ୍ଛାଙ୍କ ମାନସ ସନ୍ତାନ । ତାଙ୍କ ଲାଳନ ପାଳନ ଦ୍ୱାରା ଉଭୟ ବୟଃପ୍ରାପ୍ତ ହୋଇଥିଲେ । କେବଳ ସେତିକି ନୁହେଁ, ନାଟକ ପାଇଁ ସେ ନିଜସ୍ୱ କିଛି ଅର୍ଥ ମଧ୍ୟ ବ୍ୟୟ କରିଥିଲେ ଯାହାକି ତାଙ୍କର ନାଟକ ସମିତିରୁ ପାଇବାର ଥିଲା ।

ଆପନ୍ନାଙ୍କ ପ୍ରାପ୍ୟ ପରିଶୋଧ ହେବା ପୂର୍ବରୁ ମହାରାଜା ତା.୧୧.୨.୧୯୧୪ରିଖରେ ଇଷ୍ଟେଟ ମ୍ୟାନେଜରଙ୍କ ସହ ପଦ୍ମନାଭ ରଙ୍ଗାଳୟକୁ ବିଜେ ହେଲେ । ଏହିଠାରୁ ଆରମ୍ଭ ହେଲା ନାଟକଶାଳାର ନବୀକରଣ ପ୍ରକ୍ରିୟା । ନୂତନ ନିର୍ମାଣ କାର୍ଯ୍ୟାରମ୍ଭ ହେଲା ୧୯୧୪ ମାର୍ଚ୍ଚ ମାସ ତିନି ତାରିଖରେ । ମହାରାଜାଙ୍କ ନିର୍ଦ୍ଦେଶରେ ନିର୍ମାଣ କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଲା । ଉନ୍ନତ ଆସବାସପତ୍ର କିଣାହୋଇ ଆସିଲା । ବୈଷୟିକ ଜ୍ଞାନ ସମ୍ପନ୍ନ ବ୍ୟକ୍ତିଙ୍କ ସହାୟତାରେ ପଦ୍ମନାଭ ରଙ୍ଗାଳୟ ଏକ ଅତ୍ୟାଧୁନିକ ନାଟକଶାଳାକୁ ରୂପାନ୍ତରିତ ହେଲା । ଏଣେ ଆପନ୍ନାଙ୍କ ମନରେ ଅସରନ୍ତି ଆଶଙ୍କା ଉଙ୍କିମାରୁ ଥାଏ । ତେଣେ ରଙ୍ଗାଳୟକୁ ଅଧିକରୁ ଅଧିକ ମନୋଲୋଭା କରିବାକୁ ମହାରାଜାଙ୍କ ମନ ଦ୍ରୁତଗାମୀ ଘୋଟକ ତୁଲ୍ୟ ଧାବମାନ । ଏସବୁ ସତ୍ତ୍ୱେ ନାଟକ ପରିବେଷଣ ନବୀକୃତ ରଙ୍ଗାଳୟରେ ଯଥାପୂର୍ବ ଚାଲିଥାଏ, ସେଇ ପୁରୁଣା ନାଟ୍ୟକାର, ନିର୍ଦ୍ଦେଶକ ଓ ସଂଯୋଜକ ତଥା ପରିଚାଳକ ଆପନ୍ନାଙ୍କ ଇଙ୍ଗିତରେ । ମନର ଆଶଙ୍କା ହୃଦୟର ଆବେଗକୁ ଅଟକାଇ ପାରେନି । ବିବେକ ଆବେଗକୁ ନିୟନ୍ତ୍ରଣ କରେ । ଏ କ୍ଷେତ୍ରରେ ତାହା ହିଁ ଘଟିଲା ।

୧୯୧୫ ଜୁନ୍ ୧୪ ତାରିଖରେ ଇଷ୍ଟେଟ ମ୍ୟାନେଜର ମହାରାଜାଙ୍କ ମନର କଥା ଆପନ୍ନାଙ୍କୁ ସ୍ପଷ୍ଟ ଭାବେ ଶୁଣାଇଦେଇଥିଲେ । ତାଙ୍କ କହିବାନୁସାରେ ନାଟକଶାଳାର ଯାହା ଖର୍ଚ୍ଚ ତାହା ଦେଇ ନିଜ ସ୍ୱତ୍ୱାଧିକାରଭୁକ୍ତ କରିବା ପାଇଁ ମହାରାଜା ଚାହୁଁଛନ୍ତି । ଏବଂ ନାଟକଶାଳାର ସମସ୍ତ ଦାୟିତ୍ୱ ମଧ୍ୟ ମହାରାଜା ନିଜେ ବହନ କରିବାକୁ ଚାହାନ୍ତି । ଆମ ବିଚାରରେ ଏହା କିଛି ଅବାନ୍ତର ନୁହେଁ । କାରଣ ଏବେ ମଧ୍ୟ ବିଭିନ୍ନ ଘରୋଇ ଅନୁଷ୍ଠାନର ସରକାରୀକରଣ ପାଇଁ ଦାବି ଉଠୁଛି । ତେଣୁ ଆଜକୁ ପ୍ରାୟ ନଅ ଦଶନ୍ଧି ପୂର୍ବେ ରାଜା ସାଧାରଣ ସ୍ୱାର୍ଥ ପାଇଁ କୌଣସି ଅନୁଷ୍ଠାନର ସ୍ୱତ୍ୱ ସହ ଦାୟିତ୍ୱ ମୁଣ୍ଡ ଉପରକୁ ନେବାରେ ଭୁଲ କେଉଁଠି ? ସେତେବେଳେ ପାରଳାଖେମୁଣ୍ଡି ମହାରାଜା ସରକାରୀ ନିୟମରେ ଜଣେ ଜମିଦାର ମାତ୍ର । ତଥାପି ତାଙ୍କର କେତେକ ସ୍ୱତନ୍ତ୍ର ପଦମର୍ଯ୍ୟାଦା ଓ ଅଧିକାର ଚଳୁଥିଲା ଓ ସେ ଗଡଜାତର ଯେ କୌଣସି ଶାସନ ମୁଖ୍ୟଙ୍କ ପରି ଆଦର ସମ୍ମାନ ପାଉଥିଲେ । ଗଞ୍ଜାମ ତଥା ଓଡ଼ିଶାର ପ୍ରାୟ ପ୍ରତ୍ୟେକ ରାଜା ଜମିଦାର ନିଜ ନିଜ ଅଂଚଳର ଶୈକ୍ଷିକ ଓ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକର ସ୍ୱତ୍ୱାଧିକାର ସହ ସେଗୁଡ଼ିକର ପ୍ରାଶାସନିକ ପରିଚାଳନା ମଧ୍ୟ କରୁଥିଲେ ।

ସୁତରାଂ ପଦ୍ମନାଭ ରଙ୍ଗାଳୟ ପରି ଏକ ଗୁରୁତ୍ୱପୂର୍ଣ୍ଣ ସାଂସ୍କୃତିକ ଅନୁଷ୍ଠାନକୁ ନିଜ ସ୍ୱତ୍ୱାଧିକାରଭୁକ୍ତ କରିବା ସହ ସେଥିର ପରିଚାଳନା ଦାୟିତ୍ୱ ନେବାପାଇଁ କୃଷ୍ଣଚନ୍ଦ୍ର ଗଜପତିଙ୍କ ପଦକ୍ଷେପରେ କିଛି ଅସ୍ୱାଭାବିକତା ନଥିଲା ପରି ମନେହୁଏ । ନୀତିଦୃଷ୍ଟିରୁ ମଧ୍ୟ ମହାରାଜାଙ୍କ ଉପର୍ଯ୍ୟୁକ୍ତ ପଦକ୍ଷେପ ସମର୍ଥନ ଯୋଗ୍ୟ । ତେବେ ଆପନ୍ନା ପରିଛାଙ୍କର ଏଥିପ୍ରତି ସମର୍ଥନ ନଥିଲା । କାରଣ ସେ ନିଜେ ଥିଲେ ଜଣେ କଳାକାର, ନିର୍ଦ୍ଦେଶକ ତଥା ସଂଗଠକ ଓ ତାଙ୍କର ନାଟକ ରଚନା, ଅଭିନୟ, ମଞ୍ଚ ପରିଚାଳନା ଓ ପ୍ରାଶାସନିକ ପରିଚାଳନା ସବୁଥିରେ ଦୀର୍ଘ ଅଭିଜ୍ଞତା ଥିଲା । ନାଟକ କ୍ଷେତ୍ରରେ ଘରୋଇ ପରିଚାଳନା ରାଜକର୍ତ୍ତୃକ ପରିଚାଳନା ଅପେକ୍ଷା ଅଧିକତର ଦକ୍ଷ, ଏପରି ବିଶ୍ୱାସ ତାଙ୍କର ଥିଲା । ତାଙ୍କର ଆଶଙ୍କା ଥିଲା ଯେ, ରାଜ ପରିଚାଳନା ଦ୍ୱାରା ନାଟକର ଗୁଣାତ୍ମକମାନ ହ୍ରାସ ପାଇପାରେ । ତେଣୁ ସେ ନିଜ ଦିନଲିପିରେ ଲେଖିଛନ୍ତି – "ନାଟକ ଭାଙ୍ଗିଯିବାର ଏହା ପୂର୍ବାଭାସ" । ଏହି ଆଶଙ୍କାର ବଶବର୍ତ୍ତୀ ହୋଇ ସେ ମନସ୍ଥ କରିଛନ୍ତି ପଦ୍ମନାଭ ରଙ୍ଗାଳୟ ସହ ସମ୍ପର୍କ ଛିନ୍ନ କରିଦେବାକୁ । ଏବଂ ଶେଷରେ ଇସ୍ତଫା ଦେଇଛନ୍ତି ତା.୨୬.୮.୧୯୧୫ରିଖରେ । ତାଙ୍କ ଇସ୍ତଫା ତା' ପର ମାସ ୨୨ ତାରିଖରେ ରଙ୍ଗାଳୟର ପରିଚାଳନା ସମିତି ଗ୍ରହଣ କରିନେଇଛନ୍ତି । ଯାହା ଜଣାପଡୁଛି, ମହାରାଜାଙ୍କ ଅଭିଳାଷ ଆଗରେ ଆପନ୍ନା ପରିଛାଙ୍କ ଇସ୍ତଫା ଥିଲା ଗୁରୁତ୍ୱହୀନ । ଆପନ୍ନାଙ୍କ ପାଇଁ ବୋଧହୁଏ, ଏହି ଦିନଟି ଥିଲା ଜୀବନର ସବୁଠାରୁ ଯନ୍ତ୍ରଣାଦାୟକ ଦିନ । ନିଜର

ଅନୁଭବକୁ ପ୍ରକାଶ କରିବାକୁ ଯାଇ ସେ ତାଙ୍କ ଦିନଲିପିରେ ଲେଖିଛନ୍ତି – "୧୫ ବର୍ଷର କଷ୍ଟର ପ୍ରତିମା ବିସର୍ଜନ କଲି" । ଏହାପରେ ଅକ୍ଟୋବର ୧୮ ତାରିଖରେ ନାଟକ ସଂଘର ନୂତନ କର୍ମକର୍ତ୍ତା ନିର୍ବାଚନ ହେଲା । ଆପନ୍ନା ସେଥିରୁ ବାଦ ପଡିଲେ । ସେତେବେଳକୁ ନାଟକ ସଙ୍ଘ ଆପନ୍ନାଙ୍କୁ ଋଣ ବାବଦରେ କେତେକ ଟଙ୍କା ପରିଶୋଧ କରିବାକୁ ଥିଲା । ତେଣୁ ସେହି ବର୍ଷ ଡିସେମ୍ବର ୧୮ ତାରିଖରେ ନାଟକ ପରିଚାଳନା ସମିତି ସ୍ଥିର କଲେ ଯେ ଆପନ୍ନାଙ୍କର ପ୍ରାପ୍ୟ ତାଙ୍କୁ ପ୍ରଦାନ କରିବାକୁ ମହାରାଜାଙ୍କୁ ଲିଖିତ ଆକାରରେ ଜଣାଇ ଦିଆଯିବ । ଏକଥା ଆପନ୍ନା ପରିଚ୍ଛା ତାଙ୍କ ଦିନଲିପିରେ ଲେଖିଛନ୍ତି ।

ରଙ୍ଗାଳୟ ସମ୍ବନ୍ଧ ପ୍ରାପ୍ୟ ଦେଇଦେବା ପାଇଁ ମହାରାଜାଙ୍କ ପ୍ରତିଶ୍ରୁତି କେବଳ ପ୍ରତିଶ୍ରୁତିରେ ରହିଗଲା । ଏଥିପାଇଁ କିଛି ବ୍ୟକ୍ତିଙ୍କର ଦ୍ୱୈତଭୂମିକା ଦାୟୀ । ଆପନ୍ନା ଏଥିପାଇଁ ମହାରାଜାଙ୍କୁ ବାରମ୍ବାର ସାକ୍ଷାତ କରିଛନ୍ତି । କିନ୍ତୁ ସେସବୁ ହୋଇଛି ନିରର୍ଥକ । ଶେଷଥର ପାଇଁ ସେ ମହାରାଜାଙ୍କୁ ୧୯୧୬ ଜୁନ୍ ୯ ତାରିଖରେ ସାକ୍ଷାତ କରି ପଦ୍ମନାଭ ରଙ୍ଗାଳୟ ବାବଦ ତାଙ୍କର ପ୍ରାପ୍ୟ ଦେଇଦେବାକୁ ନିବେଦନ କରି ପୁଣି ନିରାଶ ହୋଇଛନ୍ତି । ପରିଶେଷରେ ସେ ମହାରାଜାଙ୍କୁ ଏ ନେଇ ଏକ ପତ୍ର ଲେଖିଛନ୍ତି ୧୯୧୬ ଅଗଷ୍ଟ ୧୬ ତାରିଖରେ । ପରିଣାମ ସ୍ୱରୂପ ମହାରାଜା ଚାହିଁଛନ୍ତି ନାଟକର ହିସାବ ଦେଖିବା ପାଇଁ । ୧୯୧୭ ଜାନୁଆରୀ ୬ ତାରିଖରେ ନାଟକ ସଙ୍ଘ ଆଲୋଚନା କରି ପରିଚ୍ଛାଙ୍କ ପ୍ରାପ୍ୟ ଦେବା ସମ୍ପର୍କରେ ଏକ ନକାରାତ୍ମକ ଉତ୍ତର ଦେଇଛନ୍ତି । ନିରାଶ ହୋଇଛନ୍ତି ଆପନ୍ନା । ଏହାପରେ ସେ ଦୃଷ୍ଟି ଫେରାଇ ନେଇଛନ୍ତି ପଦ୍ମନାଭ ରଙ୍ଗାଳୟରୁ ପରିଚ୍ଛା ମଠକୁ । ପରିଚ୍ଛାଙ୍କ ପଥ ଅନୁସରଣ କରି ଗୋପୀନାଥ ବେହେରା, ନନ୍ଦ କିଶୋର ଦାସ ମଧ୍ୟ ରଙ୍ଗାଳୟରୁ ଇସ୍ତଫା ପ୍ରଦାନ କରିଛନ୍ତି । ଏମାନଙ୍କ ଇସ୍ତଫା ରଙ୍ଗାଳୟରେ ନାଟକ ପରିବେଷଣର ଧାରାବାହିକତାକୁ ଆଦୌ ପ୍ରଭାବିତ କରିନଥିଲା । ନୂତନ ପ୍ରଶସ୍ତ ପ୍ରେକ୍ଷାଳୟ । ତା' ସଙ୍ଗକୁ ବହିରାଗତ ଦକ୍ଷ ମଞ୍ଚ ଶିଳ୍ପୀମାନଙ୍କ ପରାମର୍ଶ, ସର୍ବୋପରି ମହାରାଜାଙ୍କ ଉତ୍ସାହ ଓ ପ୍ରୋତ୍ସାହନ ଏକ ଉଚ୍ଚକୋଟୀର ରଙ୍ଗମଞ୍ଚରେ ରୂପାନ୍ତରିତ କରିଦେଲା ପଦ୍ମନାଭ ରଙ୍ଗାଳୟକୁ । ଏତିକି ବେଳକୁ ରଙ୍ଗାଳୟରେ ସବୁକିଛି ଥିଲା କେବଳ ତା' ସହ ନଥିଲେ ଆପନ୍ନା ପରିଚ୍ଛା । ରଙ୍ଗାଳୟରେ ଆପନ୍ନାଙ୍କ ଅଭାବ କିନ୍ତୁ ପୂରଣ ହୋଇପାରିଲା ନାହିଁ । ହେଲେ ଆପନ୍ନା ସିନା ପଦ୍ମନାଭ ରଙ୍ଗାଳୟ ଛାଡିଗଲେ, ନାଟକ ଭୂତ ତାଙ୍କୁ ଛାଡିଲା ନାହିଁ । ସତେ ଯେମିତି ତାଙ୍କ ପିଠିରେ ନାଟକ ଭୂତ ସବାର ହୋଇ କୋରଡାରେ ନିର୍ଘାତ ପିଟୁଛି । ଯନ୍ତ୍ରଣା ଜର୍ଜରିତ ଆପନ୍ନା ପରିଚ୍ଛା ଗଠନ କଲେ ଏକ ନୂତନ ନାଟକ ଦଳ । ଯାହାର ନାମକରଣ କଲେ ରସିକରାଜ ନାଟକ ସଙ୍ଘ । ସେ ନିଜ ମଠରେ ନିର୍ମାଣ କଲେ ଏକ ମଞ୍ଚ । ଦୃଢ଼ ମନୋବଳ ଓ ଦୀର୍ଘ ଅଭିଜ୍ଞତାକୁ ପାଥେୟ

କରି ସେ ଅଗ୍ରସର ହେଲେ । ଲୀଳା ଓ ନାଟକ ଉଭୟ ପରିବେଷଣ କରାଗଲା ଏହି ମଞ୍ଚରେ । ଏଥିପାଇଁ ବଛା ବଛା ବାଳକମାନଙ୍କୁ ଅଣାଗଲା । ମଠରେ ସେମାନଙ୍କ ବାସଗ୍ରାସର ବ୍ୟବସ୍ଥା କରାଗଲା । ସେହି ନାଟୁଆ ପିଲାମାନେ ଦିନରେ ପାଠ ଓ ରାତିରେ ନାଟ ଅଭ୍ୟାସ କରୁଥିଲେ । ଏଠି ଉଲ୍ଲେଖନୀୟ ଯେ ପରିଛା ମଠରେ ଆପନ୍ନା ପରିଛା ଯେଉଁ ରଙ୍ଗମଞ୍ଚଟି କରିଥିଲେ ତା'ର ସ୍ମୃତି ସନ୍ତକ ଏବେ ମଧ୍ୟ ସେଠାରେ ଅଛି । କିନ୍ତୁ ପଦ୍ମନାଭ ରଙ୍ଗାଳୟର ଚିହ୍ନ ବର୍ଣ୍ଣ ନାହିଁ । ଏହା ଦେଖି କାଳ ପରିହାସ କରୁଛି । "ହେ କେଶବ ! କୃଗତା ତବ ମଥୁରାପୁରୀ ।"

ଏଠାରେ ଲକ୍ଷ୍ୟ କରିବାର କଥା ଯେ ଏକବିଂଶ ଶତାବ୍ଦୀରେ ସ୍ଥାୟୀ ରଙ୍ଗମଞ୍ଚଟିଏ ସମଗ୍ର ଓଡ଼ିଶାରେ ବିରଳ ଥିଲା ବେଳେ ବିଂଶ ଶତାବ୍ଦୀର ଆଦ୍ୟ କାଳରେ ଅର୍ଥାତ୍ ଆଜକୁ ପ୍ରାୟ ୧୦୦ ବର୍ଷ ପୂର୍ବେ ପାରଳାଖେମୁଣ୍ଡି ପରି ଏକ କ୍ଷୁଦ୍ର ସହରରେ ଦୁଇଗୋଟି ରଙ୍ଗମଞ୍ଚ ଥିଲା । ଦୁଇଗୋଟି ନାଟକ ଦଳ ସେଥିରେ ନିୟମିତ ନାଟକ ପରିବେଷଣ କରୁଥିଲେ । ଦର୍ଶକମାନେ ଟିକଟ କିଣି ମଞ୍ଚ ନାଟକ ଦେଖୁଥିଲେ ଏଇ ପାରଳା ସହରରେ । ସେହି ପୁରୁଣା ଟିକଟର କିଛି ନମୁନା ପୂର୍ବରୁ ଅବିକୃତ ଭାବେ ଉଦ୍ଧାର କରାଯାଇଛି । ପାରଳାଖେମୁଣ୍ଡି ଜନସାଧାରଣଙ୍କର ମଞ୍ଚ ନାଟକ ପ୍ରତି କିଭଳି ରୁଚିଥିଲା ଏଥିରୁ ବୁଝାପଡେ । ଉପଯୁକ୍ତ ଦୁଇ ରଙ୍ଗମଞ୍ଚ ମଧ୍ୟରୁ ପଦ୍ମନାଭ ରଙ୍ଗାଳୟର ସଭାପତି ତଥା ମୁଖ୍ୟ ସ୍ୱୟଂ କୃଷ୍ଣଚନ୍ଦ୍ର ଗଜପତି । ଅନ୍ୟଟିର ମୁଖ୍ୟ ନାଟ୍ୟକାର ଆପନ୍ନା ପରିଛା । ସମସ୍ତ ରାଜପ୍ରୋତ୍ସାହନ ସତ୍ତ୍ୱେ ପଦ୍ମନାଭ ରଙ୍ଗାଳୟରେ ପରିବେଷିତ ନାଟକର ପୂର୍ବର ଗୌରବ କ୍ରମେ କ୍ଷୁଣ୍ଣ ହେବାକୁ ଲାଗିଲା । ୧୯୧୬ ସେପ୍ଟେମ୍ବର ୩୦ ତାରିଖ ଦିନ ପାରଳାଖେମୁଣ୍ଡିରେ ପଦ୍ମନାଭ ରଙ୍ଗାଳୟ "ଲକ୍ଷ୍ମଣ ଚନ୍ଦ୍ରୋଦୟ" ପରିବେଷଣ କରିଥିଲା । ସେ ଦିନର ନାଟକ ପରିବେଷଣରେ ଗୁରୁତର ତ୍ରୁଟି ଓ ଦୁର୍ବଳ ଅଭିନୟ ଜନସାଧାରଣଙ୍କୁ ହତାଶ କରିଥିଲା । ସ୍ଥାନୀୟ ତେଲୁଗୁ ଲୋକମାନେ ଏଥିପୂର୍ବରୁ 'ବନପର୍ବ' ନାଟକ ପରିବେଷଣ କରିଥିଲେ, ଯାହାକି ଅତି ନିମ୍ନମାନର ଥିବାରୁ ସମାଲୋଚନା ହୋଇଥିଲା । ଲକ୍ଷ୍ମଣ ଚନ୍ଦ୍ରୋଦୟ ତା'ଠାରୁ ମଧ୍ୟ ନିମ୍ନମାନର ହେଲା । ତେବେ ତେଲୁଗୁମାନେ ୨ୟ ଦିନ ଅର୍ଥାତ୍ ତା.୧.୧୦.୧୯୧୬ରେ ପରିବେଷଣ କରିଥିବା ନାଟକ ଦେଖି ଦର୍ଶକମାନେ ପ୍ରଶଂସା କରିଥିବା ଆପନ୍ନା ପରିଛା ତାଙ୍କ ଦିନଲିପିରେ ଲେଖିବାକୁ ଭୁଲି ନାହାନ୍ତି । ପାରଳାଖେମୁଣ୍ଡିରେ ସେତେବେଳେ ତେଲୁଗୁ ଲୋକମାନେ ମଧ୍ୟ ଗୋଟିଏ ନାଟକ ଦଳ ଗଢ଼ିଥିଲେ । ସେହି ଦଳର ନାମ ଥିଲା ସୁମନୋରଞ୍ଜନୀ ନାଟକ ସଙ୍ଘ । ରାଜା ସେମାନଙ୍କୁ ମଧ୍ୟ ପଦ୍ମନାଭ ରଙ୍ଗାଳୟରେ ନାଟକ ପରିବେଷଣ କରିବା ପାଇଁ ସୁଯୋଗ ଦେଉଥିଲେ ।

ଆପନ୍ନା ପରିଚ୍ଛା ଥିଲେ ଜଣେ ପ୍ରଚଣ୍ଡ ସ୍ୱାଭିମାନୀ ଓଡ଼ିଆ । ନିଜ ଜନ୍ମଭୂମିରେ ଅନ୍ୟର କଳା ପରିବେଷଣ ସମୟରେ ନିଜର କଳାକୃତିର ନିକୃଷ୍ଟ ପ୍ରଦର୍ଶନ ତାଙ୍କୁ କ୍ଷୁବ୍ଧ କରୁଥିଲା । ତେଣୁ ସେ କଠୋର ପରିଶ୍ରମ କରୁଥିଲେ ଓଡ଼ିଆ ନାଟକର ଗୁଣାତ୍ମକ ଅଭିବୃଦ୍ଧି ପାଇଁ ।

ଆପନ୍ନା ପରିଚ୍ଛା ପଦ୍ମନାଭ ରଙ୍ଗାଳୟ ସହ ସମ୍ପର୍କ ଛିନ୍ନ କରିବାଠାରୁ ଉକ୍ତ ରଙ୍ଗାଳୟ ପ୍ରତି ଜନାଗ୍ରହ କମିବାକୁ ଲାଗିଲା, ଅନ୍ୟ ପକ୍ଷରେ ଆପନ୍ନା ପରିଚ୍ଛାଙ୍କ ନେତୃତ୍ୱ ଓ ନିର୍ଦ୍ଦେଶନାରେ ରସିକରାଜ ସଙ୍ଘ ଦ୍ୱାରା ଅଭିନୀତ ନାଟକ ପ୍ରତି ଲୋକାଦର ବଢୁଥିଲା । ପାରଳାଖେମୁଣ୍ଡି ବାହାରେ ମଧ ଆପନ୍ନାଙ୍କ ରସିକରାଜ ନାଟକ ସଙ୍ଘକୁ ନାଟକ ପରିବେଷଣ ପାଇଁ ଅନେକ ନିମନ୍ତ୍ରଣ ମିଳୁଥିଲା । ପାରଳା ରାଜ୍ୟ ବାହାରେ ସୁଦୂର ବ୍ରହ୍ମପୁର ଓ ପୁରୀରୁ ମଧ ଆପନ୍ନା ପରିଚ୍ଛାଙ୍କ ନାଟକ ଦଳକୁ ନିମନ୍ତ୍ରଣ ମିଳୁଥିଲା । ପରିସ୍ଥିତି ଏପରି ଥିବାବେଳେ 'ମୋରିସନ ଏକ୍ସଟେନସନ୍'ର ଉଦ୍‌ଘାଟନ ଉତ୍ସବ ଆୟୋଜିତ ହେଲା । ପାରଳାଖେମୁଣ୍ଡି ମହାରାଜାଙ୍କ କଲେଜଟି ବର୍ତ୍ତମାନ ଯେଉଁ କୋଠାରେ ଚାଲିଛି ତା'ର ଲୋକପ୍ରିୟ ନାମ ଥିଲା 'ମୋରିସନ୍ ଏକ୍ସଟେନ୍‌ସନ୍' । ଉଦ୍‌ଘାଟନ ଉତ୍ସବକୁ ଅନେକ ରାଜା, ମହାରାଜା, ଜମିଦାର, ଇଂରେଜ ପ୍ରାଶାସନିକ ଅଧିକାରୀ ଓ ମହାରାଜାଙ୍କ ସହପାଠୀ ନିମନ୍ତ୍ରିତ ହୋଇଥିଲେ । ସେମାନଙ୍କ ମନୋରଞ୍ଜନ ପାଇଁ ପଦ୍ମନାଭ ରଙ୍ଗାଳୟ ପକ୍ଷରୁ ଚନ୍ଦ୍ରାବତୀ ସ୍ୱୟଂବର ନାଟକ ଅଭିନୀତ ହୋଇଥିଲା । ପାରଳା ନଗରର ଗଣ୍ୟମାନ୍ୟ ବ୍ୟକ୍ତି ତଥା ନାଟକପ୍ରିୟ ବିଶିଷ୍ଟ ବ୍ୟକ୍ତି ଓ ବହିରାଗତ ନିମନ୍ତ୍ରିତଙ୍କ ସହ ପ୍ରେକ୍ଷାଳୟ ଭରପୂର ହୋଇଯାଇଥିଲା । କିନ୍ତୁ ନାଟକାଭିନୟ ଅତି ନିମ୍ନମାନର ହେଉଥିବାରୁ ଉପସ୍ଥିତ ବିଶିଷ୍ଟ ଓଡ଼ିଆମାନଙ୍କୁ ତାହା ବ୍ୟଥିତ କରିଥିଲା । ସେମାନେ ଲଜ୍ଜାନୁଭବ କରିବା ସହ ନାଟକାଳୟର ବୈଭବ ପ୍ରାଚୁର୍ଯ୍ୟ ମଧରେ ଆପନ୍ନାଙ୍କ ଭଳି ବ୍ୟକ୍ତିଟିର ଅଭାବ ଅନୁଭବ କରିଥିଲେ । ଆପନ୍ନା ପରିଚ୍ଛାଙ୍କୁ ବାଦଦେଇ ନାଟକର କି ଶୋଚନୀୟ ଅବସ୍ଥା ସେଦିନ ଉପସ୍ଥିତ ଓଡ଼ିଆମାନେ ଉପଲବ୍ଧି କରିଥିବେ ।

ଏଣେ ପଦ୍ମନାଭ ରଙ୍ଗାଳୟରେ ନାଟକ ପରିବେଷଣର ଏ ଦୂରବସ୍ଥା ଲାଗି ରହିଥିବା ବେଳେ ଦୋଳ ଉତ୍ସବ ସମୟ ଉପଗତ ହେଲା । ଗୁମ୍ମାର ବିଶୋଇ ସୂର୍ଯ୍ୟନାରାୟଣ ବିଶୋଇ ଦୋଳଯାତ୍ରା ଅବସରରେ ଗୁମ୍ମାରେ ନାଟକ ପରିବେଷଣ ପାଇଁ ଆପନ୍ନା ପରିଚ୍ଛାଙ୍କ ରସିକରାଜ ନାଟକ ସଙ୍ଘକୁ ନିମନ୍ତ୍ରଣ କଲେ । ତା.୮.୩.୧୯୧୭ରେ ଗୁମ୍ମାରେ ଉକ୍ତ ନାଟକଦଳ ନାଟକ ପରିବେଷଣ କଲେ । ନାଟକ ଉଚ୍ଚକୋଟୀର ହୋଇଥିଲା । ରସିକରାଜ ନାଟକ ସଙ୍ଘ ଦ୍ୱାରା ପରିବେଷିତ ନାଟକ କ୍ରମୋନ୍ନତି ଲାଭ କରୁଥିବା ବେଳେ ପଦ୍ମନାଭ ରଙ୍ଗାଳୟର ନାଟକ ଥିଲା ଅବକ୍ଷୟମୁଖୀ । ମହାରାଜା କୃଷ୍ଣଚନ୍ଦ୍ରଙ୍କୁ ତାଙ୍କ

ସଭାପତିତ୍ୱରେ ପରିଚାଳିତ ନାଟକର ଶୋଚନୀୟ ଅବସ୍ଥା ନିଶ୍ଚୟ ବ୍ୟଥିତ କରିଥିବ । ତେଣୁ ସେ ତା.୧୧.୬.୧୯୧୯ରିଖରେ ରଙ୍ଗାଳୟର ସ୍ଥାୟୀ ସଭାପତି ପଦତ୍ୟାଗ କରି କେବଳ ପୃଷ୍ଠପୋଷକ ରହିଲେ ।

ଆପନ୍ନା ପରିଚ୍ଛା ଗଢ଼ିଥିବା ରସିକରାଜ ନାଟକ ସଙ୍ଘ ଏକ ପେଷାଦାର ନାଟକ ସଙ୍ଘରେ ପରିଣତ ହେଲା । ସେତେବେଳେ ପେଷାଦାର ନାଟକଦଳମାନେ ନାଟକ କମ୍ପନୀ ନାମରେ ପରିଚିତ ହେଉଥିଲେ । ଯେପରିକି 'ବପଟଲାଲ କମ୍ପନୀ' । ସେହି ପନ୍ଥା ଅନୁସରଣ କରି ଆପନ୍ନା ପରିଚ୍ଛା ରସିକରାଜ ନାଟକ ସଙ୍ଘକୁ ରସିକରାଜ ନାଟକ କମ୍ପନୀ ନାମରେ ଅଭିହିତ କଲେ ।

ସେତେବେଳକୁ ପଦ୍ମନାଭ ରଙ୍ଗାଳୟ ମଧ୍ୟ ପଦ୍ମନାଭ ନାଟକ କମ୍ପନୀ ନାମରେ ନିଜର ପରିଚୟ ଦେଉଥିଲା । ଉଭୟ ନାଟକ ଦଳର ପୁରୁଣା ଟିକଟ ଗୁଡ଼ିକରେ ଏପରି ନାମ ଲେଖାଅଛି । ତେଣୁ ପାରଳାଖେମୁଣ୍ଡିର ଦୁଇଟିଯାକ ନାଟକ ସଂସ୍ଥା ନାଟକ କମ୍ପନୀ ଭାବରେ ନିଜର ପରିଚୟ ଦେଉଥିବା ନେଇ କୌଣସି ସନ୍ଦେହ ନାହିଁ ।

୧୯୧୯ ବେଳକୁ ରସିକରାଜ ନାଟକ ସଙ୍ଘ ଯୋଗୁଁ ନାଟକ କ୍ଷେତ୍ରରେ ପାରଳାଖେମୁଣ୍ଡିର ଖ୍ୟାତି ରାଜ୍ୟଯାକ ବୃଦ୍ଧି ପାଇଥାଏ । ତେଣୁ ଗଞ୍ଜାମର ବିଭିନ୍ନ ସ୍ଥାନ ସମେତ ଗଞ୍ଜାମ ବାହାରୁ ମଧ୍ୟ ସେମାନଙ୍କୁ ବରାଦ ମିଳୁଥାଏ । ୧୯୧୯ ଡିସେମ୍ବର ମାସରେ ପୁରୀରେ ଉତ୍କଳ ସମ୍ମିଳନୀର ଏକ ମହାଧିବେଶନ ବସିଥିଲା । ଏଥିରେ ନାଟକ ଅଭିନୟ କରିବାକୁ ପାରଳାଖେମୁଣ୍ଡିକୁ କୁହାଯିବାରୁ ସେତେବେଳେ ଏଠାରେ ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିଥିବା ରସିକରାଜ ନାଟକ ସଙ୍ଘକୁ ପ୍ରେରଣ କରାଯାଇଥିଲା । ଏଥିପାଇଁ ମହାରାଜା କୃଷ୍ଣଚନ୍ଦ୍ରଙ୍କ ଆଶୀର୍ବାଦ ରହିଥିଲା । ଡିସେମ୍ବର ୨୫ ତାରିଖରେ ପୁରୀରେ ହେମଚନ୍ଦ୍ର ଉପାଖ୍ୟାନ ନାଟକ ଅଭିନୀତ ହେଲା ଆପନ୍ନା ପରିଚ୍ଛାଙ୍କ ତତ୍ତ୍ୱାବଧାନରେ । ଏଥିରେ ଅଂଶଗ୍ରହଣ କରିଥିବା କଳାକାରମାନଙ୍କ ମଧ୍ୟରେ ଟେକେଲିର କେତେଜଣ ଛାତ୍ର ଅନ୍ତର୍ଭୁକ୍ତ । ପୁରୀଠାରେ ଅଭିନୀତ ନାଟକ ଉଚ୍ଚକୋଟୀର ଥିଲା । ଉକ୍ତ ନାଟକ ଦଳ ପୁରୀରୁ ଫେରିବା ବାଟରେ ବ୍ରହ୍ମପୁର ଟାଉନ୍‌ହଲରେ ହେମଚନ୍ଦ୍ର ଉପାଖ୍ୟାନ ନାଟକଟି ପୁନର୍ବାର ପରିବେଷଣ କରି ଉଚ୍ଚ ପ୍ରଶଂସିତ ହେଲେ । ସେଦିନ ବ୍ରହ୍ମପୁରର ଦର୍ଶକମାନେ କଳାକାରମାନଙ୍କୁ କେତେକ ପୁରସ୍କାର ପ୍ରଦାନ କରିଥିବା ଆପନ୍ନା ପରିଚ୍ଛାଙ୍କ ଦିନଲିପିରେ ଲିପିବଦ୍ଧ ହୋଇଛି ।

ପଦ୍ମନାଭ ରଙ୍ଗାଳୟର କଳାତ୍ମକ ଅବକ୍ଷୟର ଧାରା ଗଡି ଚାଲିଥିବା ବେଳେ ଆପନ୍ନା ପରିଚ୍ଛା ଓ ତାଙ୍କ ନାଟକ ଦଳର ସୁଖ୍ୟାତି ବଢ଼ି ଚାଲିଥିଲା । ସାଧାରଣ ବିଚାରରେ

ଆପନ୍ନାଙ୍କ ବଢ଼ନ୍ତି ଲୋକପ୍ରିୟତା ମହାରାଜାଙ୍କୁ କ୍ଷୁବ୍ଧ କରିବା କଥା । କିନ୍ତୁ ସେପରି ହେଲା ନାହିଁ । ବରଂ ଆପନ୍ନା ଏବଂ ତାଙ୍କ ନାଟକ ଦଳର ସୁଖ୍ୟାତି ତାଙ୍କୁ ଉଲ୍ଲସିତ କରିଥିବା ତାଙ୍କ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନରୁ ପ୍ରତୀତ ହେଉଅଛି ।

୧୯୨୩ ଅଗଷ୍ଟ ୨୩ ତାରିଖ ରସିକରାଜ ମଠ ପାଇଁ ଥିଲା ଏକ ଅଭିନବ ଘଟଣା । ସନ୍ଧ୍ୟାରେ ମଠରେ ନାଟକ ଅଭ୍ୟାସ ଚାଲିଥିବା ବେଳେ ଖବର ପହଞ୍ଚିଲା ଯେ ସେହି ରାତି ମହାରାଜା ନାଟକ ଦେଖିବାକୁ ପରିଚ୍ଛା ମଠକୁ ବିଜେ ହେବେ । ସେତେବେଳେ 'ମାନଭଞ୍ଜନ' ନାଟକ ଅଭ୍ୟାସ ଚାଲିଥିଲା । ରାଜା ନାଟକ ଦେଖିବାକୁ ବିଜେ ହେଉଥିବା ଖବର ପାଇ ଆପନ୍ନା ପରିଚ୍ଛା ଓ ତାଙ୍କ ନାଟକ ଦଳର ଆନନ୍ଦର ସୀମା ରହିଲା ନାହିଁ । ସେମାନେ 'ମାନଭଞ୍ଜନ' ପରିବର୍ତ୍ତେ ସମ୍ପୂର୍ଣ୍ଣ ଏକ ନୂତନ ନାଟକ 'ନବୋକ୍ରଣ୍ଡୀ' ପରିବେଷଣ କରିବାକୁ ନିଷ୍ପତ୍ତି ନେଲେ । 'ନବୋକ୍ରଣ୍ଡୀ' ମଞ୍ଚସ୍ଥ କରିବାର ଆୟୋଜନ ଚାଲିଲା । ମହାରାଜା ରାତି ୧୦ଟାରେ ମଠକୁ ବିଜେ ହେଲେ । ନାଟକ ଅଭିନୟ ଆରମ୍ଭ ହେଲା । ମଞ୍ଚ ସାମନାରେ ଦର୍ଶକଙ୍କ ଭିଡ ଲହଡି ଭାଙ୍ଗୁଥାଏ । ନାଟକ ଦେଖି ମହାରାଜାଙ୍କ ବିସ୍ମୟ ଓ ଆନନ୍ଦର ସୀମା ରହିଲା ନାହିଁ । ମଞ୍ଚର ପରିପାଟୀ, ପରିଚାଳନା ଓ ପରିବେଷଣ ତାଙ୍କୁ ସ୍ତମ୍ଭୀଭୂତ କରିଦେଲା । ଏହାର ଦୁଇଦିନ ପରେ ଅର୍ଥାତ୍ ତା.୨୬.୮.୧୯୨୩ରିଖ ରାତି ମଞ୍ଚସ୍ଥ ହେଲା 'ମାନଭଞ୍ଜନ'। ଏ ନାଟକ ପାଇଁ ୧୫୦୦ ଟିକଟ ବିକ୍ରୟ ହୋଇଥିଲା । ଧନ୍ୟ ତମେ ପାରଳାର ନାଟକପ୍ରିୟ ଜନତା, ଧନ୍ୟ ତମ ନାଟକ ପ୍ରୀତି । ଆଜକୁ ୮୪ ବର୍ଷ ପୂର୍ବେ ୧୫୦୦ ଟିକଟ ବିକ୍ରୟ ହେଉଥିଲା ମଞ୍ଚ ନାଟକର ଥରକ ପ୍ରଦର୍ଶନ ପାଇଁ । ବାସ୍ତବରେ ପାରଳାର ଲୋକେ କଳାର ପୂଜାରୀ ଥିଲେ । ଧନ୍ୟ ତମେ ଆପନ୍ନା ପରିଚ୍ଛା କି ଯାଦୁ ତୁମେ ଜାଣିଥିଲ ସତେ !

ମହାରାଜା ଓ ଆପନ୍ନା ପରିଚ୍ଛାଙ୍କ ମଧ୍ୟରେ ମନୋମାଳିନ୍ୟକୁ କୌଣସି ମତେ ବଞ୍ଚାଇ ରଖିବାକୁ ପାରଳା ନଗରୀର କିଛି ତଥାକଥିତ ପ୍ରତିଷ୍ଠିତ ବ୍ୟକ୍ତି ବରାବର ପ୍ରଯତ୍ନ କରିଆସୁଥିଲେ । ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନର ଅବ୍ୟବହିତ କାଳରୁ ଏ ଧାରା ଚାଲିଆସିଥିଲା । କୌଣସି ମତେ ଆପନ୍ନା ପରିଚ୍ଛାଙ୍କୁ ଅପଦସ୍ତ କରିବାର ଉଦ୍ୟମ ଚାଲିଥିଲା । ଆପନ୍ନା ପରିଚ୍ଛା ନା ଏଥିରେ ବିଚଳିତ ଥିଲେ ନା ତାଙ୍କର କୌଣସି କାର୍ଯ୍ୟ ଏଥିଦ୍ୱାରା ବ୍ୟାହତ ହେଉଥିଲା । ବରଂ ଘୃତାହୂତି ଦ୍ୱାରା ଅଗ୍ନି ତେଜୀୟାନ ହେଲାପରି ସେ ଅଧିକ ବଳ ବିକ୍ରମ ସହ ନାଟକର ପ୍ରଚାର ପ୍ରସାର କାର୍ଯ୍ୟରେ ବ୍ୟାପୃତ ରହୁଥିବା ତାଙ୍କ କାର୍ଯ୍ୟାବଳୀରୁ ଜଣାପଡେ । ଶେଷରେ ନିରୂପାୟ ହୋଇପଡିଛନ୍ତି ସେହି ଦଗ୍ଧକାକମାନେ ।

ତା.୧୦.୬.୧୯୨୪ର ଏକ ଘଟଣା ଏଠି ଉଲ୍ଲେଖଯୋଗ୍ୟ । ସେଦିନ ପରିଛା ମଠରେ ନବୋତ୍କଣ୍ଠା ନାଟକ ଚାଲିଥାଏ । ହଠାତ୍ ଜଣାଗଲା ଯେ କେହି ଦୁର୍ବୃତ୍ତ ମଠର ଗୋଶାଳାରେ ଅଗ୍ନି ସଂଯୋଗ କରିଦେଇଛି । ତେବେ ମଠର କିଛି କ୍ଷତି ହେବା ପୂର୍ବରୁ ଉପସ୍ଥିତ ଦର୍ଶକମାନେ ଅଗ୍ନି ନିର୍ବାପନ କରିଦେଲେ । ନାଟକ ଯଥାରୀତି ଚାଲିଲା । ଏ କାଣ୍ଡ ଆକସ୍ମିକ ନଥିଲା । ଆପନ୍ନାଙ୍କ ବିରୋଧୀମାନଙ୍କର ଏହା ଥିଲା ପୂର୍ବ ପରିକଳ୍ପିତ । ସେମାନଙ୍କ କଳ୍ପନା ସେମାନଙ୍କୁ ହିଁ କାଳ ହେଲା । ନାଟକରେ ବ୍ୟାଘାତ ସୃଷ୍ଟି କରିବାର ସମସ୍ତ ଉଦ୍ୟମ ପଣ୍ଡ ହୋଇଗଲା । ବୋଧେ ଜନତାର ଶ୍ରଦ୍ଧା ଓ ରସିକରାଜଙ୍କ ଆଶୀର୍ବାଦ ଆପନ୍ନାଙ୍କୁ ଏକ ମହାନ ବିପଦରୁ ରକ୍ଷା କରି ଦେଇଥିଲା । ଏଣିକି ଆପନ୍ନାଙ୍କ ବିରୋଧୀମାନେ ନୀରବ ହୋଇଗଲେ ।

ରସିକରାଜ ସଙ୍ଘ ନାଟକ ପ୍ରଦର୍ଶନ ପାଇଁ ବାରମ୍ବାର ନିମନ୍ତ୍ରଣ ପାଇ ବ୍ରହ୍ମପୁର ଯାଉଥିଲା । ବର୍ତ୍ତମାନ ବିଚ୍ଛିନ୍ନାଞ୍ଚଳ କୁହାଯାଉଥିବା ତରଳା, ଟେକିଲି ପ୍ରଭୃତି ସ୍ଥାନରେ ମଧ ଉକ୍ତ ସଙ୍ଘ ନାଟକାଭିନୟ କରୁଥିଲା । ତରଳାରେ ନବାନୁରାଗ ଓ ନବୋତ୍କଣ୍ଠା ନାଟକ ଦେଖିବାକୁ ମଂଜୁଷା ରାଜା ବିଜେ ହୋଇଥିଲେ । ସେ ଜଣେ ସକଳ ଗୁଣାଗ୍ରଗଣ୍ୟ ରାଜା । ରସିକରାଜ ନାଟ୍ୟ ସଙ୍ଘର କଳାତ୍ମକ ପରିବେଷଣରେ ତାଙ୍କ ପରି ଜଣେ ବ୍ୟକ୍ତି ଅତିଶୟ ମୁଗ୍‌ଧ ହୋଇଥିବା ପାରଳା ମହାରାଜାଙ୍କ କର୍ଣ୍ଣଗୋଚର ହେଲା । ଏହି ସମୟରେ ଆପନ୍ନାଙ୍କ ନାଟକ ଦଳ ବ୍ରହ୍ମପୁରରେ ଗୋଷ୍ଠମିଳନ ଓ ଅନ୍ୟାନ୍ୟ ନାଟକ ମଞ୍ଚସ୍ଥ କରିଥିଲେ ୧୯୨୪ ସେପ୍ଟେମ୍ବର ୧୮ ତାରିଖରୁ ୨୮ ତାରିଖ ପର୍ଯ୍ୟନ୍ତ ।

ବିଶ୍ୱନାଥ ଦାସ, ଶିଶିଭୂଷଣ ରଥ, ଲିଙ୍ଗରାଜ ପାଣିଗ୍ରାହୀ ଓ ରାମକୃଷ୍ଣ ରଥଙ୍କ ପରି ଓଡ଼ିଶାର ବିଦ୍ୟାବାଗୀଶ ଗଣ ରସିକରାଜ ନାଟ୍ୟ ସଙ୍ଘର ପ୍ରଦର୍ଶନ ଦେଖିବାକୁ ଦର୍ଶକଙ୍କ ମଧ୍ୟରେ ଉପସ୍ଥିତ ରହୁଥିଲେ । ଉଚ୍ଚକୋଟୀର ପ୍ରଦର୍ଶନ ହେତୁ ବ୍ରହ୍ମପୁର ଠାରେ କଳାକାରମାନଙ୍କୁ ବ୍ୟକ୍ତିଗତ ଭାବେ ସ୍ୱର୍ଣ୍ଣ, ରୌପ୍ୟ ପଦକ ସହ ଆର୍ଥିକ ପୁରସ୍କାର ପ୍ରଦାନ କରାଯାଇଥିଲା ବ୍ରହ୍ମପୁର ନଗର ତରଫରୁ । ପଦକ ପ୍ରାପକମାନଙ୍କ ମଧ୍ୟରେ ଥିଲେ ନାରାୟଣ ସଦେଇ ଯାହାଙ୍କ ସାନ୍ନିଧ-ଧନ୍ୟ ଏ ଲେଖକ ତାଙ୍କ ସହ ଆଲୋଚନା କରିବାର ସୁଯୋଗ ପାଇଥିଲା ।

ଉପର୍ଯ୍ୟୁକ୍ତ ଘଟଣାବଳୀ ମହାରାଜାଙ୍କୁ ଅବଶ୍ୟ ପ୍ରଭାବିତ କରିଥିବ । ସେ ହୁଏତ ଅନୁଭବ କରିଥିବେ ଯେ ପାରଳାଖେମୁଣ୍ଡିରେ ନାଟକ କ୍ଷେତ୍ରରେ ଆପନ୍ନା ପରିଛାଙ୍କର ବିକଳ୍ପ ନାହିଁ । କଳାକାର ଯୁଗେ ଯୁଗେ ଅଭିମାନୀ । ଅର୍ଥଲୋଭୀ କଳାକାର ହୋଇପାରେନା । ଅଭିମାନୀ ହିଁ କଳାକାର । ଅନୁରାଗ, ଅଭିମାନ ବିନା କୌଣସିଥିରେ

ଶ୍ରେୟପ୍ରାପ୍ତି ହୁଏ ନାହିଁ । ଆପଣାଙ୍କ ଚରିତ୍ରରେ ଏ ଦୁଇଟି ଗୁଣ ବିଶେଷ ଭାବରେ ପରିଲକ୍ଷିତ । ଏ ଦିଗରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଅଧିକ ଏକପାଦ ଆଗରେ । ସେ ଆପଣା ପରିଚ୍ଛାଙ୍କୁ ପୁଣି ପଦ୍ମନାଭ ରଙ୍ଗାଳୟକୁ ଫେରାଇ ଆଣିବାକୁ ମନସ୍ଥ କଲେ । ମହାରାଜାଙ୍କ ଇଙ୍ଗିତରେ ଯୁଗଳ ପାଣିଗ୍ରାହୀଙ୍କ ପରି କିଛି ବ୍ୟକ୍ତି ଏଥିପାଇଁ ଆପଣା ପରିଚ୍ଛାଙ୍କ ସହ ବାରମ୍ବାର ସାକ୍ଷାତ କଲେ । ପଦ୍ମନାଭ ରଙ୍ଗାଳୟ ଓ ରସିକରାଜ ନାଟ୍ୟ ସଙ୍ଘ ମିଳିମିଶି ନାଟକ କରିବାକୁ ସେମାନେ ଆପଣା ପରିଚ୍ଛାଙ୍କୁ ପ୍ରବର୍ତ୍ତାଇଥିଲେ । ଏ ସମ୍ପର୍କରେ ରଙ୍ଗାଳୟ ପକ୍ଷରୁ ଆନୁଷ୍ଠାନିକ ଉଦ୍ୟମ ମଧ୍ୟ ଆରମ୍ଭ ହେଲା । ତା.୨.୧୧.୧୯୨୪ରେ ରଙ୍ଗାଳୟ ପରିଚାଳନା ସମିତିରେ ତଳଲିଖିତ ପ୍ରସ୍ତାବ ଗୃହୀତ ହୋଇଥିବା ଆମ ନଜରକୁ ଆସିଛି ।

(୧) ରସିକରାଜ ସଙ୍ଘ ଉପଯୋଗ କରୁଥିବା ସମସ୍ତ ଆସବାବପତ୍ରର ଓ ଅନ୍ୟାନ୍ୟ ଜିନିଷର ମୂଲ୍ୟ ରଙ୍ଗାଳୟ ଭରଣା କରିବ ।

(୨) ରସିକରାଜ ନାଟକ ସଙ୍ଘର ନାଟୁଆ ପିଲାଙ୍କ ପାଇଁ ଭୋଜନାଦିର ବ୍ୟବସ୍ଥା ପାଇଁ ଯାହା ଖର୍ଚ୍ଚ ଆବଶ୍ୟକ ସେସବୁ ନାଟକ ଆୟରୁ ଭରଣା କରାଯିବ ।

(୩) ରସିକରାଜ ମହାପ୍ରଭୁଙ୍କ ସମସ୍ତ ମହୋତ୍ସବ ପଦ୍ମନାଭ ରଙ୍ଗାଳୟରେ ହେବ ।

ଏହି ସର୍ତ୍ତମାନଙ୍କରେ ଯେବେ ଆପଣା ରାଜି ନହୁଅନ୍ତି, ତା'ହେଲେ ରସିକରାଜ ନାଟକ ସଙ୍ଘ ରହିବ, କିନ୍ତୁ ସେ ଉଭୟ ନାଟକ ଦଳକୁ ସହଯୋଗ କରିବେ ।

ପଦ୍ମନାଭ ରଙ୍ଗାଳୟ ପକ୍ଷରୁ ଏକ ତରଫା ଆଗତ ସର୍ତ୍ତମାନଙ୍କ ମଧ୍ୟରୁ କେଉଁଥିରେ ଆପଣା ପରିଚ୍ଛା ଏକମତ ହୋଇଥିଲେ ତା'ର କୌଣସି ପ୍ରମାଣ ଆମର ହସ୍ତଗତ ହୋଇନାହିଁ । କିନ୍ତୁ ସେ ୧୯୨୪ ନଭେମ୍ବର ୬ ତାରିଖରେ ମହାରାଜା କୃଷ୍ଣଚନ୍ଦ୍ରଙ୍କୁ ସାକ୍ଷାତ କରିଥିବା ତାଙ୍କ ଦିନଲିପିରେ ସୂଚନା ଦେଇଛନ୍ତି । ସେଦିନ ମହାରାଜାଙ୍କ ସହ ଦେଶ ମିଶ୍ରଣ ସଂପର୍କରେ ଆପଣା ଆଲୋଚନା କରିବା ବେଳେ ଉପରୋକ୍ତ ପ୍ରସଙ୍ଗ ଉତ୍‌ଥାପିତ ହୋଇଥିଲା । ଉଭୟଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ମତାନ୍ତର ସମ୍ପର୍କରେ ମୁକ୍ତ ଆଲୋଚନା କରିବା ଅବସରରେ ସେମାନେ ପରସ୍ପରକୁ ଆକଳନ କରିନେଇଛନ୍ତି । ଉଭୟ ପଶ୍ଚାତ୍ତାପ ମଧ୍ୟ କରିଛନ୍ତି । ଏ ଘଟଣା ଘଟିବାର ମାତ୍ର ୭ ଦିନ ପରେ ତା.୧୩.୧୧.୧୯୨୪ରିଖ ଦିନ ଆପଣା ପରିଚ୍ଛା ପଦ୍ମନାଭ ରଙ୍ଗାଳୟର କାର୍ଯ୍ୟ ନିର୍ବାହିକା ସମିତିକୁ ମନୋନୀତ ହୋଇଛନ୍ତି । ନୂତନ ଉତ୍ସାହ ଓ ଉଦ୍ଦୀପନା ସହ ସେ ରଙ୍ଗାଳୟରେ ଯୋଗଦାନ କରିଛନ୍ତି । ପରିସ୍ଥିତିର ଉପରେ ଚନ୍ଦ୍ରଶେଖର ରାଜଗୁରୁଙ୍କ ପରି ବିଶିଷ୍ଟ ବ୍ୟକ୍ତି ନାଟକରୁ ନିଜକୁ ଦୂରେଇ ନେଇଛନ୍ତି ।

ଆପନ୍ନାଙ୍କ ଯୋଗଦାନର ମାସକ ପରେ ପଦ୍ମନାଭ ରଙ୍ଗାଳୟ ନିଷ୍ପତ୍ତି ନେଇଛି 'କଳାପାହାଡ' ନାଟକ ମଞ୍ଚସ୍ଥ କରିବାକୁ । ଏ ନାଟକର ସଫଳ ମଞ୍ଚାୟନ ପାଇଁ ସକଳ ଦାୟିତ୍ୱ "ପୁଣି କାଳିଆ ଲେଉଟିଲା" ନ୍ୟାୟରେ ଆପନ୍ନାଙ୍କ ଉପରେ ନ୍ୟସ୍ତ କରାଯାଇଛି । ସମ୍ଭବତଃ ଉଭୟ ନାଟକ ଦଳର ନାଟୁଆ ପିଲାଙ୍କ ମିଳିତ ଅଂଶଗ୍ରହଣରେ ଉକ୍ତ ନାଟକ ମଞ୍ଚସ୍ଥ ହୋଇଛି । କିନ୍ତୁ ଦୁଇଦଳର ମିଶ୍ରଣ ଘଟିଥିବାର ପ୍ରମାଣ ନ ମିଳୁଥିଲେ ସୁଦ୍ଧା ଆପନ୍ନା ପରିଚ୍ଛା ରସିକରାଜ ସଙ୍ଘ ପକ୍ଷରୁ ବାହାରେ ଆଉ ନାଟକ କରିଥିବାର ଘଟଣା ନଜରକୁ ଆସି ନାହିଁ । ସେ ରସିକରାଜ ନାଟକ ସଙ୍ଘକୁ କିନ୍ତୁ ଶେଷ ପର୍ଯ୍ୟନ୍ତ ବଞ୍ଚାଇ ରଖିଥିବା ପାରିପାର୍ଶ୍ୱିକ ଘଟଣାମାନଙ୍କରୁ ଜଣାପଡୁଛି ।

ସତ୍ୟନାରାୟଣ ରାଜଗୁରୁ, ସଦାନନ୍ଦ, ନାରାୟଣ ସଦେଇଙ୍କ ପରି ଯୁବକମାନେ ସେମାନଙ୍କ ବାଳକ ବୟସରୁ ଆପନ୍ନା ପରିଚ୍ଛାଙ୍କ ନାଟକ ଦଳରେ ରହି ଆସିଥିଲେ । ସେମାନେ ମଧ୍ୟ ତାଙ୍କ ନିର୍ଦ୍ଦେଶନାରେ ପଦ୍ମନାଭ ରଙ୍ଗାଳୟରେ ଅଭିନୟ କରିଅଛନ୍ତି । ଆପନ୍ନା ପରିଚ୍ଛା ତାଙ୍କ ଶେଷ ପର୍ଯ୍ୟାୟ କଳାକାର ଜୀବନରେ ଯେତେବେଳେ ପଦ୍ମନାଭ ରଙ୍ଗାଳୟର ଦାୟିତ୍ୱ ପୁନଃଗ୍ରହଣ କରିଛନ୍ତି, ସେତେବେଳେ ସମ୍ଭବତଃ ରସିକରାଜ ନାଟକ ସଙ୍ଘକୁ ଭାଙ୍ଗି ନଥିବାରୁ କେତେକ ବାଳକ ଓ ଯୁବକ ରସିକରାଜ ମଠରେ ରହି ସେଠାରେ ନାଟକ ଅଭିନୟ କରୁଥିଲେ । ସେହି ବାଳକମାନଙ୍କୁ ପୂରାପୁରି ପଦ୍ମନାଭ ରଙ୍ଗାଳୟକୁ ନେଇଯିବା ପାଇଁ କେତେକ ପୁନର୍ବାର ଉଦ୍ୟମ କରୁଥିବା ବିଷୟ ଆପନ୍ନାଙ୍କ ଦିନଲିପିରୁ ଜଣାପଡେ । କିନ୍ତୁ ଏଥିରେ ବିରୋଧୀମାନେ ସଫଳ ନହେବାରୁ ସେମାନେ ସ୍ୱତନ୍ତ୍ରତା ରକ୍ଷା କରିଥିବା ଆପନ୍ନାଙ୍କ ରସିକରାଜ ନାଟକ ସଙ୍ଘକୁ ଭାଙ୍ଗି ଦେବାକୁ ଉଦ୍ୟମ କରୁଥିବାର ସୁରାକ ଆପନ୍ନା ପାଇପାରିଥିଲେ । ତେଣୁ ସେ ନିଜ ଦିନଲିପିରେ ଲେଖିଛନ୍ତି – "ଭାଙ୍ଗିଲେ ଆଉ ଗଢ଼ିହେବ ନାହିଁ" । ୧୯୨୯ ପରବର୍ତ୍ତୀ ଆପନ୍ନା ପରିଚ୍ଛାଙ୍କ ଦିନଲିପି ଅନୁପଲବ୍ଧ । ତେଣୁ ଏହାପରେ ଉଭୟ ନାଟକ ଦଳର କି ଅବସ୍ଥା ହେଲା ତାହା ଆମ ପାଇଁ ଅଜ୍ଞାତ । ଶୁଣାଶୁଣି ତଥ୍ୟ ଆଧାରରେ ଏଠାରେ ଆଲୋଚନା କରିବାକୁ ଆମେ ଅନାଗ୍ରହୀ ।

ପଦ୍ମନାଭ ରଙ୍ଗାଳୟକୁ ଦକ୍ଷିଣ ଓଡ଼ିଶାର ପ୍ରଥମ ସ୍ଥାୟୀ ରଙ୍ଗମଞ୍ଚର ମାନ୍ୟତା ଦେବାକୁ କେହି ଅମଙ୍ଗ ହୋଇନାହାନ୍ତି । କିନ୍ତୁ ଏହା ଯେ ଓଡ଼ିଶାର ପ୍ରଥମ ସ୍ଥାୟୀ ରଙ୍ଗମଞ୍ଚ ଏ ନେଇ ମତାନୈକ୍ୟ ରହିଛି । ଏହାର ଉତ୍ତର ଖୋଜିବାକୁ ହେଲେ ସ୍ୱତନ୍ତ୍ର ଆଲୋଚନା ଆବଶ୍ୟକ ।

# ପାରଳାଖେମୁଣ୍ଡିରେ
# ଭାରତୀୟ ଜାତୀୟ କଂଗ୍ରେସର ପଦଧ୍ୱନି

ଊନବିଂଶ ଶତାବ୍ଦୀର ଶେଷ ଆଡକୁ ଓଡ଼ିଆମାନେ ସେମାନଙ୍କର ସମାଜକୈନ୍ଦ୍ରିକ ରାଜନୀତିକ ଆଶା ଆକାଂକ୍ଷାକୁ ଚରିତାର୍ଥ କରିବା ପାଇଁ ଯେଉଁ କେତେଗୋଟି ଅନୁଷ୍ଠାନ ଗଢ଼ିଥିଲେ ସେ ଗୁଡ଼ିକ ହେଲା କଟକର ଉତ୍କଳ ସଭା, ବାଲେଶ୍ୱରର ଜାତୀୟ ସମିତି ଓ ପାରଳାଖେମୁଣ୍ଡିର 'ଉତ୍କଳ ହିତୈଷିଣୀ ସମାଜ' । ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ବମ୍ବେଠାରେ ବସିଥିଲା । ଏହି ଅଧିବେଶନରେ ଆଧୁନିକ ଓଡ଼ିଶାରୁ କେହି ପ୍ରତିନିଧି (ସେତେବେଳେ ଯେଉଁ ଭୌଗୋଳିକ ସୀମା ଥିଲା) ଯୋଗଦେଇ ନଥିବା ଆଲୋଚକମାନେ ମତ ଦିଅନ୍ତି । ଏକଥା ଠିକ୍ ନୁହେଁ । ବ୍ରହ୍ମପୁର ପୌର ପରିଷଦର ଆୟୁକ୍ତ ତଥା ଗଞ୍ଜାମ ଜିଲ୍ଲାକୋର୍ଟ ଓକିଲ ଶ୍ରୀଯୁକ୍ତ ଏମ୍. ବିଶ୍ୱନାଥ ଆୟାର ଉକ୍ତ ଅଧିବେଶନରେ ଜଣେ ନିମନ୍ତ୍ରିତ ଭାବେ ଯୋଗ ଦେଇଥିଲେ । ତା.୩.୩.୧୮୮୬ରେ କଟକ ଉତ୍କଳ ସଭାର ଆହ୍ୱାନରେ କଟକଠାରେ ମଧୁସୂଦନ ଦାସଙ୍କ ସଭାପତିତ୍ୱରେ ଏକ ସଭା ଅନୁଷ୍ଠିତ ହେଲା । ଏହା ଥିଲା ଓଡ଼ିଶାରେ ଜାତୀୟ କଂଗ୍ରେସର ପ୍ରଥମ ସଭା । ଏହିଠାରୁ ଓଡ଼ିଶାରେ ଜାତୀୟ ରାଜନୀତିକ ସଚେତନତାର ଅୟମାରମ୍ଭ ବୋଲି କୁହାଯାଇପାରେ ।

ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନକୁ ବାଲେଶ୍ୱର ଜାତୀୟ ସମିତି ଓ କଟକର ଉତ୍କଳ ସଭାର ପ୍ରତିନିଧିମାନଙ୍କ ସମେତ ବ୍ରହ୍ମପୁରରୁ ଓକିଲ ପି. ଗୋପାଳ ରାଓ ଓ ପୌର ସଦସ୍ୟ ଅବ୍‌ଦୁଲ୍ କରିମ୍ ମଧ୍ୟ ଯୋଗଦେଇଥିଲେ । ଏହା ପରବର୍ତ୍ତୀ କଂଗ୍ରେସ ଅଧିବେଶନ ମାନଙ୍କରେ ଯେଉଁମାନେ ଯୋଗଦେବା କଥା ସେମାନଙ୍କୁ ନିମ୍ନଲିଖିତ ତିନିଗୋଟି ସଂଗଠନର ନିର୍ବାଚିତ ପ୍ରତିନିଧିଭାବେ ଯିବାକୁ ହେବ ବୋଲି ସ୍ଥିର ହେଲା ।

୧. ଉତ୍କଳ ସଭା, କଟକ
୨. ଜାତୀୟ ସମିତି, ବାଲେଶ୍ୱର
୩. ଉତ୍କଳ ହିତୈଷିଣୀ ସମାଜ, ପାରଳାଖେମୁଣ୍ଡି

ଜାତୀୟ କଂଗ୍ରେସର ତୃତୀୟ ଅଧିବେଶନ ମାନ୍ଦ୍ରାଜଠାରେ ୧୮୮୭ରେ ଅନୁଷ୍ଠିତ ହେଲା । ଏଥିରେ ବାଲେଶ୍ୱର ଓ କଟକର ପ୍ରତିନିଧିମାନେ ଯୋଗଦେଇଥିଲେ । ଗଞ୍ଜାମରୁ କେହି ଏଥିରେ ଯୋଗଦେଇଥିବା ଜଣାଯାଉ ନାହିଁ । ଏହି ଅଧିବେଶନ ପରେ କଟକ ଠାରେ ତା.୨୯.୧.୧୮୮୮ ଏବଂ ତା.୧୬.୨.୧୮୮୮ରେ ଦୁଇଗୋଟି ସଭା ମଧୁସୂଦନ ଦାସଙ୍କ ସଭାପତିତ୍ୱରେ ହେଲା । ଏ ଉଭୟ ସଭାରେ କଂଗ୍ରେସର ୩ୟ ଅଧିବେଶନର ନିର୍ଦ୍ଧାରଣ ଉପରେ ଲୋକଙ୍କୁ ବୁଝାଇ ଦିଆଗଲା । ଓଡ଼ିଶାରେ ଲୋକେ କ୍ରମେ କ୍ରମେ କଂଗ୍ରେସ କାର୍ଯ୍ୟକ୍ରମ ସମ୍ପର୍କରେ ଅଧିକରୁ ଅଧିକ ଅବହିତ ହେଲେ ଓ ସେଥିପ୍ରତି ଆଗ୍ରହ ମଧ୍ୟ ପ୍ରକାଶ କଲେ ।

ଜାତୀୟ କଂଗ୍ରେସର ୪ର୍ଥ ଅଧିବେଶନ ଆଲାହାବାଦଠାରେ ହେବାକୁ ସ୍ଥିର ହୋଇଥିଲା । ଏଥିରେ ଯୋଗଦେବାକୁ କଟକ ଉତ୍କଳ ସଭା ନିମ୍ନଲିଖିତ ୭ଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ପ୍ରତିନିଧି ଭାବେ ନିର୍ବାଚିତ କରିଥିଲେ ।

୧. ବିହାରୀଲାଲ ପଣ୍ଡିତ
୨. ଜଗମୋହନ ଲାଲା
୩. ଶ୍ୟାମସୁନ୍ଦର ରାଜଗୁରୁ
୪. ମଧୁସୂଦନ ଦାସ
୫. ସାମ୍‌ସନ ରାଉତ
୬. ସୁଲ୍‌ତାନ ଅହମଦ୍
୭. ମହମ୍ମଦ ଅକ୍ତାର

ଏମାନଙ୍କ ମଧ୍ୟରୁ ଶ୍ୟାମସୁନ୍ଦର ରାଜଗୁରୁ ଆଲ୍ଲାହାବାଦ ଅଧିବେଶନକୁ ଗଲେ ନାହିଁ । ତେବେ ସମ୍ପୃକ୍ତ ସମସ୍ତ ପ୍ରତିନିଧି ଯେ ଯାହାର ଅଞ୍ଚଳରେ ଜାତୀୟ କଂଗ୍ରେସର ବାର୍ତ୍ତା ପ୍ରଚାର କରିବାକୁ ଲାଗିଲେ ।

କଂଗ୍ରେସର ୫ମ ଅଧିବେଶନ ପୁନର୍ବାର ବମ୍ବେଠାରେ ବସିଲା । ଏତିକିବେଳକୁ ଗଞ୍ଜାମ ଜିଲ୍ଲାରେ ପାରଳାଖେମୁଣ୍ଡିର ଉତ୍କଳ ହିତୈଷିଣୀ ସମାଜ ଗଞ୍ଜାମ ଓ କୋରାପୁଟ ଅଞ୍ଚଳରେ ଏକ ଅଗ୍ରଣୀ ସମାଜକେନ୍ଦ୍ରିକ ରାଜନୀତିକ ଅନୁଷ୍ଠାନ ଭାବେ ନିଜର ଭାବମୂର୍ତ୍ତି ସୃଷ୍ଟି କରିସାରିଥିଲା । ଏହି ଅନୁଷ୍ଠାନ ନିଜର ପ୍ରତିନିଧିମାନଙ୍କୁ ଜାତୀୟ କଂଗ୍ରେସ ବୈଠକକୁ ପଠାଇବା ଦାୟିତ୍ୱ ନେଇଥିଲା । ଶ୍ୟାମସୁନ୍ଦର ରାଜଗୁରୁ ଓ ଦେବାନ ସଦାଶିବ ମିଶ୍ର ପାରଳାଖେମୁଣ୍ଡିରୁ ଯାଇ କଂଗ୍ରେସର ପରବର୍ତ୍ତୀ ମାଡ୍ରାସ ଅଧିବେଶନରେ ଯୋଗଦେଲେ ୧୮୯୪ରେ । ରାଜଭ୍ରାତା ପଦ୍ମନାଭ ଦେବ ଏହି ଅଧିବେଶନରେ ଜଣେ ଦର୍ଶକଭାବେ ଯୋଗ ଦେଇଥିଲେ । ସେ ସେଠାରେ ଜାତୀୟ କଂଗ୍ରେସର କାର୍ଯ୍ୟକ୍ରମରେ ଏତେଦୂର ଉଦ୍‌ବୁଦ୍ଧ ହୋଇଥିଲେ ଯେ ସେଥିର ପରବର୍ତ୍ତୀ ୧୮୯୫ ଅଧିବେଶନକୁ ଉତ୍କଳ ହିତୈଷିଣୀ ସମାଜର ଜଣେ ପ୍ରତିନିଧିଭାବେ ଯାଇଥିଲେ । ତାହାଙ୍କ ପ୍ରରୋଚନାରେ ଶ୍ୟାମସୁନ୍ଦର ରାଜଗୁରୁ, ଭବକୃଷ୍ଣ ଦ୍ୱୈପାୟନ ରାଓ ମଧ୍ୟ ପୁନାରେ ଅନୁଷ୍ଠିତ ୧୮୯୫ର ଅଧିବେଶନରେ ଯୋଗଦେଇଥିଲେ । ଊନବିଂଶ ଶତାବ୍ଦୀର ଶେଷ ସୁଦ୍ଧା ଜାତୀୟ କଂଗ୍ରେସର ବାର୍ତ୍ତା ଉପରୋକ୍ତ ଚେତନଶୀଳ ଜାତୀୟବାଦୀ ନେତାମାନଙ୍କ ଜରିଆରେ ଗଞ୍ଜାମ ଜିଲ୍ଲାରେ ବିଶେଷ କରି ପାରଳାଖେମୁଣ୍ଡି ଅଞ୍ଚଳରେ ପ୍ରବେଶ କରିଥିଲା । ତେବେ ପାରଳାର ତତ୍‌କାଳୀନ ରାଜା ଗୌରଚନ୍ଦ୍ର ଗଜପତିଙ୍କର ଜାତୀୟ କଂଗ୍ରେସ ପ୍ରତି ଆଗ୍ରହ ବା ଅନାଗ୍ରହ କିଛି ନଥିଲା । ରାଜଭ୍ରାତା ପଦ୍ମନାଭ ଦେବଙ୍କ ଦୀର୍ଘ ଅସୁସ୍ଥତା କାରଣରୁ ୧୯୦୪ରେ ମୃତ୍ୟୁ ହେଲା । ଏହା ପାରଳାରେ ଜାତୀୟ କଂଗ୍ରେସ ପ୍ରତି ଥିଲା ଏକ ମସ୍ତବଡ ଧକ୍କା ।

୧୯୦୫ ଅକ୍ଟୋବର ୧୬ ତାରିଖ ଦିନ ବଙ୍ଗଳା ପ୍ରଦେଶରେ ସ୍ୱଦେଶୀ ଜାଗରଣର ରଣହୁଙ୍କାର ଶୁଣାହେଲା । ଲୋକେ ଗଙ୍ଗାରେ ପବିତ୍ର ସ୍ନାନ କରି ଖାଲିପାଦରେ ଏକ ବିଶାଳ ପଦଯାତ୍ରାରେ ବାହାରିଲେ । କଲିକତାର ରାଜରାସ୍ତା ଲୋକାରଣ୍ୟ ହେଲା । ବିଦେଶୀ ବସ୍ତ୍ର ବର୍ଜନ କରି ଦେଶୀ ବସ୍ତ୍ର ପରିଧାନ କରିବାକୁ ଆହ୍ୱାନ ଦିଆଗଲା । ଏହାର ଦୃଢ଼ ପ୍ରଭାବ ପଡ଼ିଲା ଓଡ଼ିଶା ଲୋକଙ୍କ ଉପରେ । ଓଡ଼ିଆମାନେ ସ୍ୱଦେଶୀ ବସ୍ତ୍ର ଓ ଅନ୍ୟାନ୍ୟ ଦୈନିକ ଆବଶ୍ୟକୀୟ ଜିନିଷ ଅଧିକ ଦାମ ଦେଇ କିଣିବାକୁ ପସନ୍ଦ କଲେ । ବିଦେଶୀ ଜିନିଷ ବର୍ଜନ କରାଗଲା । ବାଣପୁର, ସମ୍ବଲପୁର, ମାଣିଆବନ୍ଧ ଓ ପାରଳାଖେମୁଣ୍ଡି ଅଞ୍ଚଳରେ ତନ୍ତୀ ତଥା ବିଭିନ୍ନ ଜାତିର ବୁଣାକାରମାନଙ୍କୁ ପ୍ରୋତ୍ସାହିତ କରାଗଲା । ଯାଜପୁର

(ଅବିଭକ୍ତ କଟକର) ଲୋକେ ସର୍ବପ୍ରଥମେ ଅଧିକ ଦାମ ଦେଇ ଦେଶୀ ଲୁଗା କିଣିବାକୁ ଆଗଭର ହେଲେ । ମାଂଚେଷ୍ଟର ଲୁଗାରେ ବିଭିନ୍ନ ସ୍ଥାନରେ ଅଗ୍ନି ସଂଯୋଗ କରାଗଲା । ପୁରୀଠାରେ ଏ ଆନ୍ଦୋଳନ ଗୁରୁତର ଥିଲା । ଦେଶୀ ଲୁଗା ବ୍ୟତୀତ ଦେଶୀ ଆସବାବ ପତ୍ରର ବ୍ୟବହାର ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରାଗଲା ।

ବାଣପୁର ଅଞ୍ଚଳରେ ବେତ କାରିଗରମାନଙ୍କ ଦ୍ୱାରା କେତେ ପ୍ରକାର ଚୌକି ଟେବୁଲ ଓ ଅନ୍ୟାନ୍ୟ ଉପକରଣ ପ୍ରସ୍ତୁତ କରିବା ପାଇଁ ସେମାନଙ୍କୁ ଆର୍ଥିକ ପ୍ରୋତ୍ସାହନ ଦିଆଗଲା । ପାରଳାଖେମୁଣ୍ଡିର ତନ୍ତୀମାନଙ୍କୁ ପ୍ରୋତ୍ସାହିତ କରିବା ପାଇଁ ଗୋଟିଏ ତନ୍ତୁବାୟ ସମବାୟ ସମିତି ଗଢ଼ାହେଲା । ଏଥିପାଇଁ ଜାତୀୟ କଂଗ୍ରେସ ଅଂଶଧନ ସଂଗ୍ରହ କରି ଟ.୧୦,୦୦୦ ଜମା ଦେଲେ । ଏପରି ଭାବରେ ସ୍ୱଦେଶୀ ଜାଗରଣ କଲିକତାରୁ ଆରମ୍ଭ ହୋଇ ପାରଳାଖେମୁଣ୍ଡିରେ ପହଞ୍ଚି ଯାଇଥିଲା । ଆପନ୍ନା ପରିଚ୍ଛା ପାରଳାର ଏହି ବୁଣାକାର ସମିତିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଏହାର ଅଂଶଧନ ଟ.୧୦,୦୦୦ରୁ ଟ.୨୫,୦୦୦ ବୃଦ୍ଧି କରିବାରେ ତାଙ୍କର ଭୂମିକା ଥିଲା ।

ପାରଳାଖେମୁଣ୍ଡିର ଦୁର୍ଭାଗ୍ୟକୁ କଂଗ୍ରେସ କାର୍ଯ୍ୟକ୍ରମରେ ବିଶେଷ ଭାବେ ଉଦ୍‌ବୁଦ୍ଧ ପଦ୍ମନାଭ ଗଜପତି, ଶ୍ୟାମସୁନ୍ଦର ରାଜଗୁରୁ ଓ ଭବକୃଷ୍ଣ ଦ୍ୱୈପାୟନ ରାଓଙ୍କର ଦେହାବସାନ ସ୍ୱଳ୍ପ ବ୍ୟବଧାନ ମଧ୍ୟରେ ଘଟିଗଲା । ଏହି ଦେଶ ହିତୈଷୀମାନେ କଂଗ୍ରେସ ପ୍ରତି ଆକୃଷ୍ଟ ହୋଇଥିଲେ । କଂଗ୍ରେସର ଆନ୍ଦୋଳନ ଜୋର୍‌ଦାର ହେବା ପୂର୍ବରୁ ଓ ପାରଳାରେ ସାଂଗଠନିକ କାର୍ଯ୍ୟାରମ୍ଭ ପୂର୍ବରୁ ପଦ୍ମନାଭ ଗଜପତିଙ୍କ ଦେହାବସାନ ହୋଇଗଲା । ତେଣୁ ତାଙ୍କ ସହଯୋଗୀ ଦୁଇଜଣ ନିଷ୍କ୍ରିୟ ହୋଇଯାଇଥିଲେ । ଆପନ୍ନା ପରିଚ୍ଛା ସେତେବେଳକୁ କଂଗ୍ରେସ କାର୍ଯ୍ୟକ୍ରମ ସହ ସାମିଲ ହୋଇସାରିଥିଲେ ସିନା କୌଣସି ସାଂଗଠନିକ ଦାୟିତ୍ୱ ନେବାକୁ ଆଗଭର ହୋଇନଥିଲେ । ବରିଷ୍ଠ ନେତାମାନଙ୍କ ବିୟୋଗ ଆପନ୍ନାଙ୍କୁ ବାଧ୍ୟ କଲା କଂଗ୍ରେସ କାର୍ଯ୍ୟକ୍ରମ ରୂପାୟନ ପାଇଁ ଅଧିକ ସକ୍ରିୟ ହେବା ସହ ସାଂଗଠନିକ କାର୍ଯ୍ୟରେ ନେତୃତ୍ୱ ନେବା ପାଇଁ ।

ପାରଳାଖେମୁଣ୍ଡି ଅଞ୍ଚଳରୁ ଆପନ୍ନା ପରିଚ୍ଛା ହେଉଛନ୍ତି ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ସଦସ୍ୟ । ଯାହା ଜଣାପଡୁଛି ମୁକ୍ତାପୁରଠାରେ ଅନୁଷ୍ଠିତ ପଲ୍ଲୀ ସମ୍ମିଳନୀ ବେଳେ ଆପନ୍ନା ପରିଚ୍ଛା ଗୋପବନ୍ଧୁଙ୍କ ନିକଟ ସମ୍ପର୍କରେ ଆସିବା ପରେ କଂଗ୍ରେସ ପ୍ରତି ତାଙ୍କର ଆକର୍ଷଣ ବଢ଼ି ଯାଇଥିଲା । ୧୯୧୭ ବେଳକୁ ଓଡ଼ିଶାରେ ଗୋପବନ୍ଧୁ ଥିଲେ କଂଗ୍ରେସର ଅପ୍ରତିଦ୍ୱନ୍ଦ୍ୱୀ ନେତା । ଆପନ୍ନା ପରିଚ୍ଛାଙ୍କୁ ପାରଳାଖେମୁଣ୍ଡି ତଥା ଗଞ୍ଜାମ ଜିଲ୍ଲା କଂଗ୍ରେସ

କମିଟିର ସଦସ୍ୟଭାବେ ତା.୫.୩.୧୯୨୧ରିଖରେ ମନୋନୀତ କରାଗଲା । ଏଣିକି ପାରଳାଖେମୁଣ୍ଡି ଅଞ୍ଚଳରେ ଆପନ୍ନା ପରିଚ୍ଛାଙ୍କ ନେତୃତ୍ୱରେ କଂଗ୍ରେସର ସାଂଗଠନିକ କାର୍ଯ୍ୟ ଚାଲିଲା । ସେ ଗୋପବନ୍ଧୁଙ୍କ ନିକଟକୁ ଏକ ତାରବାର୍ତ୍ତା ପଠାଇ ପାରଳାଖେମୁଣ୍ଡିରୁ ୬୦ ଜଣ ଛାତ୍ର ଓ ଟେକେଲିରୁ ୧୫ ଜଣ ଛାତ୍ରଙ୍କ ନାମ ସୁପାରିଶ କରିଥିଲେ ସେମାନଙ୍କୁ କଂଗ୍ରେସର ସଦସ୍ୟଭୁକ୍ତ କରିବାକୁ । ଆପନ୍ନାଙ୍କ ଏହି ସୁପାରିଶ ତୁରନ୍ତ କାର୍ଯ୍ୟକାରୀ ହୋଇଥିଲା । ଗଞ୍ଜାମ ଜିଲ୍ଲାରେ ଛାତ୍ରମାନଙ୍କୁ ପ୍ରବର୍ତ୍ତାଇ ଜାତୀୟ କଂଗ୍ରେସରେ ସେମାନଙ୍କୁ ପ୍ରବେଶ କରାଇବା ସେ ସମୟରେ ଏକ ଅତୀବ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଥିଲା । ଜାତୀୟ କଂଗ୍ରେସ କାର୍ଯ୍ୟରେ ଅଧିକ ସମୟ ଦେବା ପାଇଁ ସେ ପାରଳାଖେମୁଣ୍ଡି ପୌର ପରିଷଦର ସଦସ୍ୟତା ତା.୧୦.୧୨.୧୯୨୧ ଠାରୁ ତ୍ୟାଗ କରିଦେଇଥିଲେ ।

ପାରଳାଖେମୁଣ୍ଡିରେ ସ୍ୱଦେଶୀ ଆନ୍ଦୋଳନର ଅୟମାରମ୍ଭ ହୋଇଥିଲା ତନ୍ତବସ୍ତ୍ର ଉତ୍ପାଦନରୁ । ପ୍ରଥମାବସ୍ଥାରେ ସେଥିପାଇଁ ଟ.୧୦,୦୦୦ ଅଂଶଧନ ସଂଗ୍ରହ କରି ଯୋଗାଇ ଦିଆଯାଇଥିବା ପୂର୍ବରୁ ଉଲ୍ଲେଖ କରାଯାଇଛି । ଆପନ୍ନା ପରିଚ୍ଛା କଂଗ୍ରେସରେ ସକ୍ରିୟ ହେବାପରେ ପାରଳା ଅଞ୍ଚଳର ପାଣ ଓ ଦେବାଙ୍ଗୁଲୁ ଜାତିର ଲୋକଙ୍କୁ ସଂଗଠିତ କଲେ । ପାରଳାଖେମୁଣ୍ଡିର ଗୋଟିଏ ଦୁଇଟି କରଣ ପରିବାର ମଧ୍ୟ ତେତେବେଳେ ଲୁଗାବୁଣି ଜୀବିକା ନିର୍ବାହ କରୁଥିଲେ । ପାଣମାନଙ୍କ ମଧ୍ୟରେ ବହୁତ ବୁଣାକାର ଥିଲେ । ସେହି ପାଣ ବୁଣାକାରମାନେ ଅତି ସୁନ୍ଦର ଗାମୁଛା, ଚଦର ଓ ଅନ୍ୟାନ୍ୟ ଲୁଗା ବୁଣୁଥିଲେ । ସମ୍ପୃକ୍ତ ତନ୍ତୁବାୟ ସମିତିଟି ୧୯୩୯ରେ ଆପନ୍ନାଙ୍କ ଦେହାବସାନ ଘଟିବା ପରେ ବନ୍ଦ ହୋଇଯାଇଥିଲା ।

୧୯୧୭ ଡିସେମ୍ବରରେ ହେଲା କଂଗ୍ରେସର କଲିକତା ମହାଧିବେଶନ । ଏଥିରେ ଆପନ୍ନା ପରିଚ୍ଛା ଯୋଗ ଦେଇଥିଲେ । ୧୯୨୩ ଡିସେମ୍ବରରେ ପରବର୍ତ୍ତୀ କଂଗ୍ରେସ ଅଧିବେଶନ କାକିନଡାରେ ବସିଲା । ଏଥିରେ ମଧ୍ୟ ଆପନ୍ନା ପରିଚ୍ଛା ଯୋଗ ଦେଇଥିଲେ । ଏ ଉଭୟ ଅଧିବେଶନରେ ଯୋଗଦାନ କରିବା ଖର୍ଚ୍ଚ ସେ ବ୍ୟକ୍ତିଗତ ଭାବେ ତୁଲାଇଛନ୍ତି ।

# ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ସହ ମତାନ୍ତର

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମାଡ୍ରାସରେ ଶିକ୍ଷା ସମାପ୍ତ କରିବା ପରେ ପାରଳାକୁ ପ୍ରତ୍ୟାବର୍ତ୍ତନ କଲେ ୧୯୧୩ରେ । ସେହି ବର୍ଷ ଏପ୍ରିଲ ୨୬ରେ ତାଙ୍କର ରାଜ୍ୟାଭିଷେକ ହେଲା । ପାରଳା ଫେରିବା ପୂର୍ବରୁ ନାଟକ ପ୍ରତି ତାଙ୍କର ପ୍ରବଳ ଆକର୍ଷଣ ଥିଲା । ନ୍ୟୁଇଙ୍ଗଟନ୍ କଲେଜରେ ଅଧ୍ୟୟନ କରୁଥିବା ଅବସରରେ ସେ କେତେକ ନାଟକରେ ଅଂଶଗ୍ରହଣ କରିଛନ୍ତି । ଏକ ସାଧୁ ଭୂମିକାରେ ସେ ଅଭିନୟ କରୁଥିବା ବେଳର ଫଟୋଚିତ୍ର ବର୍ତ୍ତମାନ ମଧ ଉପଲବ୍ଧ । ତେଣୁ ସେ ପାରଳାଖେମୁଣ୍ଡିକୁ ଫେରିବା ପରେ ନାଟକ ପ୍ରତି ତାଙ୍କ ଦୃଷ୍ଟି ସହଜରେ ଆକର୍ଷିତ ହୋଇଥିଲା । ନାଟକ ପ୍ରତି ତାଙ୍କର ଆକର୍ଷଣ ବଢ଼ିବାର ଅନ୍ୟ ଏକ କାରଣ ହେଲା ସେତେବେଳକୁ ପାରଳାଖେମୁଣ୍ଡି ନାଟ୍ୟକଳାରେ ବିଶେଷ ସୁଖ୍ୟାତି ଅର୍ଜନ କରିଥିଲା । ନାଟକ ରଚନା, ମଞ୍ଚ ଗଠନ ଓ ପରିଚାଳନା ଏବଂ ନାଟକ ପରିବେଷଣରେ ପାରଳାଖେମୁଣ୍ଡି ଥିଲା ପ୍ରାକୃତିକ ଓଡ଼ିଶାରେ ଅଗ୍ରଗଣ୍ୟ । ମହାରାଜାଙ୍କ ଆଗ୍ରହର ତୃତୀୟ କାରଣଟି ହେଲା ଆପନ୍ନା ଓ ତାଙ୍କ ଜ୍ୟେଷ୍ଠଭ୍ରାତା ନୀଳମଣି ଗଢ଼ିଥିବା ଅସ୍ଥାୟୀ ରଙ୍ଗମଞ୍ଚ ସ୍ଥାୟୀ ରୂପ ନେବା ପରେ ମହାରାଜାଙ୍କ ପିତୃବ୍ୟ ପଦ୍ମନାଭ ଦେବଙ୍କ ନାମରେ ନାମିତ ହୋଇ ସେଥିରେ ଓଡ଼ିଆ, ତେଲୁଗୁ, ସଂସ୍କୃତ ଇତ୍ୟାଦି ସମସ୍ତ ଭାଷାରେ ନାଟକ ମଞ୍ଚସ୍ଥ ହେଉଥିଲା । ପଦ୍ମନାଭ

ରଙ୍ଗାଳୟ ପ୍ରତି ମହାରାଜାଙ୍କ ଆଗ୍ରହର ଚତୁର୍ଥ କାରଣଟି ହେଲା, ତାଙ୍କ ପିତୃବ୍ୟଙ୍କ ନାମରେ ନାମିତ ନାଟକାଳୟଟି ଚଳାଇବାକୁ କରଜ କରିବାକୁ ପଡୁଥିଲା । ନାଟକ ପ୍ରତି ମହାରାଜାଙ୍କର ୫ମ ତଥା ଶେଷ କାରଣ, ଯାହା ଆମ ଦୃଷ୍ଟିକୁ ଆସିଛି, ତାହା ସର୍ବାଦୌ ଗୁରୁତ୍ୱପୂର୍ଣ୍ଣ । ସେହି କାରଣଟି ହେଲା, ମହାରାଜା ମାଡ୍ରାସରେ ପାଠ ପଢ଼ିବାବେଳେ ନିଜେ ଜଣେ ଅଭିନେତା ଥିଲେ । ସେ ସେଠିକାର ଆଧୁନିକ ରଙ୍ଗମଞ୍ଚର ପରିପାଟୀ ଦେଖିଥିଲେ । ପାରଳାଖେମୁଣ୍ଡିରେ ସେପରି ପ୍ରେକ୍ଷାଳୟ ନିର୍ମାଣ ପାଇଁ ତାଙ୍କ ମନରେ ଉତ୍କଣ୍ଠା ଜାତ ହୋଇଥିବା ସ୍ୱାଭାବିକ । ତେଣୁ ପଦ୍ମନାଭ ରଙ୍ଗାଳୟର ଆଧୁନିକୀକରଣ କରିବା ଇଚ୍ଛା ତାଙ୍କ ମଧ୍ୟରେ ବଳବତ୍ତର ହୋଇଥିଲା ।

ଉପର୍ଯ୍ୟୁକ୍ତ ସମସ୍ତ କାରଣ ତାଙ୍କ ମନ ଓ ହୃଦୟକୁ ଆନ୍ଦୋଳିତ କରୁଥିଲା । ସେ ଚାହୁଁଥିଲେ, ପଦ୍ମନାଭ ରଙ୍ଗାଳୟକୁ ପୁନଃନିର୍ମାଣ କରି ତାହାକୁ ଏକ ଆଧୁନିକ ତଥା ଆକର୍ଷଣୀୟ ରଙ୍ଗମଞ୍ଚରେ ପରିଣତ କରିବେ । ନିଜର ସ୍ୱତ୍ୱ ଓ ପରିଚାଳନାଧୀନ ରଖିଲେ ହିଁ ରଙ୍ଗାଳୟକୁ ଆଉ କରଜ କରିବାକୁ ପଡିବ ନାହିଁ ଓ ଏହା ଏକ ଅତ୍ୟାଧୁନିକ ରଙ୍ଗମଞ୍ଚର ରୂପ ନେବ ଭାବି, ରଙ୍ଗାଳୟର ସ୍ୱତ୍ୱାଧିକାର ନିଜ ଅଧୀନକୁ ନେବା ପାଇଁ, ସେ ନିଜର ଇଚ୍ଛା ବ୍ୟକ୍ତ କରିଥିବା ଅନୁମେୟ । ଦାୟିତ୍ୱ ନିଜେ ବୁଝିବା ଦୃହି ଦେଇ ରଙ୍ଗାଳୟର ଆଦ୍ୟ ଉଦ୍‌ଗାତା ଆପନ୍ନା ପରିଚ୍ଛାଙ୍କ ଗୁରୁତ୍ୱକୁ ଲଘୁ କରିଦେବାର କୌଣସି ଉଦ୍ଦେଶ୍ୟ ମହାରାଜାଙ୍କର ଥିବା ପରି ଆମକୁ ପ୍ରତୀତ ହେଉନାହିଁ । ମହାରାଜାଙ୍କର ଉଦ୍ଦେଶ୍ୟ ଯାହା ହୋଇଥାଉନା କାହିଁକି, ଆପନ୍ନା ପରିଚ୍ଛା ଏଥିରେ କ୍ଷୁବ୍‌ଧ ହୋଇଥିଲେ । ଏକଥା ନିଜ ଦିନଲିପିରେ "ନାଟକ ଭାଙ୍ଗିଯିବାର ଏହା ପୂର୍ବାଭାସ" ବୋଲି ସେ ଲେଖିଥିବା ମନ୍ତବ୍ୟରୁ ସ୍ପଷ୍ଟ ଭାବେ ବାରି ହେଉଛି ।

ଆପନ୍ନା ପରିଚ୍ଛା ଓ କୃଷ୍ଣଚନ୍ଦ୍ର ଗଜପତିଙ୍କ ମଧ୍ୟରେ ମତଭେଦର ପ୍ରଧାନ କାରଣ ଥିଲା ପଦ୍ମନାଭ ରଙ୍ଗାଳୟର ସ୍ୱତ୍ୱାଧିକାର ଓ ପରିଚାଳନାରେ ରାଜହସ୍ତକ୍ଷେପ ।

(୨) ସର୍ଭେଣ୍ଟସ୍ ଅଫ ଇଣ୍ଡିଆ ସୋସାଇଟିର ଓଡ଼ିଆ ସଦସ୍ୟ ଲକ୍ଷ୍ମୀନାରାୟଣ ସାହୁ House Rule ସମ୍ପର୍କରେ ମହାରାଜାଙ୍କୁ ତାଙ୍କ ରାଜବାଟୀରେ ସାକ୍ଷାତ କରିବାକୁ ଚାହିଁଥିଲେ । କିନ୍ତୁ ସମୟ ଅଭାବ ଆଳରେ ମହାରାଜା ତାଙ୍କୁ ସାକ୍ଷାତ ଦେଲେ ନାହିଁ । ଶ୍ରୀଯୁକ୍ତ ସାହୁ ଓଡ଼ିଶାର ଜଣେ ଲବ୍‌ଧ-ପ୍ରତିଷ୍ଠ ସମାଜସେବୀ । ସେ ରାଜାଙ୍କୁ ସାକ୍ଷାତ କରିବାରେ ବିଫଳ ମନୋରଥ ହୋଇ ଆପନ୍ନା ପରିଚ୍ଛାଙ୍କୁ ସାକ୍ଷାତ କଲେ । ଆପନ୍ନାଙ୍କ ସହ ତାଙ୍କର House Rule ଓ ଅନ୍ୟାନ୍ୟ ସାଂପ୍ରତିକ ବିଷୟରେ ଖୋଲା ଖୋଲି ଆଲୋଚନା ହୋଇଥିଲା ପରିଚ୍ଛା ମଠରେ । ଏକଥା ଅବଶ୍ୟ ରାଜଦୃଷ୍ଟିକୁ ଯାଇଥିବ ଓ ଏହା ମହାରାଜାଙ୍କୁ କ୍ଷୁବ୍‌ଧ କରିଥାଇପାରେ ।

(୩) ଆପନ୍ନା ପରିଚ୍ଛା କଲିକତା ଓ କାକିନଡାଠାରେ କଂଗ୍ରେସ ମହାଅଧିବେଶନରେ ଯୋଗ ଦେଇଥିଲେ । ମହାରାଜା କଂଗ୍ରେସ ଠାରୁ ଦୂରତ୍ୱ ରକ୍ଷା କରୁଥିଲେ । ଆପନ୍ନା ପରିଚ୍ଛା କଂଗ୍ରେସ କାର୍ଯ୍ୟକ୍ରମରେ ଅତ୍ୟଧିକ ସକ୍ରିୟ ଥିବାରୁ ତାହା କଦାଚ ମହାରାଜାଙ୍କୁ ଖୁସି କରି ନଥିବ ଓ ତେଣୁ ସେ ସେଥିପାଇଁ କ୍ଷୁବ୍ଧ ହୋଇଥିବେ ।

(୪) ୧୯୨୭ରେ ମହାତ୍ମା ଗାନ୍ଧୀ ଶ୍ରୀକାକୁଲମ୍ ଆସିଥିଲେ । ସେତେବେଳେ ତାଙ୍କୁ ପାରଳାଖେମୁଣ୍ଡିକୁ ଆଣି ଏକ ସାଧାରଣ ସଭା କରିବାରେ ଆପନ୍ନାଙ୍କର ମୁଖ୍ୟ ଭୂମିକା ଥିଲା । କାରଣ ସେତେବେଳକୁ ସେ ଗଞ୍ଜାମ କଂଗ୍ରେସ କମିଟିର ସଦସ୍ୟ ହୋଇସାରିଥିଲେ । ରାଜା ମହାତ୍ମା ଗାନ୍ଧୀଙ୍କୁ ବିରୋଧ କରିନାହାନ୍ତି କିମ୍ବା ସହଯୋଗ ମଧ କରିନାହାନ୍ତି । ଆପନ୍ନା ପରିଚ୍ଛା ଗାନ୍ଧୀଜୀଙ୍କ ଆଗମନ ସମ୍ପର୍କରେ ମହାରାଜାଙ୍କ ସହ ଆଦୌ ପରାମର୍ଶ କରିନାହାନ୍ତି । ତେଣୁ ଆପନ୍ନା ପରିଚ୍ଛାଙ୍କର ଏହା ଏକ ସ୍ପର୍ଦ୍ଧିତ ଆଚରଣ ବୋଲି ହୁଏତ ମହାରାଜା ବିବେଚନା କରିଥାଇପାରନ୍ତି ।

(୫) ମୁତୁସ୍ୱାମୀ ଆୟାର ନାମକ ଜଣେ ଅଧ୍ୟାପକ ରାଜାଙ୍କ କଲେଜରେ କାର୍ଯ୍ୟ କରୁଥିଲେ । ଆପନ୍ନାଙ୍କ ବିଚାରରେ ଉକ୍ତ ଅଧ୍ୟାପକଙ୍କ କାର୍ଯ୍ୟକଳାପ ସନ୍ତୋଷଜନକ ଥିଲା । ମହାରାଜା ମୁତୁସ୍ୱାମୀଙ୍କୁ କଲେଜରୁ ବିତାଡିତ କରିଦେଲେ । ଆପନ୍ନା ଏଥିରେ କ୍ଷୁବ୍ଧ ହୋଇ ତାଙ୍କ ଦିନଲିପିରେ ତା.୯.୨.୧୯୧୪ରେ "କଲେଜର ଭବିଷ୍ୟତ ଅନ୍ଧକାର" ବୋଲି ଉଲ୍ଲେଖ କରିଛନ୍ତି । ଆପନ୍ନାଙ୍କର ଏତାଦୃଶ ମନ୍ତବ୍ୟ ହୁଏତ ସେ ବାହାରେ ଯେ ଦେଇ ନଥିବେ ଏହାର ନିଶ୍ଚିତତା ନାହିଁ । ତେଣୁ ଏ କଥା ମହାରାଜାଙ୍କ କର୍ଣ୍ଣଗୋଚର ହୋଇଥାଇପାରେ ଓ ସେ ଏଥିରେ ଆପନ୍ନାଙ୍କ ଉପରେ ଅସନ୍ତୁଷ୍ଟ ହୋଇଥାଇ ପାରନ୍ତି ।

(୬) ଆପନ୍ନା ପରିଚ୍ଛା ପଦ୍ମନାଭ ରଙ୍ଗାଳୟ ବାବଦରେ ମହାରାଜାଙ୍କଠାରୁ କିଛି ଟଙ୍କା ପାଇବାର ଥିଲା । ଏହି ପ୍ରାପ୍ୟ ପାଇବା ପାଇଁ ସେ ତାଙ୍କୁ ବାରମ୍ବାର ସାକ୍ଷାତ କରି ବିଫଳ ହୋଇଥିଲେ । ଶେଷରେ ୧୯୧୬ ଅଗଷ୍ଟ ୧୬ ତାରିଖରେ ଆପନ୍ନା ଏ ସମ୍ପର୍କରେ ଏକ ପତ୍ର ମହାରାଜାଙ୍କୁ ଲେଖିଥିବା ଜଣାଯାଏ । ଆପନ୍ନା ପରିଚ୍ଛାଙ୍କର ସାଧୁତା ଯେତେ ଥାଉନା କାହିଁକି ମହାରାଜା ଏତାଦୃଶ କାର୍ଯ୍ୟକୁ ନିଶ୍ଚୟ ନାପସନ୍ଦ କରିଥିବେ । ଏଠି ସ୍ମରଣଯୋଗ୍ୟ ଯେ ମହାରାଜା ନାଟକ ବାବଦ ପ୍ରାପ୍ୟ ଆପନ୍ନାଙ୍କୁ ଦେବା ପାଇଁ ନାରାଜ ଥିବା ପୂର୍ବରୁ କେବେଁ ପ୍ରକାଶ କରିନାହାନ୍ତି । ସେତେବେଳେ ନିତ୍ୟାନନ୍ଦ ପଟ୍ଟନାୟକ ଜଣେ ଉଚ୍ଚପଦସ୍ଥ ରାଜକର୍ମଚାରୀ ଥିଲେ । ସେହି ଉଚ୍ଚାଧିକାରୀ ଜଣକ ମହାରାଜା ଓ

ଆପଣ୍ଣା ପରିଚ୍ଛା  ମଧ୍ୟରେ ସମ୍ପର୍କ ଯେପରି ବ୍ୟାହତ ହେବ ସେଥିପାଇଁ ଖୋରାକ ଯୋଗାଉଥିବା ଆପଣ୍ଣା ଆଶଙ୍କା କରିଛନ୍ତି ଅନେକବାର । ଏହା ଆପଣ୍ଣାଙ୍କ ତା.୪.୧୧.୧୯୧୬ରିଖର ଦିନଲିପିରୁ ବୁଝାପଡୁଛି । ଆପଣ୍ଣା ଉକ୍ତ ଦିନ ମନ୍ତବ୍ୟ ଦେଇଛନ୍ତି – "ନିତ୍ୟାନନ୍ଦ ରାଜାଙ୍କୁ ମୋତେ ଯେପରି ଅଧିକ ଗୋଳମାଳ ହେବ ସେପରି ଚେଷ୍ଟାରେ ଅଛନ୍ତି" । ପରିଶେଷରେ ମହାରାଜାଙ୍କ କଚିରିରୁ ନାଟକର ପ୍ରାପ୍ୟ ବାବଦରେ ଆପଣ୍ଣାଙ୍କ ନିକଟକୁ ଏକ ନକାରାତ୍ମକ ଉତ୍ତର ମିଳିଛି । ମହାରାଜାଙ୍କ ଉକ୍ତିକୁ ନାଟକ ସମିତି ଅନୁମୋଦନ ଦେଇଥିବାରୁ ଆପଣ୍ଣା ପରିଚ୍ଛା ବ୍ୟଥିତ ହୋଇଛନ୍ତି ।

(୭)  ରାଜନୀତି କ୍ଷେତ୍ରରେ ବିଶ୍ୱନାଥ ଦାସ ଓ ଶଶୀଭୂଷଣ ରଥ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ଜଣାଶୁଣା ବିରୋଧୀ । ଆପଣ୍ଣା ପରିଚ୍ଛା ଏକଥା ଜାଣି ସୁଦ୍ଧା ଉକ୍ତ ଦୁଇ ନେତାଙ୍କ ସହ କେବଳ ଘନିଷ୍ଠତା ରଖୁନଥିଲେ ସେମାନଙ୍କୁ ବିଭିନ୍ନ ନିର୍ବାଚନ ବେଳେ ସମର୍ଥନ ମଧ୍ୟ କରୁଥିଲେ ।  ୧୯୨୪ରେ ଗଞ୍ଜାମ ଜିଲ୍ଲାବୋର୍ଡ଼ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଶଶୀଭୂଷଣ ରଥଙ୍କୁ ସମର୍ଥନ କରି ଆପଣ୍ଣା ପରିଚ୍ଛା ପ୍ରଚାର କରୁଥିଲେ । ପାରଳା ମହାରାଜାଙ୍କ ଜାତୀୟ ଦଳର ପ୍ରାର୍ଥୀ ଏମ୍. ଭେଙ୍କଟେଶ୍ୱରଲୁ ଏହି ନିର୍ବାଚନରେ ପରାଜିତ ହୋଇଥିଲେ ।  ଆଦର୍ଶଗତ କାରଣରୁ ଏହା ହେଉଥିଲେ ସୁଦ୍ଧା ଏକଥା ମହାରାଜାଙ୍କୁ ଯେ ଅଶ୍ୱସ୍ତ କରିଥିବ ଏଥିରେ ସନ୍ଦେହ ନାହିଁ ।

(୮)  ୧୯୨୪ ଜୁନ୍ ୧୪ ତାରିଖରେ କଟକର ବିଚିତ୍ରାନନ୍ଦ ଦାସ, ଲକ୍ଷ୍ମୀଧର ମହାନ୍ତି ଓ ବ୍ରହ୍ମପୁରରୁ ଲିଙ୍ଗରାଜ ପାଣିଗ୍ରାହୀ ମହାରାଜାଙ୍କୁ ସାକ୍ଷାତ କରିବାକୁ ଆସିଥିଲେ । କେଜାଣି କାହିଁକି ମହାରାଜା ସେମାନଙ୍କୁ ସାକ୍ଷାତ ଦେଲେ ନାହିଁ ।  ଏହି ବିଶିଷ୍ଟ ଓଡ଼ିଆ ନେତାମାନେ ମହାରାଜାଙ୍କ ନେତୃତ୍ୱରେ ବିଶ୍ୱାସୀ ଥିଲେ ।  ତାଙ୍କ ସହ ଉତ୍ତମ ବୁଝାମଣା ରଖି ଦେଶ ମିଶ୍ରଣ କାର୍ଯ୍ୟରେ ଲାଗିଥିଲେ ।  କିନ୍ତୁ ସେଦିନ ଯେ ମହାରାଜା କେଉଁ କାରଣରୁ ସେମାନଙ୍କୁ ସାକ୍ଷାତ ଦେଲେ ନାହିଁ ତାହା ଏଯାଏଁ ଅନୁଦ୍‌ଘାଟିତ ରହିଛି । ଅନ୍ୟ ପକ୍ଷରେ ଆପଣ୍ଣା ପରିଚ୍ଛା ଉକ୍ତ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ନିଜ ମଠରେ ଆତିଥ୍ୟ ପ୍ରଦାନ କରି ସଂଗୀତ ଆସର ଦ୍ୱାରା ସେମାନଙ୍କ ମନୋରଞ୍ଜନ କରାଇଥିଲେ ।  ସେମାନଙ୍କ ସହ ଆପଣ୍ଣାଙ୍କର ଦେଶ ମିଶ୍ରଣ ସମ୍ପର୍କରେ ଏକାନ୍ତରେ ମତ ବିନିମୟ ହୋଇଥିଲା ।  ଏହିପରି କରିବା ଦ୍ୱାରା ଆପଣ୍ଣା ପରିଚ୍ଛା ଯେ ପ୍ରକାରାନ୍ତରେ ମହାରାଜାଙ୍କ ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରୁଥିଲେ ସେପରି ପ୍ରତୀତ ହେଉଅଛି ।

(୯)  ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ଭୂସଂସ୍କାର ସମ୍ପର୍କରେ ଏକ ଭିନ୍ନ ଆଦର୍ଶ ଥିଲା । ସେ ରୟତ ଆନ୍ଦୋଳନକୁ ପ୍ରୋତ୍ସାହିତ କରୁନଥିଲେ ।  କିନ୍ତୁ ନିଜେ

ରୟତମାନଙ୍କର ଉନ୍ନତି ପାଇଁ ଅନେକ କାର୍ଯ୍ୟ କରୁଥିଲେ । ଓଡ଼ିଶାର ସେ ଥିଲେ ପ୍ରଥମ ଜମିଦାର ଯେ କି ଭାଗଚାଷୀ ବା ରୟତଠାରୁ ଉତ୍ପାଦିତ ଫସଲରୁ ଭାଗ ଦାବି କରିବା ପ୍ରତିବଦଳରେ ଟଙ୍କା ପୈଠ ଦେବାର ସୁଯୋଗ ଦେଇଥିଲେ । କୃଷିର ଉନ୍ନତି ପାଇଁ ଜଳସେଚନର ବିଶେଷ ବ୍ୟବସ୍ଥାଠାରୁ ଆରମ୍ଭକରି ଉନ୍ନତ ପ୍ରଣାଳୀର ଚାଷ ନିଜେ କରି ଅନ୍ୟକୁ ପ୍ରୋତ୍ସାହିତ କରୁଥିଲେ । ଅନ୍ୟ ପକ୍ଷରେ ଆପନ୍ନା ପରିଛା ଭୂସଂସ୍କାର ପାଇଁ ଏକ ପ୍ରଗତିଶୀଳ ଆଇନର ସପକ୍ଷରେ ଥିଲେ । ନିଜେ ଜଣେ ଜମିଦାର ଥାଇ ମଧ୍ୟ ଆପନ୍ନା ଏପରି ଆତ୍ମଘାତୀ ଆଇନର ସପକ୍ଷରେ କାର୍ଯ୍ୟ କରିଥିବା ସମ୍ପର୍କରେ କାହାରି ଦ୍ୱିମତ ନାହିଁ । ସେତେବେଳେ ଗଞ୍ଜାମରେ ଜମିଦାର ବିରୋଧୀ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଆସ୍କାର ଜମିଦାର ହରିହର ପଣ୍ଡା ରଇତ ଆନ୍ଦୋଳନକୁ ପ୍ରକାରାନ୍ତରେ ସମର୍ଥନ କରୁଥିଲେ । ଆପନ୍ନା ପରିଛା ଏ କ୍ଷେତ୍ରରେ ହରିହରଙ୍କ ପଦାଙ୍କ ଅନୁସରଣ କରି ନିଜେ ନିଜକୁ ସମର୍ଥନ କରିବା ପ୍ରତିବଦଳରେ ସମଗ୍ର ରଇତ ଜାତିର ମଙ୍ଗଳ ପାଇଁ କାର୍ଯ୍ୟ କରୁଥିଲେ । ଏହି ଘଟଣାକୁ ପାରଳା ମହାରାଜାଙ୍କ ସହ ଆପନ୍ନାଙ୍କର ଆଦର୍ଶଗତ ମତଭେଦ ବୋଲି କୁହାଯାଇପାରେ ।

କେତେକ ଆଲୋଚକ ଆପନ୍ନାଙ୍କ ରୟତ ଆନ୍ଦୋଳନ ସମର୍ଥନ ଘଟଣାକୁ ମହାରାଜାଙ୍କ ସହ ଆପନ୍ନା ପରିଛାଙ୍କ ମତଭେଦର ଏହା ଏକମାତ୍ର କାରଣ ବୋଲି ଦର୍ଶାଇଛନ୍ତି । ଆମେ ସେମାନଙ୍କ ସହ ଏକମତ ନୋହୁଁ । ମତଭେଦର ଅନେକ କାରଣ ମଧ୍ୟରେ ଏହା ଅନ୍ୟତମ ବୋଲି ଆମେ ମତପୋଷଣ କରୁ ।

(୧୦) ୧୯୨୪ ଡିସେମ୍ବର ମାସରେ ପାରଳାଖେମୁଣ୍ଡି ପୌର ପରିଷଦର ନିର୍ବାଚନ ହୋଇଥିଲା । ପାରଳା ସାହି ୱାର୍ଡ଼ରୁ ବନମାଳୀ ବକ୍ସି ପ୍ରାର୍ଥୀ ହୋଇଥିଲେ । ତାଙ୍କ ପ୍ରାର୍ଥୀପତ୍ରରେ ଆପନ୍ନା ପରିଛା ଓ ତାଙ୍କ ଜ୍ୟେଷ୍ଠଭ୍ରାତା ପ୍ରସ୍ତାବକ ଓ ସମର୍ଥକ ଥିଲେ । ବକ୍ସିଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ ମହାରାଜାଙ୍କ ସମର୍ଥିତ ପ୍ରାର୍ଥୀ ହରିହର ରାଜଗୁରୁ । ଏଥିରୁ ସ୍ପଷ୍ଟ ହୁଏ ଯେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ସହ ଆପନ୍ନା ପରିଛାଙ୍କର ରାଜନୀତିକ କ୍ଷେତ୍ରରେ ସିଧାସଳଖ ମତଭିନ୍ନତା ଥିଲା ।

ଉପର୍ଯ୍ୟୁକ୍ତ ସମସ୍ତ ବିଷୟ ବିଚାରକୁ ନେଲେ ଜାଣିହୁଏ ଯେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ସହ ଆପନ୍ନା ପରିଛାଙ୍କର ମନାନ୍ତର ଆଦୌ ଘଟି ନାହିଁ । କେବଳ ମତାନ୍ତର ଘଟିଥିବା ମନେ ହେଉଛି । ଅଧିକନ୍ତୁ ଏହା ଆଦର୍ଶଗତ ବୈଭିନ୍ୟ ହେତୁ ହୋଇଥିବା ଅନୁମେୟ । ମହାରାଜାଙ୍କ ସହ ଆପନ୍ନାଙ୍କର ବ୍ୟକ୍ତିଗତ ମତଭେଦ ନଥିଲା କହିବାର

ନିର୍ଦ୍ଦିଷ୍ଟ କାରଣ ମଧ୍ୟ ଅଛି । ଆପନ୍ନା ପରିଚ୍ଛା 'ବିଜୟ ବସନ୍ତ' ନାଟକର ପ୍ରଣେତା । ଏ ନାଟକ ମୁଦ୍ରଣ ହେବାବେଳକୁ କୃଷ୍ଣଚନ୍ଦ୍ର ଗଜପତିଙ୍କ ସହ ତାଙ୍କର ମତଭେଦ ରଙ୍ଗାଳୟକୁ ନେଇ ଆରମ୍ଭ ହୋଇସାରିଥିଲା । ତଥାପି ମହାରାଜା ଆପନ୍ନା ପରିଚ୍ଛାଙ୍କର ଉପରୋକ୍ତ ପୁସ୍ତକର ମୁଦ୍ରଣର ବ୍ୟୟ ଭାର ବହନ କରିଥିଲେ ଓ ତାହା ପୁରୀର ଜଗନ୍ନାଥ ମୁଦ୍ରାଳୟରେ ଆପନ୍ନା ୧୯୧୬ରେ ମୁଦ୍ରଣ କରାଇଥିଲେ । ୧୯୧୬ ଜୁଲାଇ ୨୬ ତାରିଖ ଦିନ ଆପନ୍ନା ପରିଚ୍ଛାଙ୍କ ଅନୁରୋଧରେ ମହାରାଜା ଉକ୍ତ ପୁସ୍ତକର ମୁଦ୍ରଣ ବିଲ୍ ୬୮ ଟଙ୍କା ସମ୍ବନ୍ଧ ବକେୟା ବିଲ୍ ୩୮ ଟଙ୍କା ପୈଠ କରିଦେଇଥିଲେ । ଏତିକିବେଳକୁ ମହାରାଜାଙ୍କ ସହ ମତଭେଦ ହେତୁ ଆପନ୍ନା ପରିଚ୍ଛା ପଦ୍ମନାଭ ରଙ୍ଗାଳୟରୁ ସ୍ୱତଃ ଅପସରି ଯାଇଥିଲେ । ତେଣୁ ମହାରଜାଙ୍କ ସହ ମନାନ୍ତର ଥିଲେ ସ୍ୱାଭିମାନୀ ଆପନ୍ନା ପରିଚ୍ଛା କଦାପି ନିଜ ପୁସ୍ତକ ମୁଦ୍ରଣ ଖର୍ଚ୍ଚ ପାଇଁ ମହାରାଜାଙ୍କ ଦ୍ୱାରସ୍ଥ ହୋଇନଥାନ୍ତେ । ମତାନ୍ତର ବା ମନାନ୍ତର କଥା ବିଚାର କଲାବେଳେ ଅନ୍ୟ ଏକ ଘଟଣା ନଜରକୁ ଆସେ । ସେହି ଘଟଣାଟି ହେଉଛି କୃଷ୍ଣଚନ୍ଦ୍ର ଗଜପତି ନିଜ ଆଡୁ ଖବର ଦେଇ ପରିଚ୍ଛା ମଠକୁ ଆସି ଆପନ୍ନା ପରିଚ୍ଛାଙ୍କ ନିର୍ଦ୍ଦେଶିତ ନାଟକ ଦେଖି ପ୍ରଶଂସା କରିବା । ମହାରାଜା କୃଷ୍ଣଚନ୍ଦ୍ର ଓ ଆପନ୍ନା ପରିଚ୍ଛା ଉଭୟ ଥିଲେ ଅତ୍ୟନ୍ତ ଉଦାର ଓ ଆଦର୍ଶବାଦୀ । ଏମାନଙ୍କର ଲକ୍ଷ୍ୟ ଥିଲା ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସହ ଓଡ଼ିଆ ଭାଷା, ସାହିତ୍ୟ ସଂସ୍କୃତିର ଉନ୍ନତି ତଥା ଆର୍ଥିକ ପ୍ରଗତି । ଏକ ଲକ୍ଷ୍ୟରେ ଉଭୟ କାର୍ଯ୍ୟ କରିବା ବେଳେ ଆଦର୍ଶଗତ ଅସମତାକୁ ସେମାନେ ସାମନା କରିବାକୁ ପଡିଛି, ଯାହା ଫଳରେ ଉଭୟଙ୍କ ମଧ୍ୟରେ ମତ ପାର୍ଥକ୍ୟ ହୋଇଛି ମାତ୍ର । ମତ ପାର୍ଥକ୍ୟର ସରଳ ସମାଧାନ ମଧ୍ୟ ଉଭୟ ଜାଣିଥିଲେ । ତା' ନ ହୋଇଥିଲେ ପଦ୍ମନାଭ ରଙ୍ଗାଳୟକୁ କେନ୍ଦ୍ର କରି ଉଭୟଙ୍କ ମଧ୍ୟରେ ଯେଉଁ ମତାନୈକ୍ୟ ଘଟିଥିଲା ତାହାର ସମାଧାନ ସେମାନେ ବିନା ମଧ୍ୟସ୍ଥିରେ କରିପାରି ନଥାନ୍ତେ ।

## ସାରସ୍ୱତ ସାଧକ ଆପନ୍ନା ପରିଚ୍ଛା

ଆପନ୍ନା ପରିଚ୍ଛାକୃତ ପୁସ୍ତକମାନଙ୍କ ମଧ୍ୟରୁ ଏକମାତ୍ର 'ବିଜୟ ବସନ୍ତ' ନାଟକ ପ୍ରକାଶ ଲାଭ କରିଛି । ଏହି ପୁସ୍ତକର ରଚନା କାଳ ୧୯୦୦ ଖ୍ରୀଷ୍ଟାବ୍ଦରୁ ୧୯୧୩ ମଧ୍ୟରେ । ଏହା ପଦ୍ମନାଭ ରଙ୍ଗାଳୟରେ ଅନେକବାର ଅଭିନୀତ ହୋଇଥିବା ନିଜେ ନାଟ୍ୟକାର ଟିପ୍ପଣୀ କରିଛନ୍ତି ମୁଦ୍ରିତ ପୁସ୍ତକର ଉପୋଦ୍‌ଘାତରେ । କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଆର୍ଥିକ ସହାୟତାରେ ନାଟ୍ୟକାର ନିଜେ ଏହାର ପ୍ରକାଶକ । ପାତ୍ର ବିଚାରରେ ଏହି ନାଟକଟି ଐତିହାସିକ ମନେ ହେଉଥିଲେ ସୁଦ୍ଧା ଏହା ଏକ ସମାଜଧର୍ମୀ ନାଟକ । ଅପ୍ରକାଶିତ ନାଟକ ମଧ୍ୟରୁ ମାତ୍ର ଦୁଇଗୋଟିର ପାଣ୍ଡୁଲିପି ବର୍ତ୍ତମାନ ପରିଚ୍ଛା ପରିବାରର ଦାୟଦ ମୁରଲୀଧରଙ୍କ ନିକଟରେ ଅଛି । ତନ୍ମଧ୍ୟରୁ 'ଗୋଷ୍ଠ ମିଳନ' ନାଟକଟି ଭକ୍ତି ରସାଶ୍ରିତ । ଏଥିରେ ନାଟ୍ୟକାର ରାଧାକୃଷ୍ଣଙ୍କ ପ୍ରଣୟ କାହାଣୀରୁ କିଂଚିତ୍ ଆଭାସ ଦେବା ସହ ଏହାକୁ କାବ୍ୟ ରସୋତ୍ତୀର୍ଣ୍ଣ କରିବାରେ ସମର୍ଥ ହୋଇଛନ୍ତି ।

ଉପଲବ୍‌ଧ ଅନ୍ୟ ଏକ ପାଣ୍ଡୁଲିପିର ନାମ 'ନବଲୀଳା ବିଳାସ' । ଏହା ମଧ୍ୟ ଏକ ବୈଷ୍ଣବ କାବ୍ୟ ରସାଶ୍ରିତ କ୍ଷୁଦ୍ର ନାଟକ । ଏଥିରେ ଦେହ ସହ ଦେହାତୀତର ମିଳନ ପୂର୍ବ ଉତ୍କଣ୍ଠା ଭରି ରହିଛି ।

ଅନ୍ୟାନ୍ୟ ଅପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ ଅଛି 'ଶ୍ରୀରାସ ଲୀଳା' । ଏହା ଏକ ଆଲୋଚନା ପୁସ୍ତକ । ନାମକରଣରୁ ଏହା ଏକ ଲୀଳା ପରି ପ୍ରତୀତ ହେଉଥିଲେ ମଧ୍ୟ ଏହା ଲୀଳା ନୁହେଁ । ଏଥିରେ ଲୀଳା ଅଭିନୟ ଯୋଗ୍ୟତା ନାହିଁ । କେବଳ ଆଲୋଚନାମୂଳକ ଏହି ପୁସ୍ତକଟି ଅସମ୍ପୂର୍ଣ୍ଣ ରହିଥିବା ମନେହୁଏ । ଭଗବତ୍ ଲୀଳାର ଅନେକ ଗୂଢ଼ ଅର୍ଥ ଏଥିରେ ସନ୍ନିବେଶିତ । ସାଧନା ଓ ସାଧକ ଜ୍ଞାନୀ କର୍ମୀ ଓ ଭକ୍ତ ସମେତ ସକାମ ଓ ନିଷ୍କାମ କର୍ମ ସଂପର୍କରେ କେତେକ ବ୍ୟାଖ୍ୟାନର ପୁଷ୍କଳ ବର୍ଣ୍ଣନାକୁ ନେଇ ପୁସ୍ତକଟି ପରିପୁଷ୍ଟ ।

ନାମକରଣ କରାଯାଇ ନଥିବା ଏକ ପାଣ୍ଡୁଲିପି ପରିଛା ପରିବାରରୁ ମିଳୁଛି, ଯାହାକୁ ସେମାନେ ଆପନ୍ନା ପରିଛାଙ୍କ ରଚନା ବୋଲି କହୁଛନ୍ତି । 'ଶ୍ରୀ ରସିକରାଜ ଶରଣ'ରୁ ଲେଖା ଆରମ୍ଭ ହୋଇଛି । ଏଥିରେ ଅନେକ ଭକ୍ତିଗୀତ ସନ୍ନିବେଶିତ । ଗୋପାଳକୃଷ୍ଣଙ୍କ ଗୀତ ପ୍ରତିରେ ଅଧିକାଂଶ ଗୀତର ଅଙ୍ଗସଜ୍ଜା ହୋଇଛି । ତେବେ ସେଥିରୁ କେତେକ ଗୀତି କବିତା ଗୀତ ଗୋବିନ୍ଦ ଅନୁସରଣରେ ଓଡ଼ିଆରେ ଲେଖା ହୋଇଛି । ଯଥା —

"ମଦନ ମନୋହର କେଳି କଳାପର ରାସ ରସିକ ବନମାଳୀ
ସରସିତ ବଦନା ବ୍ରଜକୁଳ ଲଳନା ମତ୍ତ ବିରଚି ଜନକେଳି ।"

ଏହା ପ୍ରକୃତରେ ଆପନ୍ନା ପରିଛାଙ୍କ ରଚନା କି ନା ଜାଣିବା କଷ୍ଟସାଧ୍ୟ । ତଥାପି ପରିଛା ପରିବାରର ଇଷ୍ଟ ରସିକରାଜଙ୍କ ନାମରୁ ରଚନାଟି ଆରମ୍ଭ ହୋଇଥିବାରୁ ଏହାର ରଚୟିତା ଆପନ୍ନା ପରିଛା ବୋଲି ତାଙ୍କ ପରିବାର ବିଶ୍ୱାସ କରୁଛି ।

ଏତଦ୍‌ବ୍ୟତୀତ ଚନ୍ଦ୍ର ହାସ, ସନ୍ଧି ଉପସନ୍ଧି, ଚଞ୍ଚଳାକୁମାରୀ, କନୌଜକୁମାରୀ, ହେମଚନ୍ଦ୍ର, ସ୍ୱର୍ଣ୍ଣଲତା, ହେମଲତା ପ୍ରଭୃତି ଐତିହାସିକ ଏବଂ ସୀତା ବନବାସ, ବିଲ୍ୱମଙ୍ଗଳ, ମାନଭଞ୍ଜନ, ରାଧାକୃଷ୍ଣ ପ୍ରଣୟ ଓ ରଘୁନାଥୋପାଖ୍ୟାନ ପ୍ରଭୃତି ପୌରାଣିକ ନାଟକର ସ୍ରଷ୍ଟା ଆପନ୍ନା ପରିଛା ବୋଲି ବିଭିନ୍ନ ଲେଖକଙ୍କର ଆଲୋଚନା ପ୍ରବନ୍ଧମାନଙ୍କରୁ ଜଣାଯାଏ ।

ସେ ଲେଖିଥିବା ଉପଲବ୍ଧ ପୁସ୍ତକଗୁଡ଼ିକ ମଧ୍ୟରୁ ଗୋଟିଏକୁ ବାଦ ଦେଲେ ଅନ୍ୟ ସବୁ ମଞ୍ଚୋପଯୋଗୀ ନାଟକ ଅଥବା ଲୀଳା । ତେବେ ସବୁଥିରେ ଗେୟ କବିତାମାନ ସନ୍ନିବେଶିତ ହୋଇଛି । ତେଣୁ ଆପନ୍ନା ପରିଛା ଏକାଧାରରେ ଜଣେ ନାଟ୍ୟକାର ତଥା ଗୀତିକାର ଥିଲେ ବୋଲି ବୁଝିବାକୁ ହେବ । ଆଲୋଚନା ସାହିତ୍ୟରେ ମଧ୍ୟ ତାଙ୍କର

ପ୍ରବେଶ ଥିବା ତାଙ୍କର ଏକ ପାଣ୍ଡୁଲିପିରୁ ପ୍ରମାଣ ମିଳୁଛି । ପାରଳାଖେମୁଣ୍ଡିରେ ନୂତନ ପୀଢ଼ିର ନାଟ୍ୟକାର ପଦ୍ମନାଭ ଦେବ ଓ ଗୋପୀନାଥ ନନ୍ଦଙ୍କ ପରେ ୩ୟ ନାଟ୍ୟକାର ହେଉଛନ୍ତି ଆପନ୍ନା ପରିଚ୍ଛା । ଏହିମାନେ ହିଁ ମଞ୍ଚୋପଯୋଗୀ ନାଟକମାନ ରଚନା କରି ଯଶସ୍ୱୀ ହୋଇଛନ୍ତି । ଏହି ଆଲୋଚନାର ପରିସରକୁ ଆମେ ଆଦି ନାଟ୍ୟକାର ରଘୁନାଥ ପରିଚ୍ଛାଙ୍କୁ ଆଣି ନାହୁଁ । ଆପନ୍ନା ପରିଚ୍ଛାଙ୍କ ସମସ୍ତ ନାଟକର ଅଧିକାଂଶ ଦୃଶ୍ୟରେ ସଂଗୀତ ସଂଯୋଜନା ଦେଖିବାକୁ ମିଳେ । ଧାତୁ ଓ ମାତୁର ସମାହାର ସହ ପ୍ରତ୍ୟେକ ସଂଗୀତ ରାଗାଧାରିତ । ଏଥିରୁ ଅନୁମିତ ହୁଏ ଯେ ତାଙ୍କର ସଂଗୀତ ଶାସ୍ତ୍ରରେ ମଧ୍ୟ ନିପୁଣତା ଥିଲା । ଅନେକ ସମୟରେ ସେ ନାଟୁଆ ପିଲାମାନଙ୍କୁ ନେଇ ପାରଳାର ବୃନ୍ଦାବନ ତୋଟାକୁ ଯାଉଥିଲେ ଓ ସେଠାରେ ଥିବା ବସନ୍ତ ନିବାସରେ ସେ ପାଟଦେଓ ଓ ମହାରାଜାଙ୍କ ମନୋରଞ୍ଜନ ପାଇଁ ସଙ୍ଗୀତ ଆସରମାନ କରୁଥିଲେ । ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି ପଞ୍ଚସଖାଙ୍କ ମଧ୍ୟରୁ ଯିଏ ଯେତେବେଳେ ପରିଚ୍ଛା ମଠକୁ ଆସିଛନ୍ତି ସମସ୍ତେ ଆପନ୍ନାଙ୍କ ସଙ୍ଗୀତ ପିଲାଙ୍କଠାରୁ ସଙ୍ଗୀତ ଶୁଣି ମୁଗ୍ଧ ହୋଇଛନ୍ତି । ଯାହା ଜଣାପଡୁଛି, ଆପନ୍ନାଙ୍କର ରାଗ ତାଳ ଉପରେ ଗଭୀର ଜ୍ଞାନ ଥିଲା । ତଥାପି ସେ ଜଣେ ସଙ୍ଗୀତ ଶିକ୍ଷକଙ୍କୁ ତାଙ୍କ ମଠରେ ରଖାଇ ନାଟକ ଦଳର ପିଲାମାନଙ୍କୁ ନିୟମିତ ଭାବେ ସଙ୍ଗୀତ ଶିକ୍ଷା ଦେଉଥିଲେ ।

# ପାରଳାର ମାଦଳାପାଞ୍ଜି ଆପନ୍ନା ପରିଚ୍ଛାଙ୍କ ଦିନଲିପି

ଦୈନନ୍ଦିନ ଘଟଣାକୁ ଲିପିବଦ୍ଧ କରିବା କେତେକ ଶିକ୍ଷିତ ବ୍ୟକ୍ତିଙ୍କର ଏକ ରୁଚି । ସାଧାରଣତଃ ନିଜେ କରିଥିବା, ନିଜେ ସମ୍ପୃକ୍ତ ଥିବା ତଥା ଅନ୍ୟାନ୍ୟ ବିଶେଷ ଘଟଣାମାନ ଦିନଲିପିରେ ଲିପିବଦ୍ଧ କରାଯାଏ । ଏ ଲେଖକ ଆପନ୍ନା ପରିଚ୍ଛାଙ୍କ ୧୮ ବର୍ଷର ଦିନଲିପିକୁ ସମ୍ପୂର୍ଣ୍ଣ ଅଧ୍ୟୟନ କରିଛି । ଏହିସବୁ ଦିନଲିପି ଇତିହାସ ଲେଖିବା ପାଇଁ ଅତ୍ୟନ୍ତ ମୂଲ୍ୟବାନ ସାକ୍ଷ ପ୍ରଦାନ କରିବ ।

ଆପନ୍ନା ପରିଚ୍ଛାଙ୍କ ଦିନଲିପିକୁ ପାରଳାଖେମୁଣ୍ଡିର ମାଦଳା ପାଞ୍ଜି ବୋଲି କହିବା ହିଁ ତା'ର ଯଥାର୍ଥ ମୂଲ୍ୟାୟନ ହେବ । ସମାଜ ଉପଯୋଗୀ ନିଜର ଦୈନନ୍ଦିନ ସମସ୍ତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଓ ଘଟଣା ସହ ସେ ପାରଳାଖେମୁଣ୍ଡି ରାଜ ନଅରରେ କେଉଁ ଦିନ କି କି ବିଶେଷ ଘଟଣା ଘଟିଛି, ତାହା ପ୍ରାଞ୍ଜଳ ଭାବେ ନିଜ ଦିନଲିପିରେ ଲିପିବଦ୍ଧ କରିଛନ୍ତି । ଏହା ବାଦ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ସମସ୍ତ ଉଲ୍ଲେଖନୀୟ କାର୍ଯ୍ୟ ଓ ଗସ୍ତକ୍ରମ ମଧ୍ୟ ସେ ଦିନଲିପିରେ ଲେଖି ଯାଇଛନ୍ତି । ପାରଳାଖେମୁଣ୍ଡିକୁ କୌଣସି ବିଶେଷ କାର୍ଯ୍ୟରେ ଆସିଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ କାର୍ଯ୍ୟ ବିବରଣୀ ମଧ୍ୟ ତାଙ୍କ ଦିନଲିପିରେ ଉଲ୍ଲେଖ ଥିବା ଦେଖିବାକୁ ମିଳେ । ଆପନ୍ନା ପରିଚ୍ଛା ନିଜ ଦିନଲିପିରେ ନିଜର ପାରିବାରିକ କଥା କ୍ୱଚିତ୍ ଲେଖିଛନ୍ତି ।

ଆପନ୍ନା ପରିଚ୍ଛାଙ୍କ ଦିନଲିପିର ଉପଯୁକ୍ତ ମୂଲ୍ୟାୟନ କରିବାକୁ ହେଲେ ସେ ଉଲ୍ଲେଖ କରିଥିବା କେତେକ ବିଶେଷ ଘଟଣା ସହ ସମ୍ପୃକ୍ତ ଦିନର ବିବରଣୀ ଏଠାରେ ଉଦ୍ଧୃତ କରିବା ସମୀଚୀନ ।

| ତାରିଖ | | ଲିପିବଦ୍ଧ ବିବରଣୀ |
|---|---|---|
| ୩୦.୩.୧୯୦୮ | - | General body of Weaving Co. held. The capital was raised to Rs.25,000/-. |
| ୨୧.୪.୧୯୦୮ | - | Cholera death |
| ୩୦.୪.୧୯୦୮ | - | 16th year of Patta Deo completed. |
| ୬.୫.୧୯୦୮ | - | Annual anniversary of grand father. |
| ୭.୫.୧୯୦୮ | - | କରଣ ସାହିର ଗୋସେଇଁ ବଜାରରେ ହନୁମାନଙ୍କୁ ସ୍ଥାପନ କଲେ । ପ୍ରତିଷ୍ଠା କଲେ । (ମଠର ମହନ୍ତଙ୍କୁ ଗୋସେଇଁ କହନ୍ତି) |
| ୧୫.୫.୧୯୦୮ | - | Anniversary of prayer samaj at Bishnu Das temple, Big brahmin street. |
| ୫.୬.୧୯୦୮ | - | A petition to Collector by Oriya public to appoint some Oriya teacher at Raja's college. |
| ୪.୭.୧୯୦୮ | - | Dana pariksya Natak performed. |
| ୧୦.୭.୧୯୦୮ | - | End of Car festival. Patta Deo and old Maharaja visited. A quarrel between big brahmin street people and Raja's street people. |
| ୫.୯.୧୯୦୮ | - | The only sister I lost today. |
| ୨୪.୯.୧୯୦୮ | - | Rehearsal of Oriya drama of the college Oriya students. |
| ୨୬.୯.୧୯୦୮ | - | English drama Richard III. |
| ୨୬.୯.୧୯୦୮ | - | Exhibition opened at college. |
| ୭.୧୧.୧୯୦୮ | - | 10th anniversary of Baishnabanandadaini Sabha. |

୨୫.୧୨.୧୯୦୮ - Started from Paralakhemundi with dramatic Co. and arrived at Cuttack station at 12 O'clock.

୨୮.୧୨.୧୯୦୮ - Performance of Chandrabati at Cuttack.

୩୦.୧୨.୧୯୦୮ - Padmavati Natak. Trunk of Ranga Naikulu stollen.

୨.୬.୧୯୧୩ - ମହାରାଜା ଘୋଡାସବାର କରି ଯାଉଥିବା ବେଳେ ଘୋଡା ଉନ୍ମତ୍ତ ହେବାରୁ ଆଘାତପ୍ରାପ୍ତ ହେଲେ । ଜ୍ଞାନଶୂନ୍ୟ ହୋଇପଡିଲେ । ଘୋଡା ଖାଲରେ ପଡି ପଞ୍ଚତ୍ୱ ପ୍ରାପ୍ତ ହେଲା ।

୧୦.୬.୧୯୧୩ - କଲେଜ ଉନ୍ନତି ପାଇଁ ଅନ୍ୟମାନଙ୍କ ସହ ମିଶି ରାଜାଙ୍କ ସହ ଆଲୋଚନା ।

୩.୮.୧୯୧୩ - ଉତ୍କଳ ଜ୍ଞାନ ବିବର୍ଦ୍ଧିନୀ ସଭାରେ ବିଜ୍ଞାନ ସମ୍ବନ୍ଧେ ଓ ଇଂରାଜୀ ଉପନ୍ୟାସ ସମ୍ବନ୍ଧେ ଆଲୋଚନା ।

୨୫.୮.୧୯୧୩ - Tennis of India କାଗଜ ଉତ୍କଳ ହିତୈଷିଣୀ ସମାଜ ମଗାଇଥିଲା ।

୧୨.୧୨.୧୯୧୩ - Lord Pentland ଗଭର୍ଣ୍ଣର ମାନ୍ଦ୍ରାଜରୁ ଆସିଥିଲେ । ହାଟ କୁମ୍ଭାର ସାହିରେ ବସିଲେ । କଲେଜରେ ଦର୍ବାର ହୋଇଥିଲା । ରାତି ୯ଟାରେ ଦର୍ବାର ହଲ୍‌ରେ ସଭା ।

୨୨.୧.୧୯୧୩ - ମହାରାଜାଙ୍କ ମାଙ୍ଗଳିକ ବିଧାନ ।
ଫେବୃୟାରୀ ୪ରେ ଓଡ଼ିଆ ନାଟକ ପାଇଁ ଆଜ୍ଞା ପ୍ରଦାନ ।

୨୪.୧.୧୯୧୩ - ମହାରାଜାଙ୍କ ମଙ୍ଗଳକୃତ୍ୟ ।

୩୧.୧.୧୯୧୩ - ମହାରାଜାଙ୍କ ବିବାହ ଫେରନ୍ତା ରୋଷଣି - ଷ୍ଟେସନରୁ ଟେଲର ରାସ୍ତାରେ କଲେଜ ଦେଇ ପେଲେସ୍ ଷ୍ଟ୍ରିଟ୍ ।

୨.୨.୧୯୧୩ - ଘେରି ଘେରି ଡ୍ରାମା ।

୩.୨.୧୯୧୩ - ତେଲୁଗୁ ଡ୍ରାମା । ରାଜା ଆସି ନାହାନ୍ତି ।

୪.୨.୧୯୧୩ - ଉଷା ପରିଣୟ । ପାରଳା, ମଞ୍ଜୁଷା, ସୁରଙ୍ଗୀ, ବୁଢ଼ାରସିଂ ରାଜା ଦର୍ଶକ ।

୫.୨.୧୯୧୩ - ବିଜୟ ବସନ୍ତ ନାଟକ (ଅନ୍ୟ ରାଜା ମାନଙ୍କ ସହ) ନନ୍ଦିଗାଁ ଓ ଖଲ୍ଲିକୋଟ ରାଜା ଦର୍ଶକ ।

୬.୨.୧୯୧୩ - ହେମଲତା ସାମାଜିକ ନାଟକ - ଶ୍ରୀବତ୍ସ ପଣ୍ଡା ଦର୍ଶକ ।

୮.୨.୧୯୧୩ - ବଡ଼ଖେମୁଣ୍ଡି ରାଜାଙ୍କ ଆଗମନ - ପୁଣି ବିଜୟ ବସନ୍ତ ନାଟକ ।

୨୩.୨.୧୯୧୩ - ଉଷା ପରିଣୟ ନାଟକ - ଚନ୍ଦ୍ର ମହାରାଜାଙ୍କ ଦିନ ଉପଲକ୍ଷେ ।

୨୫.୨.୧୯୧୩ - ଚନ୍ଦ୍ର ମହାରାଜାଙ୍କ ଧ୍ରୁବ ନାଟକ ପୁନଃ ମୁଦ୍ରଣ । ଅପ୍ରକାଶିତ ନାଟକର ମୁଦ୍ରଣ ପାଇଁ ରାଜାଙ୍କୁ ପରାମର୍ଶ ଓ ରାଜାଙ୍କ ସମ୍ମତି ।

୮.୩.୧୯୧୩ - ପ୍ରେମାନନ୍ଦ ଭାରତୀଙ୍କ ଆଗମନ । କୃଷ୍ଣ ଚରିତର ବର୍ଣ୍ଣନା ।

୬.୧.୧୯୧୫ - ପାରଳାର ଛାତ୍ରମାନେ ମାନ୍ଦ୍ରାସରେ Junior Cricket Cup ଜିଣିଲେ । ମହାରାଜା ନିଜେ କ୍ରିକେଟ ଦଳ ସହ ମାନ୍ଦ୍ରାସ ଯାଇଥିଲେ । ଆଜି ରେଳରେ ଫେରିଲେ ।

୨୦.୧.୧୯୧୫ - ମୁଁ ବଡ ମଠର ଅଧିକାରୀ କାର୍ଯ୍ୟ ଆରମ୍ଭ କରିଅଛି ।

୨୧.୧.୧୯୧୫ - ମୁକ୍ତାପୁର ଜ୍ଞାନ ବିବର୍ଦ୍ଧିନୀ ସମାଜକୁ ବାର୍ଷିକ ୧ ଟଙ୍କା ଚାନ୍ଦା ।

୨୮.୩.୧୯୧୫ - ବିଶ୍ୱଯୁବକୁ ଡାକ୍ତର ପଠାଇବାକୁ ଚାନ୍ଦା ସଂଗ୍ରହ ପାଇଁ ମହାରାଜା ଓ ମହନ୍ତଙ୍କ ସହ ଆଲୋଚନା ।

୨୮, ୨୯.୬.୧୯୧୫ - ଓଡ଼ିଆ ପିଲାଙ୍କ ଦରଖାସ୍ତ ଆଗରୁ ପାଇ ସୁଦ୍ଧା କଲେଜରେ ସେମାନଙ୍କୁ ପ୍ରବେଶ ନ କରାଇ ତେଲୁଗୁ ପିଲାଙ୍କୁ ପ୍ରବେଶ କରାଇ ଥିବାରୁ ରାଜାଙ୍କଠାରେ ଆବେଦନ ।

୩୦.୬.୧୯୧୫ - ଓଡ଼ିଆ ପିଲାଙ୍କୁ ପ୍ରବେଶ କରାଗଲା କଲେଜରେ ।

୧୫.୯.୧୯୧୫ - ମହନ୍ତ ମହାରାଜ ରାଜାଙ୍କ ତରଫରୁ ନାଟକ କଥା ବୁଝିବେ ଓ ଆପନ୍ନାଙ୍କୁ ବଡ ମଠ ଅଧିକାରୀ ପଦରୁ ଅନ୍ତର କରିବାର ନିଷ୍ପତ୍ତି ବୋଲି ଜନରବ ।

୧୧.୧୦.୧୯୧୫ - ଆଜି ନାଟକ ସମ୍ବନ୍ଧ ଜିନିଷ ନଅରକୁ ନିଆ ହୋଇଗଲା ।

୯.୨.୧୯୧୪ - ମୁତୁ ସ୍ୱାମୀ ଆୟାରଙ୍କୁ କଲେଜରୁ ବିତାଡନ ।

୧୧.୨.୧୯୧୪ - ପ୍ରାତଃ ୮ଟାରେ ମହାରାଜା ନାଟକଶାଳାକୁ ଇଂଜିନିୟରଙ୍କ ସହ ଆସି କାର୍ଯ୍ୟାରମ୍ଭ କରିବାକୁ କହିଲେ ।

୧୫.୨.୧୯୧୪ - ଗଞ୍ଜାମ ମିଶ୍ରଣ ସମ୍ବନ୍ଧେ ଆନ୍ଦୋଳନ କରିବାକୁ ହରିହର ପଣ୍ଡାଙ୍କୁ ପତ୍ର ପ୍ରେରଣ କରିବା ।

୧.୩.୧୯୧୪ - ମହାରାଜା ମହନ୍ତଙ୍କୁ ଟ.୧୮,୦୦୦ (ଆଜି ଶତକଡା ୫ ସୁଧରେ ଋଣ ଦେବା)

୨୦.୩.୧୯୧୪ - ଲିଙ୍ଗରାଜ ପାଣିଗ୍ରାହୀ ଆସିଥିଲେ । ତାଙ୍କ ସହ ବିଦ୍ୟା ସାହିତ୍ୟ, ଭାଷା, ନାଟକ, ସଙ୍ଗୀତ ଓ ଆଶା ସାହିତ୍ୟ ବିଷୟରେ ଆଲୋଚନା ।

୩୦.୪.୧୯୧୪ - ଭବକୃଷ୍ଣ ଦ୍ୱୈପାୟନ ରାଓଙ୍କ ପରଲୋକ ।

୧୦.୫.୧୯୧୪ - କୁରୁଦାରୁ ସୁନାତୋଳା ଟ.୨୦ ରେ ୨୦ ତୋଳା ୪୯୦ ଟଙ୍କାରେ କିଣିବା ।

୫.୧୦.୧୯୧୪ - ପ୍ରଥମେ ଦେବୀ ମଠକୁ ଗ୍ରାମ୍‌ଫୋନ୍ ଆସିଲା ।

୨୦.୧୦.୧୯୧୪- ପ୍ରତ୍ୟେକ ବୁଧବାର ସଙ୍ଗୀତ, ଗୁରୁବାର ସାହିତ୍ୟ ଚର୍ଚ୍ଚା ନଅରରେ ହେବାକୁ ରାଜଆଜ୍ଞା ।

୨୬.୧୦.୧୯୧୪- ସମ୍ମିଳନୀ ମଣ୍ଡପ ନିର୍ମାଣ ପାଇଁ ଶୁଭ ଖମ୍ବ ସ୍ଥାପନ ଓ ବଡ ମଠରେ ନକ୍ସା ପ୍ରସ୍ତୁତି ।

୨୭.୧୧.୧୯୧୪- ମହନ୍ତ ଓ ମହାରାଜାଙ୍କ ସହ ନକ୍ସା ସ୍ଥିର କରିବା ଓ ଇଂଜିନିୟରଙ୍କ ସହ ଯାଇ କୀଳା ମାରିବା ।

୨୮.୧୧.୧୯୧୪- ମହାରାଜାଙ୍କ ସହ ଆଲୋଚନା ହୋଇ ସ୍ଥିର ହେଲା ସମ୍ମିଳନୀ ବେଳେ ନାଟକ କରିବାକୁ । (ସମ୍ମିଳନୀ ମାନେ ଉତ୍କଳ ସମ୍ମିଳନୀ)

୧୪.୧୨.୧୯୧୪- ସମ୍ମିଳନୀ ପାଇଁ ବସାଘର ପ୍ରସ୍ତୁତ କରିବା ।

୨୦.୧୨.୧୯୧୪- ବିଜୟ ବସନ୍ତ ନାଟକର ରିହାରସଲ୍ ।

୨୫.୧୨.୧୯୧୪- Special train ନୌପଡାରେ ପହଞ୍ଚିବା, ସେଥିରୁ ୩୦୦ ପ୍ରତିନିଧି ଓହ୍ଲାଇବା, ଜଣେ ସ୍ୱେଚ୍ଛାସେବକ ଓ ପାଇକ ସହ ଉପସ୍ଥିତ ରହି ସ୍ୱାଗତ କରିବା ଓ ସଙ୍ଗରେ ପାରଳାଖେମୁଣ୍ଡି ନେବା ।

୩୧.୧୨.୧୯୧୪ - Young Utkal Association ର ଶାଖା ପାରଳାରେ ଗଠନ ।

୧୮.୨.୧୯୧୬ - ସାଂଯକାଳ ୫ଟାରେ ମହାରାଜାଙ୍କ ନବକୁମାର ଜନ୍ମ । ବଡ ମଠରେ ପୂଜା ଓ ପରିଜ୍ଞା ମଠରେ ଉତ୍ସବ ।

୨.୬.୧୯୧୬ - ମାନ୍ଦ୍ରାଜ ବ୍ୟବସ୍ଥା ସଭାକୁ ଜଣେ ଓଡ଼ିଆଙ୍କୁ ନିର୍ବାଚନ ପାଇଁ ମନ୍ତ୍ରଣା ।

୧୯.୬.୧୯୧୬ - ମହାରାଜା ନାଟକର ସ୍ଥାୟୀ ସଭାପତି ପଦ ତ୍ୟାଗକରି ପୃଷ୍ଟପୋଷକ ରହିଲେ ।

୩୦.୯.୧୯୧୬ - ଦଶହରା ଉପଲକ୍ଷେ ତେଲୁଗୁ ନାଟକ ବନପର୍ବ ଓ ଓଡ଼ିଆ ନାଟକ ଲକ୍ଷ୍ମଣ ଚନ୍ଦ୍ରୋଦୟ ହୋଇଥିଲା ।

୯.୧୦.୧୯୧୬ - ସଂସ୍କୃତରେ ଶକୁନ୍ତଳାନାଟକ ଅଭିନୀତ ହୋଇଥିଲା ।

୪.୧୧.୧୯୧୬ - ଆଜି ଶ୍ରୀ ଛାମୁ ମାନ୍ଦ୍ରାଜ ବିଜେ କଲେ ।

୨୦.୧.୧୯୧୭ - ମୋରିସନ୍ ଏକ୍ସଟେନ୍ସନ୍ ଉନ୍ମୋଚନ ଉତ୍ସବ ।

୨୬.୧.୧୯୧୭ - ମୋରିସନ୍ ଏକ୍ସଟେନ୍ସନ୍ ଉଦ୍ଯାପନ ଉତ୍ସବ ।

୮.୩.୧୯୧୭ - ଗୁମ୍ମାରେ ଦୋଳ ଉତ୍ସବ ଉପଲକ୍ଷେ ବିଜୟ ବସନ୍ତ ନାଟକ ।

୨୭.୪.୧୯୧୭ - ମହାରାଜାଙ୍କ ବୁଢ଼ାରସିଂକୁ ବିଜେ, ମଞ୍ଜୁଷା ଓ ବୁଢ଼ାରସିଂ ସୀମା ବିବାଦ ତୁଟାଇବାକୁ ।

୨୯ରୁ ୩୧.୧୦.୧୯୧୭ - ବିକ୍ରମ ଦେବ ବର୍ମାଙ୍କ ସହ ଆଲୋଚନା । ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳକୁ ଏକଶାସନାଧୀନ ରଖିବାକୁ ଆଲୋଚନା ।

୨୩.୨.୧୯୧୮ - ମହାରାଜାଙ୍କ ଏକ ମୃତପୁତ୍ର ଜନ୍ମ - ସହରବାସୀ ଦୁଃଖିତ ।

୧୭.୫.୧୯୧୮ - କରଣମାନେ ସଭାକରି ତାଙ୍କ ଜାତିର ସମସ୍ତଙ୍କ ପାଇଁ ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ କରିବାକୁ ନିଷ୍ପତ୍ତି ।

୧୮.୫.୧୯୧୮ - ପ୍ରତି ରାତ୍ର ୧୦ଟାରେ କରଣମାନେ ଆଲୋଚନା ସଭା କରନ୍ତି ।

୨୩.୭.୧୯୧୮ - ଲୋକନାଥ ଦାସଙ୍କ ସହ ସତ୍ୟବାଦୀ ଯିବା, ସେଠାରେ ଗୋପବନ୍ଧୁଙ୍କର ଟ.୧୫୦ ଚୋରି ହୋଇଯାଇଥିବା ଶୁଣି ଦୁଃଖ ।

୬.୮.୧୯୧୮ - ମହାରାଜାଙ୍କ ଗ୍ରହଶାନ୍ତି ନିମନ୍ତେ ଅଶ୍ୱଦାନ ।

୨୩.୮.୧୯୧୮ - ପାରଳାରେ ମିଲିଟାରୀମାନେ ଆସି ଗୋଟିଏ ସଭା କରିଥିଲେ । ମହାରାଜାଙ୍କୁ ସରକାରଙ୍କ ତରଫରୁ ଏକ ଖଣ୍ଡା ପ୍ରଦାନ କରାଯାଇଥିଲା । ସେଥିପାଇଁ ଏକ ପଟୁଆର ପରିକ୍ରମା କରିଥିଲା ।

୧.୧୦.୧୯୧୮ - ସୁନା ୧ ତୋଳାକୁ ଟ.୪୩ ରୂପା ୨୫ ତୋଳାକୁ ଟ.୨୬

୧.୧.୧୯୧୯ - ନିରଞ୍ଜନ ପଟ୍ଟନାୟକଙ୍କ ସହ ଆଲୋଚନା

୮.୧.୧୯୧୯ - କୃଷି ଓ ଶିଳ୍ପ ପ୍ରଦର୍ଶନୀ ହୋଇଥିଲା

୨୬.୧.୧୯୧୯ - ନୂତନରେ ମହାରାଜା ଗୋରୁହାଟ ବସାଇଲେ

୧୩.୧.୧୯୨୧ - Duke of Canaught ଙ୍କ ସଭାରେ ଜୟପୁର ରାଜାଙ୍କ ନାମ ଦେଖାଗଲା । ପାରଳା ରାଜା ଦରବାରରେ ଯାଇଥିଲେ ମଧ ତାଙ୍କ ନାମ ଦେଖାଗଲା ନାହିଁ ।

୨୮.୫.୧୯୨୨ - ବାମଣ୍ଡାର ରାଜକୁମାର ପୁରୀ ରାଜାଙ୍କର ପୋଷ୍ୟପୁତ୍ର ଭାବେ ଆଜି ପୁରୀ ଗୁଣ୍ଡିଚ୍ଛବାଡିରେ ବ୍ରତ ହେଲେ ।

୨୭.୧୧.୧୯୨୨- ବହୁ ବର୍ଷ ପରେ ଆଜି ବଳଭଦ୍ର ଦାସ ଗୋସ୍ୱାମୀଙ୍କ ମହୋତ୍ସବ ଉପଲକ୍ଷେ ଅଭିମନ୍ୟୁ ବଧ ନାଟକ ହୋଇଥିଲା ।

୧୭.୩.୧୯୨୪ - ତରଳାରେ ନାଟକାଭିନୟ । ମଞ୍ଜୁଷା ରାଜାଙ୍କ ସହ ରେଳଗାଡିରେ ନାଟକ ସମ୍ପର୍କରେ ଆଲୋଚନା ।

୨୬.୪.୧୯୨୪ - ସମ୍ମିଳନୀ ପ୍ରଚାରକ ଗୋବିନ୍ଦ ରଥ ଆସି ଆଲୋଚନା କରିବା ।

୩.୫.୧୯୨୪ - ବଡବ୍ରାହ୍ମଣ ସାହିରେ ଗୋଟିଏ ବାଘ ଆଜି ମରାହୋଇଥିଲା ।

୧୦.୫.୧୯୨୪ - ବଳଦ ହଳର ଦାମ ଟ.୪୭

୧୮,୧୯.୮.୧୯୨୪- ନବଦ୍ୱୀପ ବାବାଜୀମାନେ ଆସିଥିଲେ । ସଭା, ସଂକୀର୍ତ୍ତନ ଓ ଭିକ୍ଷା ହୋଇଥିଲା ।

୨୯.୧୦.୧୯୨୪- କୋକିଳା ମଠରେ ପାରଳାର ସବୁ ଓଡ଼ିଆ ସାହିର ପ୍ରତିନିଧିମାନଙ୍କର ଦେଶ ମିଶ୍ରଣ ସମ୍ପର୍କରେ ବୈଠକ । ଏହା ଏକ ଘଡ଼ିସନ୍ଧି ବେଳ । ସଭା ଶେଷରେ ସମସ୍ତେ ମିଶି ରାଜାଙ୍କ ପାଖକୁ ଗଲେ । ସ୍ୱତନ୍ତ୍ର ପ୍ରଦେଶ ହେଲେ, ଦେଶ ମିଶ୍ରଣ ମୋର ଇଚ୍ଛା ବୋଲି ରାଜା କହିଲେ ।

୧୬.୯.୧୯୨୫ - ବଡମଠ ବାବାଜୀ ମୋ ବିରୁଦ୍ଧରେ ଝଗଡ ଶୁଣିବାକୁ ଆଗ୍ରହୀ ହେଉଥିବା ଶୁଣି ଇସ୍ତଫା ଦେବାକୁ ସ୍ଥିରକଲି ।

୧୬.୪.୧୯୨୭ - ରଘୁନାଥ ପାଣି ପାରଳା ରାଜାଙ୍କ ସାନପୁଅକୁ ସାନଖେମୁଣ୍ଡି ଘରକୁ ପୋଷ୍ୟପୁତ୍ର କରିନେବା ବିଷୟରେ ଆସିଥିଲେ ।

୪.୫.୧୯୨୭ - ଆଜି ଅକ୍ଷୟ ତୃତୀୟା । ଆଜି ପରି ପବିତ୍ର ଦିନରେ ରାଜାଘର ୩ଟା ଛେଳି ମାରି ପଠାଣମାନଙ୍କୁ ଭୋଜି ଦବା ଠିକ୍ ହେଲାନି ।

୨୨.୫.୧୯୨୭ରୁ

୨୭.୫.୧୯୨୭ - ଚନ୍ଦନ ଉପଲକ୍ଷେ ପାରଳାର କଳାକାରମାନେ ପୁରୀରେ ଗୋଷ୍ଠ ମିଳନ, ନବାନୁରାଗ, ମାନଭଞ୍ଜନ ନାଟକ ପରିବେଷଣ କରିବା ଓ ତାହା ବଡ ଲୋକପ୍ରିୟ ହୋଇଥିବା, ରାଧାକାନ୍ତ ମଠ ଓ ଏମାର ମଠର ସହଯୋଗ ।

୫.୭.୧୯୨୭ - ରାଧାଚରଣ ପଣ୍ଡା ଆସିଥିଲେ ।

୧୭.୯.୧୯୨୭ - ପାରଳା ଖାସା ପଞ୍ଚାୟତ ନିର୍ବାଚନ ମାରପିଟ୍, ଲୋକନାଥ ସାହୁ ଗିରଫ, ରାଜାଙ୍କ ହସ୍ତକ୍ଷେପରେ ଖଲାସ ।

୨୮.୧୦.୧୯୨୭ - ମାର୍କେଟ ଛକରେ ମଠାଧୀଶମାନଙ୍କ ସଭା, ବିଶ୍ୱନାଥ ଦାସଙ୍କ ଯୋଗଦାନ ।

୩୧.୩.୧୯୨୮ - ଦାମୋଦର ପାଢ଼ୀ ଆଜି ପାରଳା ପୌରାଧ୍ୟକ୍ଷ ନିଯୁକ୍ତ ହେଲେ ।

୨.୧.୧୯୨୧ - ପାରଳା କ୍ରିକେଟ ଦଳ ବ୍ରହ୍ମପୁର ଦଳକୁ ଜିତିଲେ ।

୩.୩.୧୯୨୯ - ମାଣିକ ଶବରୁଣୀ ନାମଧେୟ ଜଣକର ବିରଚିତ ଭଜନମାଳା ନାମକ ପୁସ୍ତକ ଖଣ୍ଡେ ପାଇ ଆନନ୍ଦିତ ହେଲି ।

୮.୭.୧୯୨୯ - ରଥଯାତ୍ରା- ରଥର କନା ସବୁ ଓଦାହେବାରୁ ପହଣ୍ଡି ରାତି ୯କୁ ହେଲା ।

୧୭.୧୧.୧୯୨୯ - ପ୍ରଥମ ଥର ପାଇଁ ପାରଳାରୁ କାଶୀନଗରକୁ ରେଳ ଚାଲୁ ହୋଇଥିଲା ।

ଆପନ୍ନା ପରିଛାଙ୍କ ଦିନଲିପିର ସମ୍ପୂର୍ଣ୍ଣ ସଙ୍କଳନ କଲେ ତାହା ହେବ ତାଙ୍କ ସମୟର ଚଳନ୍ତି ଘଟଣାବଳୀ ସମ୍ବଳିତ ଏକ ଇତିହାସ । ଏହି ପୁସ୍ତକର ଅଧିକାଂଶ ଉପାଦାନ ତାଙ୍କର ଦିନଲିପିରୁ ହିଁ ସଂଗୃହୀତ ।

୧୯୦୮ରୁ ୧୯୨୯ ମଧ୍ୟବର୍ତ୍ତୀ ମାତ୍ର ୧୮ ବର୍ଷର ଦିନଲିପି ଆପନ୍ନା ପରିଚ୍ଛାଙ୍କ ଦାୟାଦ ମୁରଲୀ ପରିଚ୍ଛାଙ୍କ ସହଯୋଗ ହେତୁ ଏ ଲେଖକ ଦେଖିବାର ସୁଯୋଗ ପାଇଛି । ୧୯୦୮ ପୂର୍ବ ବା ୧୯୨୯ ପରବର୍ତ୍ତୀ ଦିନଲିପି ଅନୁପଲବ୍ଧ । ତେବେ ଏହି ଅନ୍ତର୍ବର୍ତ୍ତୀ ୨୨ ବର୍ଷ ମଧ୍ୟରୁ ୧୮ ବର୍ଷର ଦିନଲିପି ମିଳୁଥିବା ବେଳେ ଅବଶିଷ୍ଟ ୪ ବର୍ଷର ଦୃଷ୍ଟିଗୋଚର ହେଲା ନାହିଁ । ମନେ ହେଉଛି ସେ ୧୯୦୮ରୁ ହିଁ ଦିନଲିପି ଲେଖିବା ଆରମ୍ଭ କରିଛନ୍ତି । ଏବଂ ୧୯୨୯ରେ ପରିଚ୍ଛା ମଠର ପରିଚାଳନାକୁ ନେଇ ତାଙ୍କ ଜ୍ୟେଷ୍ଠଭ୍ରାତାଙ୍କ ସହ ମତାନ୍ତର ଘଟିବାରୁ ସେ ପରିଚ୍ଛା ମଠ ପରିଚାଳନାରୁ ଓହରିଯାଇ ଆଉ ଦିନଲିପି ଲେଖିବାକୁ ଇଚ୍ଛା କରିନାହାନ୍ତି ।

ଆପନ୍ନା ପରିଚ୍ଛାଙ୍କ ଦିନଲିପି ପଢ଼ିଲେ ଆକଳନ କରିହେଉଛି ଯେ ସେ ଓଡ଼ିଆ ଓ ଇଂରାଜୀ କିଭଳି ନିର୍ଭୁଲ ଭାବରେ ଲେଖି ପାରୁଥିଲେ । ଆଜିକାଲି ଧାଡିଏ ଓଡ଼ିଆ ଲେଖିବାବେଳେ ଅନେକ ଇଂରାଜୀ ଶବ୍ଦ ତା' ଭିତରକୁ ପଶି ଆସୁଛି । କିନ୍ତୁ ଆପନ୍ନା ଓଡ଼ିଆରେ ଯେତେବେଳେ ଲେଖିଛନ୍ତି କେବଳ ଓଡ଼ିଆ ହିଁ ଲେଖିଛନ୍ତି । ତାଙ୍କ ଓଡ଼ିଆ ଲେଖାର ଏକ ବିଶେଷତା ମଧ୍ୟ ଅଛି । ଆଜିକାଲିର ଲେଖକମାନେ ବା ଇଂରାଜୀ ପଢୁଆ ସାଧାରଣ ଶିକ୍ଷିତ ଲୋକେ, କୌଣସି କଥା ଲେଖିଲା ବେଳେ, ପ୍ରଥମେ ଇଂରେଜୀ ଭାଷାରେ ତା'ର ରେଖାଚିତ୍ର ଆଙ୍କିବା ପରେ, ତାହା ଓଡ଼ିଆକୁ ଅନୁବାଦ କରି ଲେଖୁଥିବା ଦେଖାଯାଏ । ସବୁ ନ ହେଲେ ମଧ୍ୟ ଅନ୍ତତଃ କେତେକ ଇଂରାଜୀ ଶବ୍ଦ ପ୍ରଥମ ଚିନ୍ତନକୁ ଆଣି ତା'ର ଓଡ଼ିଆ ଅନୁବାଦକୁ ନିଜ ଲେଖାର ଅନ୍ତର୍ଭୁକ୍ତ କରୁଥିବାରୁ ତାଦ୍ୱାରା ଭାବପ୍ରକାଶ ଠିକ୍ ହୋଇପାରୁନାହିଁ । କିନ୍ତୁ ଆପନ୍ନା ପରିଚ୍ଛାଙ୍କ କ୍ଷେତ୍ରରେ ସେପରି ଦୃଷ୍ଟାନ୍ତ ନାହିଁ । ସେ ଓଡ଼ିଆ ଲେଖିଲା ବେଳେ ଏପରି ଲେଖିଛନ୍ତି ଯେପରି ବୁଝାପଡ଼ିବ ଯେ ସେ କେବଳ ଓଡ଼ିଆ ଭାଷା ହିଁ ଜାଣିଥିଲେ । ସେ କେତେ ଓଡ଼ିଆ ସ୍ୱାଭିମାନୀ ଓ ନିଜ ଭାଷାକୁ କେତେ ଭଲ ପାଉଥିଲେ ଏଥିରୁ କଳନୀୟ ।

ଓଡ଼ିଆ ଭାଷା, ଓଡ଼ିଆ ସଂସ୍କୃତି ଓ ଓଡ଼ିଆ ଲୋକଙ୍କୁ ନିବିଡ ଭାବେ ଭଲ ପାଉଥିବା ଆପନ୍ନା ପରିଚ୍ଛାଙ୍କ ପରି ଜଣେ ନିସ୍ୱାର୍ଥପର ସ୍ୱାଭିମାନୀ ଜନସେବକ ଅଧୁନା ଦୁର୍ଲଭ । ସେ ଥିଲେ ତାଙ୍କ ସମୟର ଚଳନ୍ତି ଇତିହାସ; ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନର ଅନ୍ୟତମ ନେପଥ୍ୟ ନାୟକ, ଜାତି ନନ୍ଦିଘୋଷର ଦ୍ରୁତଗାମୀ ଘୋଟକ ଓ ପାରଳା ରାଜ୍ୟର ପ୍ରାଜ୍ଞ ତଥା ପ୍ରବାଦ ପୁରୁଷ । ଏହି ଉଜ୍ଜ୍ୱଳ ପୁରୁଷଙ୍କର ୧୯୩୯ ଜୁଲାଇ ମାସ ୨୪ ତାରିଖରେ ଜୀବନ ପ୍ରଦୀପ ନିର୍ବାପିତ ହୋଇଥିଲା । ବର୍ତ୍ତମାନ ସେ ବିସ୍ମୃତିର ଅତଳ ଗଭୀରରେ ।



ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଓ.ଏ.ଏସ୍.(୨)
(ଅବସରପ୍ରାପ୍ତ)

"ଇତିହାସର ପୃଷ୍ଠଭୂମିରେ ପାରଳାର ପରିଚ୍ଛା ମଠ ଓ ଜାତିପ୍ରାଣ ଆପନ୍ନା ପରିଚ୍ଛା" ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ ପ୍ରଥମ ପ୍ରକାଶିତ ପୁସ୍ତକ । ସେ ଜଣେ ସମାଜସେବୀ ଓ ସୁସଙ୍ଗଠକ । ତାଙ୍କ ଉଦ୍ୟମରେ ପାରଳାଖେମୁଣ୍ଡିରେ ସାହିତ୍ୟ ଓ ସଂସ୍କୃତିର ଧାରା ଅବ୍ୟାହତ ରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ନିରୁତା ସାହିତ୍ୟ ପତ୍ରିକା "ସିଦ୍ଧାନ୍ତ"ର ସେ ସମ୍ପାଦକ । ମାସିକ ପତ୍ରିକା "ସ୍ୱାସ୍ଥ୍ୟବିଳାସ"ର ଉପଦେଷ୍ଟା-ସମ୍ପାଦକ । ଓଡ଼ିଶା ସାହିତ୍ୟ ଏକାଡ଼େମୀର ଜଣେ ବରିଷ୍ଠ ସଦସ୍ୟ । "ଉତ୍କଳ ସମ୍ମିଳନୀ"ର କେନ୍ଦ୍ର-ସମ୍ପାଦକ ତଥା "ଉତ୍କଳ ହିତୈଷିଣୀ ସମାଜ"ର ସମ୍ପାଦକ ଭାବେ ସଂପ୍ରତି କର୍ମରତ । "ସହାୟ ଅନାଥାଶ୍ରମ" ଓ "ପର୍ଶୁରାମ ଗୁରୁକୁଳ ମହାବିଦ୍ୟାଳୟ"ର ସମ୍ପାଦକ ଭାବେ ଗଜପତି ଜିଲ୍ଲାରେ ସେ ଅତ୍ୟନ୍ତ ଲୋକପ୍ରିୟ । ଉଜୁଡ଼ି ଯାଇଥିବା ଅନେକ ମଠ-ମନ୍ଦିରର ପୁନରୁଦ୍ଧାର କରିବା ସହ ପାରଳାଖେମୁଣ୍ଡିରେ ଆଧ୍ୟାତ୍ମିକ ଜାଗରଣ ସୃଷ୍ଟି କରିବାରେ ତାଙ୍କ ଭୂମିକା ସର୍ବଜନାଦୃତ । ଗଜପତି ଜିଲ୍ଲାରେ ଚିନ୍ମୟ ମିଶନ ଶାଖାର ସେ ପ୍ରତିଷ୍ଠାତା ।

ଓଡ଼ିଶାର ଦକ୍ଷିଣ ଉପାନ୍ତ ତଥା ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା, ଓଡ଼ିଆ ସଂସ୍କୃତି ଓ ଓଡ଼ିଆ ସାହିତ୍ୟର ବିକାଶ ସାଧନ ଦିଗରେ ଏହି ବହୁମୁଖୀ ପ୍ରତିଭାଧର ବ୍ୟକ୍ତିଙ୍କ ଆନ୍ତରିକ ପ୍ରଚେଷ୍ଟା ଉଲ୍ଲେଖଯୋଗ୍ୟ ।

ଶ୍ରୀ ମହାପାତ୍ରଙ୍କ ଅପ୍ରକାଶିତ ଅନେକ ରଚନା ଅଛି । ସେଗୁଡ଼ିକ ମଧ୍ୟରୁ "ପାରଳାଖେମୁଣ୍ଡି ଇତିହାସ", "ହଗର ଡର କି ବାଘକୁ" ଓ "ସତ୍ୟଂ ବ୍ରୂୟାତ୍" ବର୍ତ୍ତମାନ ପ୍ରକାଶ ଅପେକ୍ଷାରେ ।